# ଭାରତଚନ୍ଦ୍ର ନାୟକ

ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ



ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

ଭାରତଚନ୍ଦ୍ର ନାୟକ

ଲେଖକ :
ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତି ଭବନ, ଭୁବନେଶ୍ୱର-୭୫୧୦୧୪


ପ୍ରଥମ ସଂସ୍କରଣ : ୨୦୧୫

ମୁଦ୍ରଣ :
ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍
ମହମଦିଆ ବଜାର, କଟକ

ମୂଲ୍ୟ : ଟ. ୮୦/-

**BHARATCHANDRA NAYAK**

Writer :
**Prof. Krushna Chandra Pradhan**

Publisher :
**Odisha Sahitya Akademi**
Sanskruti Bhavan, Bhubaneswar


First Edition : **2015**

Printer :
**Orissa Printing Works**
Mahamadia Bazar, Cuttack

Price : **Rs. 80/-**

ISBN : 978-81-7586-210-4

# ପ୍ରାଗ୍‌ଭାଷ

ସ୍ୱର୍ଗତ ଭାରତଚନ୍ଦ୍ର ନାୟକ ଯାହାଙ୍କୁ ନେଇ ଗ୍ରଂଥଟି ଉଦ୍ଦିଷ୍ଟ ସମ୍ବଲପୁର ମାଟିର ଜଣେ ବରେଣ୍ୟ ସନ୍ତାନ ଭାବରେ ସର୍ବତ୍ର ସୁପରିଚିତ । ୧୮୮୭ ମସିହାରେ ଜନ୍ମଲାଭ କରିଥିବା ଏହି ପ୍ରତିଭାଧର ବ୍ୟକ୍ତିଙ୍କ ତିରୋଧାନ ଘଟିଥିଲା ୧୯୬୯ ମସିହାରେ । ବହୁ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସିଏ ଉଚ୍ଚଶିକ୍ଷା ସୁଯୋଗ ପାଇ ୧୯୦୮ ମସିହାରେ କଟକସ୍ଥିତ ରେଭେନ୍‌ସା ମହାବିଦ୍ୟାଳୟରୁ ସ୍ନାତକ ଡିଗ୍ରୀ ହାସଲ କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଆଇନ୍ ଶିକ୍ଷା ପାଇଁ କଲିକତାସ୍ଥିତ ଆଇନ୍ କଲେଜରେ ଯୋଗଦାନ କରିଥିଲେ ସୁଦ୍ଧା ସେ ତାକୁ ବିଭିନ୍ନ କାରଣରୁ ସଂପୂର୍ଣ୍ଣ କରିପାରି ନ ଥିଲେ । ବୃତ୍ତିଗତ ଭାବରେ ୧୯୦୯ ମସିହାରେ ସବ୍-ଡେପୁଟୀ ହୋଇ ନିଜର ଚାକିରି ଜୀବନ ଆରଂଭ କରି ପରବର୍ତ୍ତୀ ସମୟରେ ଡେପୁଟୀ ମାଜିଷ୍ଟ୍ରେଟ୍ ପଦବୀକୁ ପଦୋନ୍ନତି ପାଇ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ନିଜର କାର୍ଯ୍ୟ ନିଷ୍ଠାର ସହିତ ସଂପାଦନ କରିଥିଲେ । ସ୍ୱର୍ଗତ ଭାରତ ଚନ୍ଦ୍ରଙ୍କ ଭୂୟୋଦୃଷ୍ଟି ଆଜି ବି ପ୍ରଶଂସାର୍ହ । ନିଜର ଚାରୋଟି ପୁତ୍ର ଓ ଏଗାରଟି କନ୍ୟାଙ୍କ ମଧ୍ୟରୁ ଦୁଇ ପୁଅ ଓ ଗୋଟିଏ ଝିଅ ବାଲ୍ୟାବସ୍ଥାରେ ମୃତ୍ୟୁବରଣ କରିଥିଲେ । ଅନ୍ୟ ସଭିଏ ଉଚ୍ଚଶିକ୍ଷା ହାସଲ କରି ସମାଜକୁ ନୂତନ ଦିଗ୍‌ଦର୍ଶନ ଦେବାରେ ବେଶ୍ ସମର୍ଥ ହୋଇପାରିଛନ୍ତି । ତାଙ୍କର ପୁଅ ବିଭୁପ୍ରସାଦ କିଛି ବର୍ଷ ପୂର୍ବେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ କୁଳପତି ଆସନ ଅଳଙ୍କୃତ କରିଥିଲେ । ବ୍ୟକ୍ତିଗତ ଭାବେ ମୁଁ ପିଲାଦିନେ ଭାରତଚନ୍ଦ୍ରଙ୍କୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଥିଲି କିନ୍ତୁ କେବେ କଥା ଲାଗିବାର ଅବକାଶ ମୋ ପାଇଁ ଜୁଟିନଥିଲା । ସେତେବେଳେ ପଣ୍ଡିତ ଚିନ୍ତାମଣି ମିଶ୍ରଙ୍କ ଦ୍ୱାରା ସଂପାଦିତ 'ନବଜୀବନ'ରେ ତାଙ୍କ ଲିଖିତ 'ମୋର ପୂର୍ବ ସ୍ମୃତି କଥା' ଧାରାବାହିକ ଭାବେ ପ୍ରକାଶ ପାଉଥିଲା ଯାହା ପଢ଼ିବାର ସୁଯୋଗକୁ ମୁଁ କେବେ ହାତଛଡ଼ା କରି ନଥିଲି ।

ସମ୍ବଲପୁର ବିଶ୍ୱବିଦ୍ୟାଳୟସ୍ଥିତ ଓଡ଼ିଆ ବିଭାଗର ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ ବହୁ ପରିଶ୍ରମ ପୂର୍ବକ ଏଇ ବହିଟିର ପାଣ୍ଡୁଲିପି ପ୍ରସ୍ତୁତ କରିଛନ୍ତି । ତାଙ୍କର ଏହି ପ୍ରୟାସ ଯୋଗୁ ମୁଁ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି । ପୁସ୍ତକଟି ଓଡ଼ିଶାର ସୁଧୀ ମହଲଙ୍କ ନିକଟରେ ଆଦୃତ ହେବ ବୋଲି ମୋର ଦୃଢ଼ ଆଶା ଓ ବିଶ୍ୱାସ ।

ଅଶ୍ୱିନୀ କୁମାର ମିଶ୍ର
ସଚିବ, ଓଡ଼ିଶା ସାହିତ୍ୟ ଏକାଡେମୀ

ତା. ୫.୮.୧୫

# ମୁଖବନ୍ଧ

ଭାରତଚନ୍ଦ୍ର ନାୟକଙ୍କ ସମ୍ପର୍କରେ ମନୋଗ୍ରାଫ୍ (ପୁସ୍ତିକା ବା ପ୍ରକରଣ ଗ୍ରନ୍ଥ)ଟିଏ ଲେଖିବାକୁ ଦୀର୍ଘଦିନ ପୂର୍ବରୁ ଓଡ଼ିଶା ସାହିତ୍ୟ ଏକାଡେମୀ ମତେ ପ୍ରସ୍ତାବ ଦେଇଥିଲେ । ମୁଁ ତାଙ୍କ ପ୍ରସ୍ତାବରେ ସମ୍ମତି ପ୍ରଦାନ କରିଥିଲି । ମାତ୍ର ତାଙ୍କ ସମ୍ପର୍କରେ ସହାୟକ ପୁସ୍ତକ ଏବଂ ତାଙ୍କ ଦ୍ୱାରା ରଚିତ ପୁସ୍ତକ ଅନୁସନ୍ଧାନ ବେଳେ ମତେ ନିରାଶ ହେବାକୁ ପଡ଼ିଲା । ଏପରିକି ତାଙ୍କର ନିକଟତମ ସମ୍ପର୍କୀୟଙ୍କ ସହିତ ଯୋଗାଯୋଗ କରିବା ସତ୍ତ୍ୱେ ସେମାନେ ଏ ସମ୍ପର୍କରେ ମତେ କୌଣସି ସାହାଯ୍ୟ କରିପାରିଲେ ନାହିଁ । ସେଥିପାଇଁ ଏପରି ଏକ ପୁସ୍ତକ ରଚନା କରିବାର ଅଭିଳାଷ ମନରୁ ପୋଛି ଦେଇଥିଲି । ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟସ୍ତଥିବା ସମୟରେ ସାହିତ୍ୟିକ ବନ୍ଧୁ ଶ୍ରୀ ଗଣେଶରାମ ନାହାକ ବାରମ୍ବାର ମନୋଗ୍ରାଫ୍ ରଚନା ସମ୍ପର୍କରେ ସୂଚାଇ ଦେବା ସହିତ ତାଙ୍କ ନିକଟରେ ଭାରତଚନ୍ଦ୍ର ନାୟକଙ୍କ ଆତ୍ମଜୀବନୀ ଥିବା ବିଷୟରେ ମତେ କହିଲେ ଏବଂ 'ହୁଏନ୍‌ସାଂ ଓ ତାହାଙ୍କ ଭାରତଭ୍ରମଣ' ଗ୍ରନ୍ଥଟି ଜିଲ୍ଲା ସ୍କୁଲରେ ଥିବା ସମ୍ପର୍କରେ ଅବଗତ କରାଇଲେ । ଗଙ୍ଗାଧର ମେହେର ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ଡକ୍ଟର ଶ୍ୟାମ ଭୋଇ ଜିଲ୍ଲା ସ୍କୁଲକୁ ଯାଇ ଜୀର୍ଣ୍ଣାବସ୍ଥାରେ ଥିବା ସେହି ପୁସ୍ତକଟି ଆଣି ମତେ ଦେଲେ । ଉପରୋକ୍ତ ଦୁଇବନ୍ଧୁଙ୍କର ସହାୟତା ପାଇ ନଥିଲେ ବୋଧହୁଏ ମନୋଗ୍ରାଫ୍‌ଟି ରଚନା କରିବା ସମ୍ଭବ ହୋଇନଥାନ୍ତା । ଏହି ଅବସରରେ ସେମାନଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଜଣାଉଛି ।

ଓଡ଼ିଶାର ସାମାଜିକ, ସାଂସ୍କୃତିକ ଆନ୍ଦୋଳନରେ ଭାରତଚନ୍ଦ୍ରଙ୍କ ଭୂମିକା ନିଶ୍ଚିତ ଭାବରେ ସ୍ମରଣୀୟ । ସମାଜ ସଂସ୍କାରକ ଓ ସମାଜସେବୀ ଭାବରେ ତତ୍‌କାଳୀନ ସମାଜର ବିଭିନ୍ନ କୁସଂସ୍କାର ଏବଂ ଅନ୍ଧବିଶ୍ୱାସକୁ ଦୂର କରିବା ନିମିତ୍ତ ସମସ୍ତ ପ୍ରତିକୂଳତା ମଧ୍ୟରେ ସେ ଦୃଢ଼ ଭାବରେ ସ୍ୱର ଉତ୍ତୋଳନ କରିପାରିଥିଲେ । ନାରୀଶିକ୍ଷାର ପ୍ରଚାର ଏବଂ ପ୍ରସାର, ବାଲ୍ୟବିବାହର ବିରୋଧ, ଶାରଦା ଆଇନାନୁଯାୟୀ କନ୍ୟାମାନଙ୍କର ବିବାହ ପାଇଁ ଜନସଚେତନତା ସୃଷ୍ଟି ତାଙ୍କ ସାମାଜିକ ଆନ୍ଦୋଳନର ଗୋଟିଏ ଗୋଟିଏ ଦୃଷ୍ଟାନ୍ତ । ପ୍ରଶାସନିକ ଅଧିକାରୀ ଭାବରେ ଜନସାଧାରଣଙ୍କ ନିମିତ୍ତ କାର୍ଯ୍ୟ କରିବା, ସରକାରୀ ସେବାକୁ ଜନସାଧାରଣଙ୍କ ନିକଟରେ ଯଥାଯଥ ଭାବରେ ପହଞ୍ଚାଇବା କ୍ଷେତ୍ରରେ ତାଙ୍କର ରହିଥିଲା ମହତ୍ତ୍ୱପୂର୍ଣ୍ଣ ଅବଦାନ । ପ୍ରଶାସନିକ ସଂସ୍କାର ପାଇଁ ତାଙ୍କର କେତୋଟି ପଦକ୍ଷେପ ନିଶ୍ଚିତଭାବେ ସ୍ମରଣୀୟ ହୋଇ ରହିବ । ସମସ୍ତ ପ୍ରତିକୂଳତା ବିରୋଧରେ ସଂଗ୍ରାମ କରି ସେ ନିଜକୁ ନିଜେ ଗଢ଼ିଥିଲେ । ଇଂରେଜ ସରକାରଙ୍କ ଅଧୀନରେ କାର୍ଯ୍ୟ କରିଥିଲେ ମଧ୍ୟ

# ସୂଚୀପତ୍ର

କଦାପି ନିଜର ସ୍ୱାଭିମାନକୁ ବଳିଦେଇ ନଥିଲେ; ବରଂ ଆବଶ୍ୟକବେଳେ ପ୍ରତିରୋଧ ଜନିତ ସଂଘର୍ଷ ପାଇଁ ପ୍ରସ୍ତୁତ ରହିଥିଲେ । ସେ କୌଣସି ମୌଳିକ ସାହିତ୍ୟ ସୃଷ୍ଟି କରିନଥିଲେ ହେଁ ତାଙ୍କର ଆତ୍ମଜୀବନୀ ଏବଂ ଅନୁବାଦ ଗ୍ରନ୍ଥ ମାନଙ୍କରୁ ତାଙ୍କ ସାହିତ୍ୟ ପ୍ରତିଭାର ଭୂରି ଭୂରି ଦୃଷ୍ଟାନ୍ତ ଉପଲବ୍ଧ ହୋଇଥାଏ । ସାହିତ୍ୟକୁ ସେ ଭଲପାଉଥିଲେ ଓ ମନଭରି ଉପଭୋଗ କରୁଥିଲେ । ପ୍ରାଚୀନ ସାହିତ୍ୟଠାରୁ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ- ସମସ୍ତ ସାହିତ୍ୟ ଥିଲା ତାଙ୍କର ପ୍ରିୟ । ସେ ଯେପରି ସାରଳା ଦାସଙ୍କୁ ପଢ଼ିଥିଲେ, ସେମିତି ମଧ୍ୟ ପଢ଼ିଥିଲେ ସଚ୍ଚିଦାନନ୍ଦ ରାଉତରାୟଙ୍କୁ । ଜଣେ ସଚ୍ଚୋଟ ପ୍ରଶାସନିକ ଅଧିକାରୀ, ସତ୍ ସମାଜସେବୀ, ଦାୟିତ୍ୱବାନ୍ ପିତା, ରସିକ ସାହିତ୍ୟିକ ଭାବରେ ତାଙ୍କ ଜୀବନ ଅନେକଙ୍କ ନିକଟରେ ଉଦାହରଣ ହୋଇ ରହିବ । ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଏହି ପ୍ରତିଭାବାନ୍‌ଙ୍କ ଜୀବନୀ ନିଶ୍ଚିତ ଭାବରେ ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

'ଭାରତଚନ୍ଦ୍ର ନାୟକ' ପୁସ୍ତିକାଟି ରଚନା ନିମିତ୍ତ ଓଡ଼ିଶା ସାହିତ୍ୟ ଏକାଡେମୀ ମୋ ଉପରେ ଦାୟିତ୍ୱ ନ୍ୟସ୍ତ କରିଥିବାରୁ, ଏହି ଅବସରରେ ଏକାଡେମୀର ପୂର୍ବତନ ସଭାପତି ବରିଷ୍ଠ କଥାକାର ଓ ନାଟ୍ୟକାର ଡକ୍ଟର ରାମଚନ୍ଦ୍ର ବେହେରା, ବର୍ତ୍ତମାନର ସଭାପତି ବରେଣ୍ୟ କଥାଶିଳ୍ପୀ ଶ୍ରୀଯୁକ୍ତ ସାତକଡ଼ି ହୋତା, ବିଶିଷ୍ଟ ଗାଳ୍ପିକ ପୂର୍ବତନ ଓଡ଼ିଶା ସାହିତ୍ୟ ଏକାଡେମୀର ସଚିବ ଶ୍ରୀଯୁକ୍ତ ବିଜୟ ନାୟକ ଏବଂ ବର୍ତ୍ତମାନର ସଚିବ ଲବ୍ଧ ପ୍ରତିଷ୍ଠ କବି ଶ୍ରୀଯୁକ୍ତ ଅଶ୍ୱିନୀ କୁମାର ମିଶ୍ରଙ୍କୁ କୃତଜ୍ଞତା ଜଣାଉଛି । ମୋର କଟୁ-ସମାଲୋଚକ ଓ ପ୍ରଶଂସକ, ଯେଉଁମାନଙ୍କର ନିନ୍ଦା ଏବଂ ପ୍ରଶଂସା ମତେ ମୋର ସାରସ୍ୱତ ସାଧନା କ୍ଷେତ୍ରରେ ପ୍ରେରଣା ଦେଇ ଆସିଛି, ସେମାନଙ୍କୁ ମଧ୍ୟ ଆନ୍ତରିକ କୃତଜ୍ଞତା ଜଣାଉଛି । ଭାରତଚନ୍ଦ୍ରଙ୍କୁ କିଞ୍ଚିତ୍ ଜାଣିବା କ୍ଷେତ୍ରରେ ପୁସ୍ତିକାଟି ସାହାଯ୍ୟ କରିପାରିଲେ, ଖୁସି ହେବି ।

କୃଷ୍ଣଚନ୍ଦ୍ର ପ୍ରଧାନ
ପ୍ରଫେସର ଓଡ଼ିଆ ଭାଷା ସାହିତ୍ୟ ବିଭାଗ,
ସମ୍ବଲପୁର ବିଶ୍ୱ ବିଦ୍ୟାଳୟ, ବୁର୍ଲା

# ପ୍ରଥମ ପରିଚ୍ଛେଦ

# ଭାରତଚନ୍ଦ୍ର : ଜୀବନୀ ଓ ସୃଜନ

**ଉପକ୍ରମ :–**

ପ୍ରତ୍ୟେକ ମଣିଷ ଜନ୍ମ ହୁଅନ୍ତି ଓ ମୃତ୍ୟୁବରଣ କରନ୍ତି– ଏହା ବୋଧହୁଏ ବିଧିନିର୍ଦ୍ଦିଷ୍ଟ । ମାତ୍ର ଏପରି କିଛି ବ୍ୟକ୍ତି ଅଛନ୍ତି ଯେଉଁମାନେ ନିଜର କାର୍ଯ୍ୟ ପଦ୍ଧତି, ବ୍ୟବହାର ଓ ଅକ୍ଷୟ ସୃଷ୍ଟିଦ୍ୱାରା ମରି ମଧ ଅମର ରହିଯାଇଥାନ୍ତି । ସେମାନଙ୍କର ଆଦର୍ଶ ଓ ବିଚାରଧାରା ସମାଜର ପ୍ରଗତି ଏବଂ ବିକାଶଧାରା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ପରବର୍ତ୍ତୀ ପିଢ଼ି ପାଇଁ ସେମାନେ ହୋଇଥାନ୍ତି ମାର୍ଗଦର୍ଶକ । ଜୀବନର ଲମ୍ବା ରାସ୍ତାରେ ସେମାନେ ଯେଉଁ ଅନୁଭୂତି ଲାଭ କରିଥାନ୍ତି, ଯେଉଁ ସମସ୍ତ ପ୍ରତିବନ୍ଧକ ସାମ୍ନା କରିଥାନ୍ତି ପରବର୍ତ୍ତୀ ବଂଶଧରମାନଙ୍କ ପାଇଁ ସେହି ଅମୂଲ୍ୟ ଅନୁଭୂତି ଓ ପ୍ରତିବନ୍ଧକ ହୋଇଥାଏ ଭବିଷ୍ୟତ ଅଗ୍ରଗତି ନିମିତ୍ତ ଏକ ଏକ ଶୁଭ ଶଙ୍ଖ ସଦୃଶ । ଏପରି ମହାନ୍‌ପୁରୁଷଙ୍କ ଜୀବନ ଇତିହାସ ପ୍ରତ୍ୟେକ ଜାତିପାଇଁ ଆଶୀର୍ବାଦ ସ୍ୱରୂପ । ଅଧିକାଂଶ ମଣିଷ କେବଳ ଆପଣା ନିମିତ୍ତ ଜିଇଥାନ୍ତି; ଅଥଚ ଏହି ମହାପୁରୁଷମାନଙ୍କର ଜନ୍ମ ହୋଇଥାଏ ଜାତିପାଇଁ, ସମଗ୍ର ମଣିଷ ସମାଜର ହିତସାଧନ ପାଇଁ । ଏହିପରି ଜାତିକୁ ଦିଗ୍‌ଦର୍ଶନ ଦେବାପରି ଜଣେ ମଣିଷ ଜନ୍ମ ନେଇଥିଲେ ଓଡ଼ିଶାର ପଶ୍ଚିମ ଅଞ୍ଚଳରେ, ଯାହାଙ୍କ ନାମ ଭାରତଚନ୍ଦ୍ର ନାୟକ । ଜଣେ ପ୍ରଶାସନିକ ଅଧିକାରୀ ରୂପେ ସମଗ୍ର ଜୀବନକାଳ ଅତିବାହିତ (ଚାକିରି ସମୟ) କରିଥିଲେ ହେଁ, ତତ୍‌କାଳୀନ ସାମାଜିକ ଓ ପ୍ରଶାସନିକ ବ୍ୟବସ୍ଥା ବିରୋଧରେ ସେ ଯେପରି ସ୍ୱର ଉତ୍ତୋଳନ କରି ତଥାକଥିତ ବିଧିବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାକୁ ସମର୍ଥ ହୋଇଥିଲେ, ବାସ୍ତବରେ ତାହା ବିସ୍ମୟକର । ଏଭଳି ଜଣେ ପ୍ରତିଭାବାନ, ସମାଜସଂସ୍କାରକ ଓ ସାହିତ୍ୟ-ସଂସ୍କୃତି ପ୍ରିୟ ବ୍ୟକ୍ତିଙ୍କ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରିବା ଏହି ପୁସ୍ତକର ଉଦ୍ଦେଶ୍ୟ ।

**ବାଲ୍ୟଜୀବନ :–**

ଭାରତଚନ୍ଦ୍ର ନାୟକଙ୍କ ଜୀବନ ସମ୍ପର୍କରେ ଜାଣିବାପାଇଁ ସେପରି ବିଶେଷ କିଛି ପୁସ୍ତକ ଓଡ଼ିଆ ଭାଷାରେ ରଚିତ ହୋଇନାହିଁ । ତାଙ୍କ ଆତ୍ମଜୀବନୀ 'ମୋର ପୂର୍ବ ସ୍ମୃତିକଥା' ଆଧାରରେହିଁ ତାଙ୍କ ଜୀବନ ସମ୍ପର୍କରେ କିଛି ଆଲୋକପାତ କରାଯାଇପାରେ । 'ମୋର ପୂର୍ବ ସ୍ମୃତିକଥା' ପୁସ୍ତକରେ ରଚୟିତା ଓ ପ୍ରକାଶକ ହେଉଛନ୍ତି ଶ୍ରୀ ଭାରତଚନ୍ଦ୍ର ନାୟକ ।

ଏହା ସମ୍ବଲପୁରରୁ ୧୯୬୬ ମସିହାରେ ପ୍ରକାଶ ପାଇଥିଲା । 'ସ୍ମୃତିକଥା' ଶିରୋନାମାରେ ପ୍ରଥମେ ଏହା 'ନବଜୀବନ' ପତ୍ରିକାର ୫ମ ବର୍ଷ ୩ୟ ସଂଖ୍ୟାରୁ ୯ମ ବର୍ଷ ୧୧ଶ ସଂଖ୍ୟା ପର୍ଯ୍ୟନ୍ତ ଧାରାବାହିକ ଭାବେ ପାଞ୍ଚବର୍ଷକାଳ ପ୍ରକାଶ ପାଇଥିଲା ଓ ପରେ ବନ୍ଧୁମାନଙ୍କ ଅନୁରୋଧକ୍ରମେ ତାହା ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ବିଶିଷ୍ଟ କବି ଓ ସାହିତ୍ୟିକ ଡ.ମାୟାଧର ମାନସିଂହ 'ନବଜୀବନ'ରେ ପ୍ରକାଶିତ ଏହି ଆତ୍ମଜୀବନୀ ପଢ଼ି ତା' ୧୩.୧୦.୧୯୬୦ ରେ ଭାରତଚନ୍ଦ୍ରଙ୍କ ନିକଟକୁ ଲେଖିଥିଲେ–

ମାନନୀୟେଷୁ;

ଭାରତବାବୁ ! ନବଜୀବନରେ ପ୍ରକାଶିତ ଆପଣଙ୍କ ଆତ୍ମଚରିତର କେତେକାଂଶ ପାଠକରି ଅତ୍ୟନ୍ତ ପ୍ରୀତିଲାଭ କରିଅଛି । ଆପଣଙ୍କ ବର୍ଣ୍ଣନାଗୁଡ଼ିକ ଅତ୍ୟନ୍ତ ପ୍ରାଞ୍ଜଳ ଓ ଚିତ୍ତାକର୍ଷକ । ଆପଣଙ୍କର ଅଭିଜ୍ଞତାସବୁ ଏକ ଲୁପ୍ତଯୁଗର ଅନବଦ୍ୟ ସାମାଜିକ ଇତିହାସ । ଏକ ଅନ୍ଧକାରାଚ୍ଛନ୍ନ କାଳରେ ଆପଣଙ୍କର ନିଜର ସାଧନା, ସିଦ୍ଧି ଓ ଜୀବନର ଆଦର୍ଶ ବହୁକାଳ ଯାଏ ଅନେକ ସଂଗ୍ରାମୀଙ୍କୁ ପଥ ଓ ସାହସ ଯୋଗାଇବ । × ×

ଅତି ଶୁଭାକାଙ୍କ୍ଷୀ
ମାନସିଂହ

କେବଳ ଡ. ମାୟାଧର ମାନସିଂହ ନୁହନ୍ତି ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ମଧ୍ୟ ଆତ୍ମଚରିତ ପାଠପରେ ବେଶ୍ ମୁଗ୍ଧ ହୋଇ ତା. ୧.୨.୧୯୬୨ରେ ଗୋଟିଏ ପତ୍ର ତାଙ୍କ ନିକଟକୁ ପ୍ରେରଣ କରିଥିଲେ । ସେହି ପତ୍ରରେ ସେ ଇଂରାଜୀରେ ଲେଖିଥିଲେ– "It is needles for me to say that your biographical sketches are as interesting as those of the renowned and well-reputed writer, Late Fakirmohan Senapati. I really admire you for your putting those things in such a beautiful way. I wish and hope that your biographical sketches comeout in the form of a book and it will certainly present a very interesting and informative piece of literature. Kindly accept my hearty thanks and congratulation for your achievement in this connection.

ମାନସିଂହଙ୍କ ଭାଷାରେ ତାଙ୍କର ଆତ୍ମଜୀବନୀ 'ଏକ ଲୁପ୍ତ ଯୁଗର ଅନବଦ୍ୟ ସାମାଜିକ ଇତିହାସ' । ତାଙ୍କର ଜନ୍ମ ୧୮୮୭ ମସିହା ମାର୍ଚ୍ଚମାସ ଶିବରାତ୍ରି ଦିନ । ଊନବିଂଶ ଶତକର ଶେଷ ଦୁଇଦଶକ ଥିଲା ତାଙ୍କ ଜନ୍ମ ସମୟ; ଯେତେବେଳେ ଭାରତ ଇଂରେଜ ଶାସନାଧୀନ । ତାଙ୍କର ତିରୋଧାନ ସମୟ ୧୯୬୯ ମସିହା, ଅର୍ଥାତ୍ ଭାରତଚନ୍ଦ୍ର ଦେଖିଛନ୍ତି ପରାଧୀନ ଭାରତବର୍ଷ ଓ ସ୍ୱାଧୀନ ଭାରତବର୍ଷ । ଉଭୟ ବିଦେଶୀ ଓ ଦେଶୀୟ ସରକାରଙ୍କ ଅଧୀନରେ ଚାକିରି କରିଛନ୍ତି । ଅନୁଭବ କରିଛନ୍ତି ଦୁଇ ଭିନ୍ନ ପ୍ରଶାସନିକ କାର୍ଯ୍ୟକଳାପକୁ । ଗୋଟିଏ

ପକ୍ଷରେ ରକ୍ଷଣଶୀଳତା ଓ ଅନ୍ୟ ପକ୍ଷରେ ପରିବର୍ତ୍ତନ ଏବଂ ପ୍ରଗତିଶୀଳ ବିଶ୍ୱ-ଏହିପରି ସନ୍ଧିକ୍ଷଣରେ ପିତା ଭଗବାନ ଏବଂ ମାତା ସୀତାଦେବୀଙ୍କ ଔରସରୁ ପୂର୍ବତନ ପାଟଣାରାଜ୍ୟର ଆଗଲପୁରରେ ତାଙ୍କର ଜନ୍ମ । ତାଙ୍କ ପିତାଙ୍କର ଥିଲେ ସାତଜଣ ସନ୍ତାନ । ତନ୍ମଧ୍ୟରୁ ତିନିଜଣ ଭାଇ ଏବଂ ଚାରିଜଣ ଭଉଣୀ । ଜ୍ୟେଷ୍ଠ ଭାଇ ବାଳମୁକୁନ୍ଦ, ମଧ୍ୟମ ଭାଇ ଲକ୍ଷଣ ଓ କନିଷ୍ଠ ହେଉଛନ୍ତି ଭାରତଚନ୍ଦ୍ର । ସେହିପରି ତାଙ୍କର ଚାରି ଭଉଣୀଙ୍କ ନାମ ଯଥାକ୍ରମେ ବାଳମତୀ, ପାର୍ବତୀ, ତାରା ଓ ଚମ୍ପା । ଜ୍ୟେଷ୍ଠଭାଇ ୧୮୯୭ ମସିହାରେ ମାତ୍ର ଅଠରବର୍ଷ ବୟସରେ ଅବିବାହିତ ଭାବେ ଅକାଳ ମୃତ୍ୟୁବରଣ କରିଥିଲେ ।

ଭାରତଚନ୍ଦ୍ରଙ୍କ ପ୍ରଥମ ଏଗାରବର୍ଷର ବାଲ୍ୟଜୀବନୀ ଅର୍ଥାତ୍ ୧୮୮୭ ମସିହାରୁ ୧୮୯୮ ମସିହା ପର୍ଯ୍ୟନ୍ତ ଅତିବାହିତ ହୋଇଥିଲା ଆଗଲପୁରରେ । ୧୮୯୮ ମସିହାରୁ ୧୯୦୨ ମସିହା ପର୍ଯ୍ୟନ୍ତ ସେ ବଲାଙ୍ଗିର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ୧୯୦୨ ମସିହାରୁ ୧୯୦୪ ପର୍ଯ୍ୟନ୍ତ ସମ୍ବଲପୁର ଜିଲ୍ଲାସ୍କୁଲରେ ଏବଂ ୧୯୦୪ ମସିହାରୁ ୧୯୦୮ ମସିହା ପର୍ଯ୍ୟନ୍ତ ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ୧୯୦୯ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ଅର୍ଥାତ୍ ଦୀର୍ଘ ୩୩ ବର୍ଷ ହେଉଛି ତାଙ୍କର କର୍ମମୟ ସରକାରୀ ଚାକିରିଜୀବନ । ୧୯୨୫ ମସିହାରେ ତାଙ୍କ ପିତା ଏବଂ ୧୯୨୮ ମସିହାରେ ମାତାଙ୍କ ଦେହାନ୍ତ ହୁଏ ।

ଭାରତଚନ୍ଦ୍ର ଥିଲେ ନିଜକୁ ନିଜେ ଗଢ଼ିଥିବା ମଣିଷ, ଯାହାକୁ କୁହାଯାଏ Self-made. ପ୍ରତିକୂଳ ପରିବେଶ ଓ ଦାରିଦ୍ର୍ୟ ବିରୋଧରେ ସଂଗ୍ରାମ କରି କିପରି ବଞ୍ଚିବାକୁ ହୁଏ, ତାହା ସେ ପିଲାଦିନରୁ ନିଜ ପରିବାରଠାରୁ ଶିକ୍ଷା କରିଥିଲେ । ତାଙ୍କର ପିତା ଥିଲେ ଅତ୍ୟନ୍ତ ଦରିଦ୍ର । କିନ୍ତୁ ଅତୀତରେ ସେମାନଙ୍କ ଅବସ୍ଥା ସେପରି ଅସ୍ୱଚ୍ଛଳ ନଥିଲା । ଭାରତଚନ୍ଦ୍ରଙ୍କ ବାପାଙ୍କର ଥିଲେ ତିନିଭାଇ । ଜ୍ୟେଷ୍ଠ ଭାଇଙ୍କ ନାମ ବୈଦ୍ୟନାଥ, ମଝିଆ ଭାରତଚନ୍ଦ୍ରଙ୍କ ବାପା ଭଗବାନ ଓ କନିଷ୍ଠ ଥିଲେ ଗୋବିନ୍ଦ । ପ୍ରଥମେ ତାଙ୍କ ପରିବାର ସୋନପୁରରେ ଥିଲେ । ଘରେ ଧାନ ଓଳିଆ ଭରପୂର ହୋଇ ରହିଥିଲା । ସୋନପୁରରେ ତାଙ୍କ ପରିବାର "ବିର୍ତ୍ତିଆ" ଥିଲେ । ତାଙ୍କ ତଳେ ୫/୧୦ ଘର ପ୍ରଜା ମଧ୍ୟ ଥିଲେ । ପ୍ରଶାସନିକ ଦୁର୍ନୀତି ଯୋଗୁଁ ସେମାନେ ଦରିଦ୍ର ହୋଇ ଦାଣ୍ଡରେ ଠିଆ ହେଲେ ବୋଲି ଭାରତଚନ୍ଦ୍ରଙ୍କୁ ତାଙ୍କ ବାପା କହିଥିଲେ । ସୋନପୁରରେ ସେମାନେ ଥିଲେ ବୃତ୍ତିଭୋଗୀ ବ୍ରାହ୍ମଣ । ପୂର୍ବରୁ ରାଜା ଥିଲେ ପ୍ରତାପରୁଦ୍ର । ସେ ଥିଲେ ଅତ୍ୟନ୍ତ ଉଦାର ଓ ସଦାଚାରୀ । ପରବର୍ତ୍ତୀ ସମୟର ରାଜା ବୀରମିତ୍ରୋଦୟ । ଏହି ରାଜାଙ୍କ ସମୟରେ ପଟ୍ଟୀ ନାମରେ ନାନାପ୍ରକାର କରଧାର୍ଯ୍ୟ ହେଲା । ଧାନଋଣ ଚଢ଼ା ସୁଧରେ ଦିଆ ହେଉଥିଲା । ଋଣ ଆଦାୟ କେବେ ତମାଦି ହୁଏ ନାହିଁ । ସୁଧ ମୂଳକୁ ବଳି ଯାଉଥିଲା । ଭାରତଚନ୍ଦ୍ରଙ୍କ

ଭେଭେଙ୍କ ମୃତ୍ୟୁପରେ ହାତରେ ଋଣ ଖାତା ଧରି ଆଦାୟକାରୀ ରାଜକର୍ମଚାରୀ ଆସି ଜମିରେ ଥିବା ସମସ୍ତ ଧାନ କଟାଇ ନେଲେ । ପରବର୍ଷ ବି ଠିକ୍ ସେଇକଥା । ତୃତୀୟ ବର୍ଷ ପୁଣି ଜବରଦସ୍ତ ଧାନ କାଟିବା ଉଦ୍ଦେଶ୍ୟରେ ଜମି ଉପରକୁ ଆସିବା ମାତ୍ରେ ଲେଖକଙ୍କ ବାପାଙ୍କ ଭାଇମାନେ ବାଧାଦେଲେ ଏବଂ ମାଡ଼ ମାରି ପିଆଦା ଦୁଇଜଣଙ୍କର ହାତ ଭାଙ୍ଗି ଦେବାରୁ ମୋକଦ୍ଦମା ଆରମ୍ଭ ହେଲା । ରାଜାଙ୍କ ନିର୍ଦ୍ଦେଶରେ ପୋଲିସ ସେମାନଙ୍କୁ ବାନ୍ଧିନେଇ ଜେଲରେ ରଖିଲେ । ସେମାନେ ରାଜାଙ୍କ ନିକଟରେ କ୍ଷମାଭିକ୍ଷା କରିବାରୁ ରାଜା ଆଦେଶ ଦେଇଥିଲେ କେବଳ ରାଜ୍ୟତ୍ୟାଗ ବିନିମୟରେ ସେମାନଙ୍କୁ ଦଣ୍ଡରୁ ଅବ୍ୟାହତ ମିଳିପାରିବ । ରାଜଦୂତମାନେ ସେମାନଙ୍କର ଘରଦ୍ୱାର ମଧ୍ୟ ଭାଙ୍ଗି ଦେଇଥିଲେ । ସେତେବେଳେ ଆଗଲପୁର ଜମିଦାର ଧର୍ମପରାୟଣ ବ୍ୟକ୍ତି ଥିବାରୁ ସେମାନେ ସେଠାକୁ ପଳାଇଆସିଲେ । ଜମିଦାରଙ୍କ ଅଧୀନରେ ଗ୍ରାମରେ ବ୍ରାହ୍ମଣଙ୍କ କ୍ରିୟାକର୍ମ କରି ଦୁଃଖ କଷ୍ଟରେ ଚଳିଲେ । ଜ୍ୟେଷ୍ଠ ବୈଦ୍ୟନାଥ କିଛିଦିନ ପରେ ବୋଡ଼ାସମ୍ବର ଚାଲିଯିବାରୁ ଭଗବାନ ଓ ଗୋବିନ୍ଦ ସେହିଠାରେ ରହିଗଲେ । ଜମିଦାର ଯେଉଁ ସ୍ୱଳ୍ପ ଜମି ଦେଇଥିଲେ ସେଥିରେ ପରିବାର ଚଳିବା ସକାଶେ ବେଶ୍ କଷ୍ଟ ହେଉଥିଲା । ଏହା ସତ୍ତ୍ୱେ ପିଲାଦିନରୁ ସ୍ୱାଭିମାନର ସହିତ ବଞ୍ଚିବା ସେମାନେ ଶିଖିଥିଲେ ।

**ଶିକ୍ଷା :—**

ଏପରି ପ୍ରତିକୂଳ ପରିବେଶରେ ମଧ୍ୟ ପିଲାଦିନରୁ ଭାରତଚନ୍ଦ୍ରଙ୍କର ଶିକ୍ଷାପ୍ରତି ବିଶେଷ ଆଗ୍ରହ ରହିଥିଲା । ଜୀବନରେ ନିଶ୍ଚିତ ଭାବରେ ଏହି ସକାରାତ୍ମକ ଚିନ୍ତାଧାରା ପ୍ରତିକୂଳ ପରିବେଶ ସତ୍ତ୍ୱେ ଶିକ୍ଷାରୁ ତାଙ୍କୁ ବଞ୍ଚିତ କରିପାରି ନଥିଲା । ଉତ୍ତମ ଛାତ୍ରଙ୍କ ପାଇଁ ପାଠ ପଢ଼ିବା ନିମିତ୍ତ ପ୍ରୋତ୍ସାହନର ବ୍ୟବସ୍ଥା ରହିଥିଲା । ଭାରତଚନ୍ଦ୍ର ପିଲାଦିନରୁହିଁ ଜଣେ ମେଧାବୀ ଛାତ୍ର ରୂପେ ପରିଚିତ ଥିଲେ । ଆଗଲପୁର ସ୍କୁଲରୁ ଉଚ୍ଚ ପ୍ରାଇମେରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ପିତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ଉଚ୍ଚଶିକ୍ଷା ବଲାଙ୍ଗିରରେ ପଢ଼ିବା ଖର୍ଚ୍ଚ ଯୋଗାଇବା ପାଇଁ ଅସମର୍ଥ ଥିଲେ । ପୁଣି ନିକଟରେ ତାଙ୍କ ବଡ଼ଭାଇଙ୍କ ମୃତ୍ୟୁ ହୋଇଥିଲା । ଏଥିପାଇଁ ବାପା ତାଙ୍କୁ ବଲାଙ୍ଗିରକୁ ପଠାଇବା ପାଇଁ ରାଜି ନଥିଲେ । ବାଧ୍ୟହୋଇ ଭଲ ପଢ଼ିବା ସତ୍ତ୍ୱେ ସେ ଗୋଟିଏ ବର୍ଷ ଘରେ ବସି ରହିଲେ । ୧୮୯୮ ମସିହା ମାର୍ଚ୍ଚ ମାସରେ ଡେପୁଟି ଇନ୍‌ସପେକ୍ଟର କନିଟକରରେ ଆଗଲପୁର ଆସିଥିବା ସମୟରେ ତାଙ୍କୁ ଓ ତାଙ୍କ ପିତାଙ୍କୁ ଡକାଇ ପଠାଇଥିଲେ । ବଲାଙ୍ଗିରରେ ସେ ଭାରତଚନ୍ଦ୍ରଙ୍କ ପାଠପଢ଼ା ଖର୍ଚ୍ଚ ବହନ କରିବାକୁ ପ୍ରତିଶ୍ରୁତି ଦେଲେ । ସେଠାରେ ପ୍ରଧାନ ଶିକ୍ଷକ ମାସିକ ଦେଢ଼ ଟଙ୍କା ସାହାଯ୍ୟ ବ୍ୟବସ୍ଥା କଲେ । ଭାରତଚନ୍ଦ୍ର ଛାତ୍ରାବାସରେ ରହି ପାଠ ପଢ଼ିଲେ । ପିଲାମାନେ ନିଜ ହାତରେ ରୋଷେଇ କରୁଥିଲେ । ସେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି

ଦ୍ୱିତୀୟ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇ ଅଢ଼େଇ ଟଙ୍କା ବୃତ୍ତି ପାଇଲେ । ସେତେବେଳେ ଛାତ୍ର ଏବଂ ଶିକ୍ଷକଙ୍କ ମଧ୍ୟରେ ପିତା-ପୁତ୍ର ସମ୍ପର୍କ ରହିଥିଲା ।

୧୯୦୨ ମସିହା ଫେବ୍ରୁଆରୀ ମାସରେ ମଧ୍ୟପ୍ରଦେଶ ଶିକ୍ଷାବିଭାଗ ଦ୍ୱାରା ପରିଚାଳିତ ମଧ୍ୟ ଇଂରାଜୀ ପରୀକ୍ଷାରେ ସେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ବଲାଙ୍ଗିରରେ ହାଇସ୍କୁଲ ନଥିବାରୁ ଉଚ୍ଚଶିକ୍ଷା ପାଇଁ ସମ୍ବଲପୁର ଯିବାକୁ ପଡ଼ୁଥିଲା । ଏହି ଉଚ୍ଚଶିକ୍ଷା ବିଷୟରେ ପିତାମାତା ଓ ଗ୍ରାମବାସୀ ଶୁଣି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେମାନଙ୍କର ଧାରଣା ଥିଲା ବଲାଙ୍ଗିର ପାଠ ପରେ ସବୁପାଠ ଶେଷ । କ୍ୱଚିତ୍ ଛାତ୍ର ଉଚ୍ଚଶିକ୍ଷାନିମିତ୍ତ ସ୍ଥାନାନ୍ତର ଯାଉଥିଲେ । ବାପା ବଲାଙ୍ଗିର ଆସି ହେଡ୍‌ମାଷ୍ଟର ଶ୍ରୀ ବାଲୁକେଶ୍ୱର ମିଶ୍ରଙ୍କୁ ଅନୁରୋଧ କଲେ ଭାରତଚନ୍ଦ୍ରଙ୍କୁ ଅଧିକ ପାଠ ପଢ଼ାରୁ ନିବୃତ୍ତ କରାଇବାକୁ । ମାତ୍ର ଶ୍ରୀ ମିଶ୍ର ତାଙ୍କ ପାଠ ପଢ଼ାର ସମସ୍ତ ଖର୍ଚ୍ଚ ବହନ କରିବେ ଓ ସେ ତାଙ୍କୁ ନିଜର ପୁଅ କରି ନେଇଛନ୍ତି ବୋଲି କହିବାରୁ ସେ ରାଜି ହୋଇଥିଲେ । ହାଇସ୍କୁଲରେ ପଢ଼ିବା ସମୟରେ ସେ ଛଅଟଙ୍କା ବୃତ୍ତି ପାଇଲେ । ମେସ୍ ଖର୍ଚ୍ଚ ତିନିଟଙ୍କା, ସ୍କୁଲ ଦରମା ଦୁଇଟଙ୍କା । ଅବଶିଷ୍ଟ ଟଙ୍କାକରେ ତାଙ୍କୁ କିରାସିନି ଆଦି ଖର୍ଚ୍ଚ ତୁଲାଇବାକୁ ପଡ଼ୁଥିଲା । ବହି ଓ ଲୁଗାପଟା ଖର୍ଚ୍ଚ ସ୍ୱତନ୍ତ୍ର । ସ୍କୁଲ ଦରମା ଅଭିଭାବକଙ୍କ ଆୟ ଅନୁସାରେ ଦୁଇ ଟଙ୍କାରୁ ଆଠ ଟଙ୍କା ପର୍ଯ୍ୟନ୍ତ ଥିବାରୁ ଏବଂ ତାଙ୍କ ବାପାଙ୍କ ଆୟ ଖୁବ୍ କମ୍ ଥିବାରୁ ତାଙ୍କୁ ଦୁଇଟଙ୍କା ଦେବାକୁ ହେଉଥିଲା । ସେତେବେଳେ ସମ୍ବଲପୁର ଆଜିର ମଧ୍ୟପ୍ରଦେଶ ଅନ୍ତର୍ଭୁକ୍ତ ଥିଲା ।

ତତ୍‌କାଳୀନ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ସେ ତାଙ୍କ ଆତ୍ମଜୀବନୀ ଲେଖିଛନ୍ତି– "ସେହି ସମୟରେ ମଧ୍ୟପ୍ରଦେଶର ସ୍କୁଲ ଓ କଲେଜସମୂହ କଲିକତା ବିଶ୍ୱବିଦ୍ୟାଳୟର ଅନ୍ତର୍ଭୁକ୍ତ ଥିଲା । ମଧ୍ୟପ୍ରଦେଶର କଲେଜ ବୋଇଲେ ଦୁଇଟି, ନାଗପୁରର ହିସ୍‌ଲପ୍ କଲେଜ ଓ ମରିସ୍ କଲେଜ । ଏଣ୍ଟ୍ରେନ୍‌ସ ପରୀକ୍ଷା ସକାଶେ ନିର୍ଦ୍ଦିଷ୍ଟ ବିଷୟ ଥିଲା ଇଂରାଜୀ, ସାହିତ୍ୟ, ଗଣିତ, ସଂସ୍କୃତ, ଭାରତବର୍ଷ ଓ ଇଂଲଣ୍ଡର ଇତିହାସ ଭୂଗୋଳ ଓ ପ୍ରାଥମିକ ପଦାର୍ଥ ବିଜ୍ଞାନ । ଇଂରେଜୀରେ ବ୍ୟାକରଣ ସ୍ୱତନ୍ତ୍ର ସ୍ଥାନ ପ୍ରାପ୍ତ ହେଉଥିଲା । ଅଣ୍ଟ୍ରେନ୍‌ସ ପରୀକ୍ଷାରେ ଦୁଇଟି ପ୍ରଶ୍ନ କାଗଜରୁ ଗୋଟିଏ କେବଳ ବ୍ୟାକରଣରେ ଓ ଏହାଦ୍ୱାରା ଇଂରେଜୀରେ ଉତ୍ତମ ଜ୍ଞାନଲାଭର ବ୍ୟବସ୍ଥା ଥିଲା । ଏହି ନିୟମ ପରବର୍ତ୍ତୀ ପ୍ରବର୍ତ୍ତିତ ମେଟ୍ରିକୁଲେସନ ପରୀକ୍ଷାରେ ପରିବର୍ତ୍ତିତ ହୋଇଗଲା । ଇଂରେଜୀ ବ୍ୟାକରଣ ଆଉ ଗୋଟିଏ ସ୍ୱତନ୍ତ୍ର ବିଷୟ ରୂପେ ପଢ଼ା ହେଲାନାହିଁ ।"

ସେତେବଳେ ସ୍କୁଲସମୂହର ଇନ୍‌ସପେକ୍ଟର ବିଦ୍ୟାଳୟ ପରିଦର୍ଶନରେ ଆସି ପ୍ରତ୍ୟେକ ଶ୍ରେଣୀ ପିଲାମାନଙ୍କୁ ପରୀକ୍ଷା କରୁଥିବାରୁ ଶିକ୍ଷକଗଣ ମନୋଯୋଗ ସହିତ ପାଠ ପଢ଼ାଉଥିଲେ । ସେ ସମୟରେ ସ୍କୁଲର ପ୍ରଧାନଶିକ୍ଷକ ଥିଲେ ଶ୍ରୀ ଦାଶରଥି ପାଣିଗ୍ରାହୀ ।

ପରୀକ୍ଷାର କିଛିଦିନ ପୂର୍ବରୁ ସେ ଛାତ୍ରବାସକୁ ଆସି ପଢ଼ାଉଥିଲେ । ସେତେବେଳେ ସମ୍ବଲପୁର ଆବହାଓ୍ୱା ଉଚ୍ଚଶିକ୍ଷାର ଅନୁକୂଳ ନଥିଲା ବୋଲି ଭାରତଚନ୍ଦ୍ର ଅନୁଭବ କରିଥିଲେ । ତେଣୁ ସେ ପଢ଼ିବା ସମୟରେ ସମ୍ବଲପୁରରେ ଅଳ୍ପ କେତେଜଣ ଗ୍ରାଜୁଏଟ୍ ଥିଲେ । ଏହି କାରଣରୁ ମରହଟ୍ଟା ଓ ବହୁ ହିନ୍ଦୁସ୍ଥାନୀ ସମ୍ବଲପୁରର ସରକାରୀ ଚାକିରି ଏବଂ ଅନ୍ୟାନ୍ୟ ବ୍ୟବସାୟ ଦଖଲ କରି ନେଇଥିଲେ । ସେଥିପାଇଁ ଓଡ଼ିଆ ଓ ସେମାନଙ୍କ ମଧ୍ୟରେ ସଂଘର୍ଷ ସୃଷ୍ଟି ହୋଇଥିଲା । ସେମାନେ ଓଡ଼ିଆଙ୍କ ଜାତୀୟତା ଲୋପ କରିଦେବାକୁ ଚକ୍ରାନ୍ତ କରିଥିଲେ । ଓଡ଼ିଆ ଭାଷାକୁ ଏଠାରୁ ବିତାଡ଼ନ ପାଇଁ ଚେଷ୍ଟା କରିଥିଲେ । ବିଦ୍ୟାଳୟମାନଙ୍କରୁ ଓଡ଼ିଆ ଭାଷା ଉଠାଇ ଦେଇ ହିନ୍ଦୀ ଭାଷା ପ୍ରଚଳନର ଉଦ୍ୟମ ହେଲା । ଅଦାଲତରୁ ଓଡ଼ିଆ ଭାଷା ଉଠାଇଦିଆଗଲା । ମଧ୍ୟପ୍ରଦେଶର ତତ୍କାଳୀନ ଚିଫ୍ କମିଶନର ସାର ଜନ୍ ଉଡବର୍ଣ୍ଣଙ୍କ ସମୟରେ ଏପରି ଏକ ଅପ୍ରୀତିକର ଘଟଣା ଘଟିଥିଲା ।

୧୯୦୨-୦୪ ମସିହା ମଧ୍ୟରେ ସମ୍ବଲପୁରରେ ଅଧ୍ୟୟନ ସମୟରେ ସେ ଲକ୍ଷ୍ୟ କରିଥିଲେ କେତେଜଣ ଇଂରେଜ ଓ ଓଡ଼ିଆ ଖ୍ରୀଷ୍ଟଧର୍ମ ପ୍ରଚାରକ ହାଟପାଳି ଦିନ ହାଟରେ ଏବଂ ରଥଯାତ୍ରା ଇତ୍ୟାଦି ପର୍ବ ଦିନମାନଙ୍କରେ ପ୍ରକାଶ୍ୟ ସ୍ଥାନରେ ହିନ୍ଦୁଧର୍ମ ଏବଂ ହିନ୍ଦୁଦେବତାମାନଙ୍କୁ ନିନ୍ଦାକରି ଖ୍ରୀଷ୍ଟଧର୍ମର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଚେଷ୍ଟା କରନ୍ତି ଓ ଅନେକ ସ୍ଥାନରେ ଲୋକମାନଙ୍କଠାରୁ ଗାଳି ଖାଆନ୍ତି ମଧ୍ୟ । ୧୯୦୪ ମସିହାରେ (ମାର୍ଚ୍ଚ ମାସ) କଲିକତା ବିଶ୍ୱବିଦ୍ୟାଳୟରେ ଏଣ୍ଟ୍ରାନ୍ସ ପରୀକ୍ଷା ଗୃହୀତ ହେଲା । ସମ୍ବଲପୁର ହାଇସ୍କୁଲର ୧୯ ଜଣ ଛାତ୍ର ପରୀକ୍ଷା ପାଇଁ ନିର୍ବାଚିତ ହେଲେ । ସମ୍ବଲପୁରରେ ପରୀକ୍ଷା କେନ୍ଦ୍ର ନଥିବାରୁ କଟକରେ ପରୀକ୍ଷା ଦେବାକୁ ପଡୁଥିଲା । ରେଳପଥରେ ସମ୍ବଲପୁରରୁ ଖଡ଼ଗପୁର ଦେଇ କଟକ ୪୬୦ ମାଇଲ । ସମ୍ବଲପୁର- କଟକ ସଡ଼କରେ ୧୭୪ ମାଇଲ୍ । ସଡ଼କ ସେତେବେଳେ ଥିଲା କଚା ଓ ଅରଣ୍ୟ ସଂକୁଳ । ମୋଟର ଚଳାଚଳ ପ୍ରାୟତଃ ନଥିଲା । ରେଳଗାଡ଼ିର ୩ୟ ଶ୍ରେଣୀ ଡବାରେ ଭୀଷଣ ଅସୁବିଧା ଭିତରେ କଟକ ଯିବାକୁ ପଡୁଥିଲା । ଭାରତଚନ୍ଦ୍ର ଓ ତାଙ୍କର ସାଥୀମାନେ ସେହି ଅସୁବିଧାରେ ଯାଇ କଟକରେ ନବକୃଷ୍ଣ ଚୌଧୁରୀଙ୍କ ପିତା ରାୟବାହାଦୁର ଗୋକୁଳାନନ୍ଦ ଚୌଧୁରୀଙ୍କ ବସାଘରେ ରହି ପରୀକ୍ଷା ଦେଲେ । ପରୀକ୍ଷା ପରେ ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କଲେ । ତାଙ୍କର ସହାଧ୍ୟାୟୀମାନେ ସେଠାରେ ଦୁଇଦିନ ରହି ଘରକୁ ଫେରିଗଲେ । ମାତ୍ର ଭାରତଚନ୍ଦ୍ର ଧର୍ମପିତାଙ୍କ ଆଦେଶରେ ସେଠାରେ ପୁରୀ ଜିଲ୍ଲା ସ୍କୁଲର ହେଡ଼ପଣ୍ଡିତ ମହାମହୋପାଧ୍ୟାୟ ସଦାଶିବ ମିଶ୍ର କାବ୍ୟକଣ୍ଠଙ୍କଠାରୁ ସଂସ୍କୃତ ବ୍ୟାକରଣ ପଢ଼ିଲେ । ସେତେବେଳେ ପୁରୀର ଦୋଳମଣ୍ଡପ ସାହିରେ ଥିବା ପଣ୍ଡିତ ମହୋଦୟଙ୍କ ବସାଘର ଥିଲା ଧର୍ମ, ସାହିତ୍ୟ ଓ ରାଜନୀତି ଚର୍ଚ୍ଚାର କେନ୍ଦ୍ରସ୍ଥଳୀ । ସେଠାରେ ବ୍ରାହ୍ମଣ ସମିତ ବୋର୍ଡ଼ିଂରେ ରହିବାବେଳେ ଉତ୍କଳମଣି ଗୋପବନ୍ଧୁଙ୍କ ସହିତ କିଛିଦିନ ମିଶିବାର

ସୁଯୋଗ ଜୁଟିଥିଲା । ଧର୍ମପିତା ବାଲୁକେଶ୍ୱର ମିଶ୍ରଙ୍କ ବନ୍ଧୁଥିବା ଯୋଗୁଁ ଗୋପବନ୍ଧୁ ତାଙ୍କୁ ସ୍ନେହ କରୁଥିଲେ । ସେଠାରେ ମଧ୍ୟ ଭାରତଚନ୍ଦ୍ରଙ୍କ ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହିତ ପରିଚୟ ହୋଇଥିଲା । ସେଠାରେ ଆଠଗଡ଼ ରାଜା ବିଶ୍ୱନାଥ ବେବର୍ତ୍ତା ପଟ୍ଟନାୟକଙ୍କ ପାଣ୍ଡିତ୍ୟ ଓ ଭାଷଣ ଶୁଣି ସେ ଚମତ୍କୃତ ହୋଇଥିଲେ । ଖଣ୍ଡପଡ଼ାର ପଠାଣି ସାଆନ୍ତଙ୍କୁ ସେ ଭେଟିଥିଲେ ତାଙ୍କର ରୋଗ ଶଯ୍ୟାରେ । ଭେଟିବାର ଦୁଇଦିନ ପରେ ତାଙ୍କର ମୃତ୍ୟୁ ହୋଇଥିଲା, ଯାହା ଭାରତଚନ୍ଦ୍ରଙ୍କୁ ବିଶେଷ ବ୍ୟଥିତ କରିଥିଲା । ଜୁନ୍ ମାସରେ ଏଣ୍ଟ୍ରାନ୍‌ସ ପରୀକ୍ଷା ଫଳ ପ୍ରକାଶିତ ହୋଇଥିଲା ଏବଂ ଏଥିରେ ସମ୍ବଲପୁର ସ୍କୁଲର ଭାରତଚନ୍ଦ୍ରଙ୍କୁ ମିଶାଇ ମାତ୍ର ୩ ଜଣ ପାସ୍ କରିଥିଲେ । ପୁରୀରେ ସ୍ୱଳ୍ପକାଳ ଅବସ୍ଥାନ ସମୟରେ ହେବାର୍ଲେଟ ସାହେବଙ୍କ ସହିତ ସାକ୍ଷାତ୍ ହେବାବେଳେ ସେ ତାଙ୍କୁ ବିଲାତ ପଠାଇବାର ପ୍ରଲୋଭନ ଦେଖାଇଥିଲେ । ମାତ୍ର ସେ ପ୍ରଲୋଭନରେ ନଭୁଲି ଜୁଲାଇ ମାସରେ କଟକ ଆସି କଲେଜରେ ନାମ ଲେଖାଇଥିଲେ ।

ତତ୍‌କାଳୀନ କଲେଜ ଶିକ୍ଷା ସମ୍ପର୍କୀୟ ଅନେକ ବିବରଣୀ ଭାରତଚନ୍ଦ୍ରଙ୍କ ଆତ୍ମଜୀବନୀରେ ଦେଖିବାକୁ ମିଳେ । ସେତେବେଳେ କଲେଜରେ ଥିଲା ଏଫ୍.ଏ କ୍ଲାସ ବା First Arts । ଏଥିରେ କଳା ଓ ବିଜ୍ଞାନ ସମ୍ମିଳିତ ଥିଲା । ଇଂରାଜୀ, ସାହିତ୍ୟ, ଗଣିତ, ସଂସ୍କୃତ, ଇତିହାସ, ତର୍କଶାସ୍ତ୍ର, ପଦାର୍ଥ ବିଜ୍ଞାନ, ରସାୟନ, ସ୍ୱାସ୍ଥ୍ୟ ବିଜ୍ଞାନ ପଠିତ ହେଉଥିଲା । ବି.ଏ (B.A) ତିନି ଶାଖାରେ ବିଭକ୍ତ ଥିଲା । ଯଥା A Course, B Course ଓ Mixed course. ସମସ୍ତ କୋର୍ସରେ ଇଂରାଜୀ ବାଧ୍ୟତା ମୂଳକ । A courseରେ ଦର୍ଶନ ଓ ସଂସ୍କୃତ କିମ୍ବା ଇତିହାସ । B courseରେ ଗଣିତ, ପଦାର୍ଥବିଜ୍ଞାନ ଓ ରସାୟନ କିମ୍ବା ଉଦ୍ଭିଦବିଜ୍ଞାନ ଓ ଶରୀରତତ୍ତ୍ୱ । Mixed courseରେ ଗଣିତ ଓ ଦର୍ଶନ । ଏଣ୍ଟ୍ରାନ୍‌ସଠାରୁ B.A. ପର୍ଯ୍ୟନ୍ତ କୌଣସି ପରୀକ୍ଷା ପାଇଁ ମାତୃଭାଷାର ସ୍ଥାନ ନଥିଲା । ୧୯୦୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ଆଶୁତୋଷ ମୁଖୋପାଧ୍ୟାୟ ନେତୃତ୍ୱରେ ପାଠ୍ୟକ୍ରମର ସଂସ୍କାର କରଯାଇଥିଲା । କଳା ଓ ବିଜ୍ଞାନକୁ ପୃଥକ୍ କରି ଦିଅଗଲା ଓ ଏଫ୍.ଏ. ପରିବର୍ତ୍ତେ ଆଇ.ଏ, ଆଇ.ଏସ୍‌ସି ହେଲା । ସେହିପରି ବି.ଏ. ପରୀକ୍ଷା ପାଇଁ ତଦ୍ରୂପ କଳା ଏବଂ ବିଜ୍ଞାନ ପୃଥକ୍ ହେଲା । ଭିନ୍ନ ଭିନ୍ନ ଭାଷାଭାଷୀ ଛାତ୍ରମାନଙ୍କ ପାଇଁ ମାତୃଭାଷାର ଶିକ୍ଷା ବାଧ୍ୟତାମୂଳକ ହେଲା ।

ସେତେବେଳେ କଲେଜମାନଙ୍କରେ ବଙ୍ଗାଳୀ ଛାତ୍ରମାନଙ୍କର ପ୍ରାଧାନ୍ୟ ରହିଥିଲା । କାରଣ କଚେରୀ ଜଜ୍, ମାଜିଷ୍ଟ୍ରେଟ୍, ଓକିଲ, ଡାକ୍ତର, ସ୍କୁଲମାଷ୍ଟର- ସମସ୍ତେ ବଙ୍ଗାଳୀ । ଏପରିକି ସେମାନଙ୍କ ପ୍ରଭାବରେ ଦୋକାନୀମାନେ ମଧ୍ୟ ଅଧାଖଣ୍ଡିଆ ବଙ୍ଗଳା କହିଥାନ୍ତି । ସେହି ସମୟରେ ଓଡ଼ିଶାରେ ଆଙ୍ଗୁଳିରେ ଗଣି ହେବା ପରି ଏମ୍.ଏ ଥିଲେ । ଯେପରି ମଧୁସୂଦନ ଦାସ, ତାଙ୍କ ଭାଇ ଗୋପାଳବଲ୍ଲଭ ଦାସ, ଅଭିରାମ ଭଞ୍ଜ, ସମ୍ବଲପୁରର

ରାମନାରାୟଣ ମିଶ୍ର ଓକିଲ । ରେଭେନ୍‌ସା କଲେଜରେ ବି.ଏ ପରୀକ୍ଷା ଦେବାପରେ ସେ ଘରକୁ ଫେରିଆସିଥିଲେ । ସେ ଯେଉଁ ବର୍ଷ ବି.ଏ. ପାସ୍ କଲେ ସେହି ବର୍ଷ କଲିକତାରେ ୟୁନିଭରସିଟି ଆଇନ୍ କଲେଜ ସ୍ଥାପିତ ହୋଇଥିଲା । ରେଭେନ୍‌ସା କଲେଜରୁ ଆଇନ୍‌କ୍ଲାସ (ଲ) ଉଠାଇ ଦେଇ କଲିକତାରେ ସେହି ଆଇନ୍ କଲେଜ ଶିକ୍ଷାପାଇଁ ଓଡ଼ିଶା ଗ୍ରାଜୁଏଟ୍‌ଙ୍କ ପାଇଁ ୩୦ ଟଙ୍କା ବୃତ୍ତି ସରକାର ମଞ୍ଜୁର କରିଥିଲେ । ସରକାରୀ ଚାକିରି ନିମିତ୍ତ ଭାରତଚନ୍ଦ୍ରଙ୍କର ବୟସ ହୋଇନଥିବାରୁ ସେ ସମୟ ନଷ୍ଟ ନକରି ଆଇନ୍ ଶିକ୍ଷା ପାଇଁ ମନ ବଳାଇଥିଲେ । ସରକାରଙ୍କ ଠାରୁ ବୃତ୍ତିଲାଭ କରି ଜୁଲାଇ ମାସରେ କଲିକତା ଆଇନ୍ କଲେଜରେ ନାମ ଲେଖାଇ ଥିଲେ । ବାସ୍ତବରେ ତାଙ୍କର ଆଇନ୍ ଶିକ୍ଷା ଉଦ୍ଦେଶ୍ୟ ନଥିଲା । ସେତେବେଳର ପଲିଟିକାଲ ଏଜେଣ୍ଟ L.E.B cobden Ramsay, I.C.S ଙ୍କୁ ସରକାରୀ ଚାକିରି ନିମିତ୍ତ ସାକ୍ଷାତ କରିବାବେଳେ ସେ ତାଙ୍କୁ ଆଉ ଗୋଟିଏ ବର୍ଷ ଅପେକ୍ଷା କରିବାକୁ କହିଥିଲେ । ସେଥିପାଇଁ ସେ ଆଇନ୍ କଲେଜରେ ଭର୍ତ୍ତି ହୋଇଥିଲେ ଏବଂ ବୟସ ହେବାରୁ ପଲିଟିକାଲ ଏଜେଣ୍ଟ ତାଙ୍କୁ ସରକାରୀ ଚାକିରି ନିମିତ୍ତ ମନୋନୀତ କରିବାରୁ ଆଇନ୍ କଲେଜ ଛାଡ଼ି ସବ୍ ଡେପୁଟୀ ପଦରେ ଚାକିରି ଜୀବନ ଆରମ୍ଭ କଲେ ।

ବୃତ୍ତିଗତ ଜୀବନ- ୧୯୦୮ ମସିହା ଏପ୍ରିଲ୍ ମାସରେ ସମ୍ବଲପୁର ଜିଲ୍ଲା ବୋର୍ଡ଼ ସଦର ସବ୍‌ଡ଼ିଭିଜନ ଅନ୍ତର୍ଗତ ରମ୍ଭେଲା ଓ ବରଗଡ଼ ସବ୍‌ଡ଼ିଭିଜନ ଅନ୍ତର୍ଗତ ବରଗଡ଼ ଓ ବୋଡ଼ା ସମ୍ବର- ପଦ୍ମପୁରରେ ଗୋଟିଏ କରି ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ ହେଲା । ତିନୋଟି ସ୍କୁଲ୍ ପାଇଁ ଦୁଇଜଣ ଇଂରାଜୀ ଶିକ୍ଷକ । ସେତେବେଳେ ଭାରତ ଚନ୍ଦ୍ର ବି.ଏ. ପରୀକ୍ଷା ଦେଇ ଘରକୁ ଆସିଥିଲେ । ତତ୍କାଳୀନ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ଯୋଗେନ୍ଦ୍ରନାଥ ସେନ୍‌ଙ୍କ ପରାମର୍ଶ କ୍ରମେ ତାଙ୍କ ଧର୍ମପିତା ସେହି ଶିକ୍ଷକତା କାର୍ଯ୍ୟ ଗ୍ରହଣ କରିବାକୁ ପରାମର୍ଶ ଦେବାରୁ ସେ ସେଥିରେ ଯୋଗଦେଲେ । ଏହି ସମୟରେ ବିଦ୍ୟାଳୟରେ କେତେକ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିଥିଲେ । ଥରେ ସ୍କୁଲ୍ ସମୂହର ଡେପୁଟୀ ଇନିସ୍‌ପେକ୍ଟର ଶ୍ରୀ ଈଶ୍ୱର ପ୍ରସାଦ ତିୱାରି ସ୍କୁଲ ପରିଦର୍ଶନରେ ଆସି ଦେଖିଲେ ଛାତ୍ରମାନେ ସେଦିନ ଗୋଟିଏ ପ୍ରକାର ପୋଷାକ ପିନ୍ଧି ଆସିନଥିଲେ । ସେତେବେଳେ ହାକିମମାନେ ପରିଦର୍ଶନ ଆସିବା ଦିନ ସମସ୍ତ ପିଲା ଗୋଟିଏ ପ୍ରକାର ପୋଷାକ ପିନ୍ଧି ଆସିବାର ନିୟମ ଥିଲା ଓ ଏହି ନିୟମ ଜାରି ରଖିବାକୁ କହିବାରୁ ସ୍କୁଲ ପରିଚାଳନା କମିଟି ସଭ୍ୟ ପ୍ରତିବାଦ କଲେ ଏବଂ ଭାରତଚନ୍ଦ୍ର ସେଥିରେ ଏକମତ ହେଇ ମଧ୍ୟପ୍ରଦେଶର ନିୟମ ଓଡ଼ିଶାରେ ଲାଗୁ ହେବା ଆବଶ୍ୟକ ନାହିଁ ବୋଲି କହିଲେ । ଏପରି ନିୟମ ଲାଗୁ ହେଲେ ବହୁ ଗରିବ ଛାତ୍ର ବିଦ୍ୟାଳୟକୁ ଆସିପାରିବେ ନାହିଁ ବୋଲି ଯୁକ୍ତି କରିଥିଲେ । ମାତ୍ର ତିୱାରି ତାହା ନଶୁଣି ତାଙ୍କ ବିରୋଧରେ ପ୍ରତକୂଳ ମନ୍ତବ୍ୟ ଲେଖିଲେ । ଏହି ଘଟଣା ତତ୍‌କାଳୀନ ଓଡ଼ିଶା ବିଭାଗ ସ୍କୁଲ୍ ଇନିସ୍‌ପେକ୍ଟର ଭକ୍ତକବି

ମଧୁସୂଦନ ରାଓ ଏବଂ ସମ୍ବଲପୁର ଡେପୁଟୀ କମିଶନର A.N.Moberly, I.C.Sଙ୍କ କାନକୁ ଗଲା । ସେମାନେ ଭାରତଚନ୍ଦ୍ରଙ୍କୁ ସମର୍ଥନ କରିବାରୁ ସମ୍ବଲପୁର ଜିଲ୍ଲା ସ୍କୁଲ୍‌ରୁ ଏକପ୍ରକାର ପୋଷାକ ନିୟମ ସମ୍ପୂର୍ଣ୍ଣ ଉଠି ଯାଇଥିଲା । ଏହା ସେତେବେଳେ ଭାରତ ଚନ୍ଦ୍ରଙ୍କର ଥିଲା ଏକ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀର ପରିଚାୟକ । ଗ୍ରୀଷ୍ମାବକାଶ ପୂର୍ବରୁ ବି.ଏ. ପରୀକ୍ଷାରେ ପାସ୍ କରିଥିବା ସମ୍ବାଦ ପାଇଲେ । ପାଟଣାର ତତ୍କାଳୀନ ରାଜା ମହାରାଜା ଦଳଗଞ୍ଜନ ସିଂହ ତାଙ୍କ କୃତିତ୍ୱରେ ଖୁସି ହୋଇ ମଧଇଂରାଜୀ ସ୍କୁଲ୍‌ର ପ୍ରଧାନଶିକ୍ଷକ ପଦରେ ୬୦ ଟଙ୍କା ବେତନରେ ନିଯୁକ୍ତି ପତ୍ର ପଠାଇଥିଲେ । ଭାରତଚନ୍ଦ୍ର ବଲାଙ୍ଗିର ଯାଇ ତାଙ୍କୁ ସାକ୍ଷାତ୍ କରି କୃତଜ୍ଞତା ଜଣାଇବା ସହିତ ସରକାରୀ ଚାକିରି ନିମିତ୍ତ ନିଜର ଇଚ୍ଛା ପ୍ରକଟ କରିଥିଲେ । ରାଜା ତାଙ୍କୁ ଗୋଟିଏ ସାର୍ଟିଫିକେଟ ଦେବା ସହିତ ସୋନପୁର ଓ ବାମଣ୍ଡା ରାଜାଙ୍କଠାରୁ ଦୁଇଖଣ୍ଡ ସାର୍ଟିଫିକେଟ ଅଣାଇ ଦେଇଥିଲେ । ସରକାରୀ ଚାକିରି ନିମିତ୍ତ ଏହି ସାର୍ଟିଫିକେଟ ଗୁଡ଼ିକ ବିଶେଷ ଜରୁରୀ ଥିଲା । ଉପଯୁକ୍ତ ବୟସରେ ପଦାର୍ପଣ ସହିତ ସେ ସରକାରୀ ଚାକିରିରେ ଯୋଗ ଦେଇଥିଲେ ।

ତାଙ୍କର ପ୍ରଥମ ସରକାରୀ ଚାକିରି ଜୀବନ ଆରମ୍ଭ ସମ୍ବଲପୁରରେ ତା’ ୭।୧୨। ୧୯୦୯ରେ । ୧୯୦୮ ମସିହାରେ ସମ୍ବଲପୁରର ଦୁର୍ଗାପ୍ରସାଦ ମିଶ୍ର ବି.ଏ. ପରୀକ୍ଷାରେ ୩ଥର ଫେଲ୍ ହୋଇଥିଲେ ହେଁ ତାଙ୍କ ପିତା ବନମାଳୀ ମିଶ୍ର ଉଚ୍ଚ ରାଜକର୍ମଚାରୀ ଥିବାରୁ ସେ ଡେପୁଟୀ କଲେକ୍ଟର ଚାକିରି ପାଇଲେ; ଅଥଚ ଭାରତଚନ୍ଦ୍ର ପ୍ରତି ଶ୍ରେଣୀରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେହେଁ ତାଙ୍କ ଘରେ କେହି ରାଜକର୍ମଚାରୀ ନଥିବାରୁ ସେ ସବ୍-ଡେପୁଟୀ ଭାବରେ ଚାକିରିରେ ଯୋଗ ଦେବାକୁ ବାଧ୍ୟ ହୋଇଥିଲେ । ସେତେବେଳେ ୧୯୦୪ ମସିହା ପର୍ଯ୍ୟନ୍ତ ଏକ ପ୍ରତିଯୋଗିତା ମୂଳକ ପରୀକ୍ଷା ଅନୁଷ୍ଠିତ ହୋଇ ଯୋଗ୍ୟତା ଭିତ୍ତିରେ ସରକାରୀ ଚାକିରି ଦିଆଯାଉଥିଲା । ମାତ୍ର ୧୯୦୫ ମସିହାରେ ଏହି ପ୍ରତିଯୋଗିତା ମୂଳକ ପରୀକ୍ଷା ଉଠାଇ ଦିଆଯିବାରୁ ବିଭାଗୀୟ କମିଶନରଙ୍କ ସୁପାରିଶ୍ ଉପରେ ଚାକିରି ନିର୍ଭର କରୁଥିଲା । ଏହି କାରଣରୁ ଶିକ୍ଷାଗତ ଯୋଗ୍ୟତା ଅପେକ୍ଷା ସୁପାରିଶ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଲା । ସେତେବେଳେ ସମ୍ବଲପୁରର ଖୁବ୍ କମ୍ ଲୋକ ସରକାରଙ୍କ ଉଚ୍ଚ ପଦବୀରେ ଅଧିରୂଢ଼ ଥିଲେ । ଡେପୁଟୀ କମିଶନର ବିଭିନ୍ନ ବିଭାଗରେ କାର୍ଯ୍ୟ ଶିକ୍ଷାର ନିର୍ଘଣ୍ଟ ପ୍ରସ୍ତୁତ କରୁଥିଲେ । ସେହି ନିୟମାନୁସାରେ ଭାରତଚନ୍ଦ୍ର ଦୁଇବର୍ଷ କାଳ ଶିକ୍ଷା ଆରମ୍ଭ କରିଥିଲେ । ତତ୍‌କାଳୀନ ଡେପୁଟୀ କଲେକ୍ଟର ଶଶୀଭୂଷଣ ଶତପଥୀଙ୍କ ଅଧୀନରେ ସେ ଅଧିକାଂଶ ଶିକ୍ଷା ଗ୍ରହଣ କରିଥିଲେ । ଏହି ଶଶୀଭୂଷଣ ବାବୁ ଥିଲେ ତାଙ୍କ ଧର୍ମପିତାଙ୍କ ବିଶିଷ୍ଟ ବନ୍ଧୁ ଓ ସ୍ୱାଧୀନଚେତା । ଏହିଠାରେ ଶିକ୍ଷା ଗ୍ରହଣ ସମୟରେ ବିଶିଷ୍ଟ କବି ନନ୍ଦକିଶୋର ବଳ ଆସି ଚାକିରିରେ ଯୋଗ ଦେବାରୁ ତାଙ୍କ ସହିତ ସଦ୍ଭାବ ପ୍ରତିଷ୍ଠା ହୋଇଥିଲା । ତାଙ୍କ ସାହଚର୍ଯ୍ୟରେ

ଆସି ସେ ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ମଧୁସୂଦନ ରାଓ, ଗଙ୍ଗାଧର ମେହେର ଆଦିଙ୍କ କାବ୍ୟ-କବିତା ପାଠ କରିବାରୁ ସାହିତ୍ୟ ପ୍ରତି ମନରେ ଅନୁରାଗ ସୃଷ୍ଟି ହୋଇଥିଲା ।

ସମ୍ବଲପୁରରେ ସବ୍‌ଡେପୁଟି କଲେକ୍ଟରର ଶିକ୍ଷା ନବିସ କର୍ମ ୧୮/୧/୧୯୧୧ରେ ଶେଷ ହେବାପରେ ୧୯୧୧ ମସିହା ଡିସେମ୍ବରରେ ଅନୁଗୁଳକୁ ତୃତୀୟ ଶ୍ରେଣୀ ମାଜିଷ୍ଟ୍ରେଟ୍ କ୍ଷମତାପ୍ରାପ୍ତ ହୋଇ ବଦଳି ହେଲା । ଅନୁଗୁଳକୁ ସେ କଟକ ବାଟ ଦେଇ ଗଲେ । ସେତେବେଳେ ଅନୁଗୁଳରେ ସରକାରୀ ଘରଛଡ଼ା ଆଉ କୌଣସି ଘର ନଥିଲା ଏବଂ ଅନୁଗୁଳ ଟାଉନ୍‌ରେ ନୂଆ ବସତି ଆରମ୍ଭ ହେଉଥାଏ । ଅନ୍ୟ ସମସ୍ତ ଅଫିସରଙ୍କ ନିମିତ୍ତ ଘରଥିଲେହେଁ ତାଙ୍କ ପାଇଁ ଘର ନଥିବାରୁ ସେ ତାଳଚେର ବଙ୍ଗଳାରେ ରହିଲେ । ଏହି ବଙ୍ଗଳାଟି ପାଞ୍ଚମାଣ ପରିମିତ ଜମି ଉପରେ ରହିଥିଲା । ଏଥିରୁ କିଛି ଅଂଶରେ ପରିବା ଏବଂ ଅବଶିଷ୍ଟ ଅଂଶରେ ରାଶି, ବିରି ହରଡ଼ା ପ୍ରଭୃତି ଉତ୍ପନ୍ନ ହୁଏ । ଅନୁଗୁଳରେ ସେତେବେଳେ ବହୁ ହାତୀ ରହିଥିଲେ । ହାତୀ ଧରିବା ଦ୍ୱାରା ସରକାରଙ୍କ ଆୟ ବୃଦ୍ଧି ପାଉଥିଲା ଏବଂ ଲୋକମାନଙ୍କ ଫସଲ ମଧ ସେମାନଙ୍କ ଉପଦ୍ରବରୁ ରକ୍ଷା ପାଉଥିଲା । ହାତୀ ଧରା ସମୟରେ ସ୍ଥାନୀୟ ଅଫିସର ଓ ଡେପୁଟି କମିଶନରଙ୍କ ନିମନ୍ତ୍ରଣରେ ବାହାରୁ କେତେକ ଗୋରା ସାହେବ ଓ ମେମ୍ ଅତିଥି ଭାବରେ ଆସୁଥାନ୍ତି । ଭାରତଚନ୍ଦ୍ର ଅନୁଗୁଳରେ ପହଞ୍ଚିବାର କିଛି ଦିନ ପୂର୍ବରୁ ସେଠାରେ ହାତୀଧରା ହୋଇଥିଲା । ହାତୀଖେଦା ଅଫିସର ବୟେଡ୍ (Boyd) ସାହେବ ଡେପୁଟି କଲେକ୍ଟର ପୀଡ଼ିତ ଥିବାରୁ ଖେଦା କେନ୍ଦ୍ର ପୁରୁଣାକୋଟ ଯାଇ ତାଙ୍କୁ କାର୍ଯ୍ୟଭାର ଗ୍ରହଣ କରିବାକୁ ଡେପୁଟି କମିଶନର ଦାୟିତ୍ୱ ଦେବାରୁ ସେ ସେଠାକୁ ଯାଇଥିଲେ । ଏହି ସ୍ଥାନଟି ମେଲେରିଆଗ୍ରସ୍ତ ଅଞ୍ଚଳ । ବାଘ ଓ ହାତୀଙ୍କ ଉପଦ୍ରବ ଲାଗି ରହିଥାଏ । ବାଘ ଉପଦ୍ରବରେ ସାନକଟରଙ୍ଗ ଓ ବଡ଼କଟରଙ୍ଗ ଦୁଇଟି ଗ୍ରାମ ଜନଶୂନ୍ୟ ହୋଇଯାଇଥିଲା । ନୂଆ ଧରାହାତୀଙ୍କ ଯତ୍ନପାଇଁ ସେ ସେଠାରେ ପନ୍ଦର ଦିନ ରହିଥିଲେ । ଅନୁଗୁଳରେ ସେ ତିନିବର୍ଷ ରହିଥିଲେ ଏବଂ ପ୍ରତିବର୍ଷ ହାତୀ ଧରାବେଳେ ପୁରୁଣାକୋଟ ଯାଉଥିଲେ ଓ ଅସୁସ୍ଥ ହେଉଥିଲେ । ଅନୁଗୁଳରେ ଥିବା ସମୟରେ କେତେକ କ୍ଷେତ୍ରରେ ତାଙ୍କ ଉପର ଅଫିସରଙ୍କ ସହିତ ମନୋମାଳିନ୍ୟ ଘଟିଥିଲା । ୧୯୧୪ ମସିହା ପର୍ଯ୍ୟନ୍ତ ସେ ଅନୁଗୁଳରେ ରହିଥିଲେ । ତାଙ୍କ ପତ୍ନୀଙ୍କ ସ୍ୱାସ୍ଥ୍ୟ ଖରାପ ହେବାରୁ ତିନିମାସ ଛୁଟିନେଇ ୧୯୧୪ ମସିହା ସେପ୍ଟେମ୍ବର ମାସ ୨୩ ତାରିଖରେ ସପରିବାର ଅନୁଗୁଳ ତ୍ୟାଗ କରିଥିଲେ ।

ଛୁଟିପରେ ୧୯୧୫ ମସିହା ଜାନୁଆରୀ ମାସରେ ସେ ବାଲେଶ୍ୱରରେ ଯୋଗଦାନ କଲେ । ଅନୁଗୁଳରେ ଥିବା ସମୟରେ ଓଡ଼ିଶା ବିଭାଗର କମିଶନର ଫିଶାର ସାହେବ ସେଠାକୁ ଯାଇ ତାଙ୍କ କାର୍ଯ୍ୟ ଯାଞ୍ଚ କରିଥିଲେ ଏବଂ ତାଙ୍କ ନାମରେ ସେତେବେଳେ ଆସିଥିବା ଅଭିଯୋଗର ତଦାରଖ କରି ଅନୁଗୁଳ କେସ୍ ପାଇଁ ସବ୍ ଡିଭିଜନ ଅଫିସର ଓ ଡେପୁଟି

କମିଶନରଙ୍କ ରିପୋର୍ଟ ଉପରେ ତାଙ୍କର୍ ଭବିଷ୍ୟତ ଉନ୍ନତି ପାଞ୍ଚ ବର୍ଷ ପର୍ଯ୍ୟନ୍ତ ବନ୍ଦ ରଖିବା ପାଇଁ ସରକାରଙ୍କୁ ସୁପାରିଶ କରିଛନ୍ତି ବୋଲି ଭାରତଚନ୍ଦ୍ରଙ୍କୁ ବାଲେଶ୍ୱରରେ ଜଣାଇଥିଲେ । ଅନୁଗୁଳରେ ଥିବା ସମୟରେ ତାଙ୍କ ସମ୍ପର୍କରେ ଆସିଥିବା ଅଭିଯୋଗର ସେ ଯେଉଁ କୈଫୟତ୍ ପ୍ରସ୍ତୁତ କରିଥିଲେ, ତା'ର କିତାଏ ଗଭର୍ଣମେଣ୍ଟଙ୍କୁ ଓ ଆଉ କିତାଏ କମିଶନରଙ୍କ ମାଧ୍ୟମରେ ପଠାଇଥିଲେ । ଲେଫ୍‌ଟନାଣ୍ଟ ଗଭର୍ଣର ସାର୍ ଏଡ୍‌ୱ୍ୟାର୍ଡ଼ ଗେଟ୍ ଅନୁଗୁଳ ଡେପୁଟି କମିଶନର ଓ ଓଡ଼ିଶା ବିଭାଗର କମିଶନରଙ୍କ ମନ୍ତବ୍ୟକୁ ଅଗ୍ରାହ୍ୟ କରି ତାଙ୍କୁ ନିର୍ଦ୍ଦୋଶ ସାବ୍ୟସ୍ତ କରିଥିଲେ ।

୧୯୧୫ ମସିହା ମଧ୍ୟଭାଗ ବେଳକୁ ବାଲେଶ୍ୱର ନିକଟବର୍ତ୍ତୀ ସମୁଦ୍ର ଉପକୂଳର କେତେକ ଅଞ୍ଚଳରେ ଅପବୃଷ୍ଟି ଯୋଗୁଁ ଦୁର୍ଭିକ୍ଷ ପଡ଼ିଥିଲା । ତତ୍କାଳୀନ କଲେକ୍ଟର କିଲ୍‌ବି ସାହେବ ତାଙ୍କୁ ଘଟଣାର ତଦନ୍ତ ନିମିତ୍ତ ପଠାଇଥିଲେ । ସେ ସରଜମିନ୍ ତଦନ୍ତକରି ଘଟଣା ସତ୍ୟବୋଲି ଜଣାଇବାରୁ କଲେକ୍ଟର ନିଜେ ପ୍ରକୃତ ଅବସ୍ଥା ହୃଦୟଙ୍ଗମ କରି ବେଶ୍ ଦୁଃଖିତ ହୋଇଥିଲେ । ଏକ ସପ୍ତାହ ପରେ ଓଡ଼ିଶା ବିଭାଗ କମିଶନର ଗ୍ରୁନିଂ ସାହେବ ବାଲେଶ୍ୱର ଆସିଥିଲେ, ମାତ୍ର ଦୁର୍ଭିକ୍ଷ ବିଷୟ ସ୍ୱୀକାର କରି ନଥିଲେ । ଭାରତଚନ୍ଦ୍ର ଓ କଲେକ୍ଟରଙ୍କ ସହାୟତାରେ ସ୍ୱଚ୍ଛଳ ଲୋକମାନଙ୍କ ଠାରୁ ଅର୍ଥ ସଂଗ୍ରହ କରାଯାଇ ଅନାହାର କ୍ଲିଷ୍ଟଙ୍କୁ ସାହାଯ୍ୟ କରିଥିଲେ । କଲେକ୍ଟର ନିଜେ ଏକ ସହସ୍ର ଟଙ୍କା ଦେବା ସହିତ ଅନ୍ନଶାଳାର ଆବଶ୍ୟକତା ଦୂର ନହେବାଯାଏ ନିଜ ହାତରୁ ପ୍ରତିମାସରେ ପାଞ୍ଚଶତ ଟଙ୍କା ଦେବେବୋଲି ପ୍ରତିଶ୍ରୁତି ଦେଇଥିଲେ । ଭାରତଚନ୍ଦ୍ର ବାଲେଶ୍ୱରରେ ମାତ୍ର ଦଶମାସ ରହିଥିଲେ ହେଁ, ସେଠାରେ ତାଙ୍କର କାର୍ଯ୍ୟକାଳ ବିଶେଷ କରି ଦୁର୍ଭିକ୍ଷ ସମୟରେ ତାଙ୍କର ଲୋକ ହିତକର ପଦକ୍ଷେପ ଅତ୍ୟନ୍ତ ପ୍ରଶଂସନୀୟ ଥିଲା ।

୧୯୧୫ ମସିହା ପୂଜାପରେ ସେ ଉତ୍ତର ବିହାରକୁ ବନ୍ଦୋବସ୍ତ କାର୍ଯ୍ୟରେ ବଦଳି ହୋଇଥିଲେ । ସହକାରୀ ବନ୍ଦୋବସ୍ତ ଅଫିସର ରୂପେ ସେ ହଥୁଆ ରାଜ୍ୟର ଜମିଦାରୀକୁ ଯାଇଥିଲେ । ସେତେବେଳେ ବିହାରରେ ଚିରସ୍ଥାୟୀ ବନ୍ଦୋବସ୍ତ ଜାରି ରହିଥିଲା । ସେଠାକାର ଜମି ଉର୍ବର ଏବଂ ବିହାରୀମାନେ ଖୁବ୍ ପରିଶ୍ରମୀ । ଆୟ ତୁଳନାରେ ସେମାନଙ୍କର ବ୍ୟୟ କମ୍ । ବାରମାସ ପ୍ରଚୁର ଫସଲ ହୋଇଥାଏ । ସମସ୍ତେ ନିଜ ଜମିରେ ବାଉଁଶ ଚାଷ କରିଥାନ୍ତି । ସେଥିରେ ସେ ନିଜର ଗୃହ ନିର୍ମାଣ କରିଥାନ୍ତି ଓ ବଳକା ବାଉଁଶ ବିକ୍ରୟ କରି ଅର୍ଥ ଉପାର୍ଜନ କରିଥାନ୍ତି । ନଦୀରେ ବଡ଼ ବଡ଼ ସହରକୁ ବାଉଁଶ ରପ୍ତାନି ହୁଏ । ବେଳେବେଳେ ପ୍ଲେଗ୍ ରୋଗ ଯୋଗୁଁ ଅସଂଖ୍ୟ ବ୍ୟକ୍ତି ପ୍ରାଣ ହରାଉଥିଲେ । ବିହାରର ବ୍ରାହ୍ମଣ ଓ କାୟସ୍ଥମାନେ ଥିଲେ ମୁଖ୍ୟତଃ ଶିକ୍ଷିତ । ନିମ୍ନ ଜାତୀୟ ସାଧାରଣ ଲୋକଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ବିଶେଷ ନଥିଲା । ଭୂମିହାରମାନେ ସାଧାରଣତଃ 'ବାଭନ' ନାମରେ ପରିଚିତ । ରାଜା ଏବଂ ପ୍ରଜାଙ୍କ ମଧ୍ୟରେ ସୁସମ୍ପର୍କ ରହିଥିଲା । ବିହାରର ଅଶିକ୍ଷିତ ପ୍ରଜା ମଧ୍ୟ ନିଜର ହକ୍ ବୁଝୁଥିଲା । ବଙ୍ଗ

ପ୍ରଜାସ୍ୱତ୍ୱ ଆଇନ୍ ଅନୁଯାୟୀ ପ୍ରଜାଗଣ ନିଜ ନିଜ ହକ୍ ସାବ୍ୟସ୍ତ କରୁଥିଲେ । ୧୯୧୬ ମସିହା ଏପ୍ରିଲ ମାସରେ କେତେମାସ ନିମିତ୍ତ ବନ୍ଦୋବସ୍ତ କାର୍ଯ୍ୟ ବନ୍ଦ ରହିବାରୁ ଭାରତଚନ୍ଦ୍ରଙ୍କୁ ୬/୭ ମାସ ରାଞ୍ଚିରେ ଅବସ୍ଥାପିତ କରାଯାଇଥିଲା । ରାଞ୍ଚି ସେତେବେଳେ ଥିଲା ବିହାର-ଓଡ଼ିଶା ସରକାରଙ୍କ ଗ୍ରୀଷ୍ମକାଳୀନ ରାଜଧାନୀ । ବନ୍ଦୋବସ୍ତ କାର୍ଯ୍ୟ ସମାପ୍ତ ହେବାପରେ ୧୯୧୭ ସାଲ ସେପ୍ଟେମ୍ବର ମାସରେ ତାଙ୍କୁ ସରକାର ଛୋଟ ନାଗପୁର ଅନ୍ତର୍ଗତ ମାନଭୂମ ଜିଲ୍ଲାର ସଦର ମହାକୁମା ପୁରୁଲିଆରେ ଅବସ୍ଥାପିତ କରିଥିଲେ ।

୧୯୧୮ ମସିହା ଜୁଲାଇ ମାସରେ ଭାରତଚନ୍ଦ୍ର ମାନଭୂମରୁ ବଦଳି ହୋଇ ସମ୍ବଲପୁରର ବରଗଡ଼କୁ ବଦଳି ହୋଇ ଆସିଲେ । ସେତେବେଳେ ବରଗଡ଼ରେ ତାଙ୍କ ଧର୍ମପିତା ଶ୍ରୀ ବାଲୁଙ୍କେଶ୍ୱର ମିଶ୍ର ଜଣେ ମାତ୍ର ଓଡ଼ିଆ ଓକିଲ ଥିଲେ । ହେମଚନ୍ଦ୍ର ଚକ୍ରବର୍ତ୍ତୀ, ଅଘୋରନାଥ ପଣ୍ଡିତ, ମହେନ୍ଦ୍ରନାଥ ଚକ୍ରବର୍ତ୍ତୀ ଆଦି ଥିଲେ ବଙ୍ଗାଳୀ ଓକିଲ । ଭାରତଚନ୍ଦ୍ର ସେକେଣ୍ଡ ଅଫିସର ଭାବରେ ବରଗଡ଼କୁ ଆସିଥିଲେ । ବଙ୍ଗାଳୀ ଓକିଲମାନେ ବାଲୁଙ୍କେଶ୍ୱର ମିଶ୍ରଙ୍କ ନିଜ ଲୋକ ସେକେଣ୍ଡ ଅଫିସର ହୋଇଥିବାରୁ ଉପଯୁକ୍ତ ନ୍ୟାୟ ମିଳିବାର ସମ୍ଭାବନା ନାହିଁ ବୋଲି ଅଭିଯୋଗ କରିଥିଲେ । ତେଣୁ ସେ ଡେପୁଟି କମିଶନରଙ୍କୁ କହିଥିଲେ ଯଦି ମୋ ସମ୍ପର୍କରେ ବଙ୍ଗାଳୀ ଓକିଲମାନେ ଏପରି ଅଭିଯୋଗ ଆଣୁଛନ୍ତି, ତେବେ ଅନ୍ୟସ୍ଥାନକୁ ମତେ ବଦଳି କରିଦିଆଯାଉ । ଅଥଚ ତାଙ୍କର ସ୍ୱାଭାବିକ ବଦଳି ସମୟରେ ଯେଉଁ ଓକିଲମାନେ ଅତୀତରେ ତାଙ୍କ ବିରୋଧରେ ଅଭିଯୋଗ ଆଣିଥିଲେ, ସେହିମାନେ ହିଁ ତାଙ୍କୁ ବିଶେଷ ଭାବରେ ପ୍ରଶଂସା କରିଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧ ଅବସାନ ଉପଲକ୍ଷେ ବରଗଡ଼ରେ ଉତ୍ସବ ଅନୁଷ୍ଠିତ ହେଉଥିବା ସମୟରେ ହଠାତ୍ ଓଡ଼ିଶା ଗଡ଼ଜାତ ସମୂହର ପଲିଟିକାଲ ଏଜେଣ୍ଟ କବ୍‌ଡ଼େନ ରାମ୍‌ସେ ସାହେବଙ୍କ ନିକଟରୁ ଗୋଟିଏ ପତ୍ର ପାଇ ତାଙ୍କ ସହିତ ସାକ୍ଷାତ କରିବାରୁ ସେ କହିଲେ ସରକାରୀ ଚାକିରିରେ ତାଙ୍କର ପାଞ୍ଚବର୍ଷ ପୂରଣ ହୋଇ ଯାଇଥିବାରୁ ତାଙ୍କୁ ଢେଙ୍କାନାଳରେ ସହକାରୀ ସୁପରିଣ୍ଟେଣ୍ଡେଣ୍ଟ ରୂପେ ଯୋଗ ଦେବାକୁ ହେବ । ତାଙ୍କ ପ୍ରସ୍ତାବରେ ଭାରତଚନ୍ଦ୍ର ରାଜି ହୋଇ ୧୯୧୯ ମସିହା ଅଗଷ୍ଟ ମାସରେ ସରକାରଙ୍କ ହୁକୁମନାମା ଅନୁସାରେ ସେ ସେହି ମାସ ୨୩ ତାରିଖରେ ମଢ଼ି ସବ-ଡିଭିଜନ (ବର୍ତ୍ତମାନର କାମାକ୍ଷ ନଗର)ରେ ସହକାରୀ ସୁପରିଣ୍ଟେଡେଣ୍ଟ ପଦରେ ଯୋଗଦେଲେ । ସେତେବେଳେ ଢେଙ୍କାନାଳ ରାଜା ସୁରପ୍ରତାପ ମହେନ୍ଦ୍ର ବାହାଦୁର ମାତ୍ର ୩୨ ବର୍ଷ ବୟସରେ ୧୯୧୯ ମସିହାରେ ଇନ୍‌ଫ୍ଲୁଏଞ୍ଜା ରୋଗରେ ମୃତ୍ୟୁବରଣ କରିଥିଲେ । ତାଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀ ଶଙ୍କର ପ୍ରତାପ ମହେନ୍ଦ୍ର ବାହାଦୁର ନାବାଳକ ଥିବାରୁ ଷ୍ଟେଟ୍ ସରକାରଙ୍କ ତତ୍ତ୍ୱାବଧାନରେ ରହିଲା । ରାଜାଙ୍କ ସମୟର ଦେୱାନ ରାଜକିଶୋର ତ୍ରିପାଠୀ ବିହାର-ଓଡ଼ିଶା ସରକାରଙ୍କ ଦ୍ୱାରା ସୁପରିଣ୍ଟେଣ୍ଡେଣ୍ଟ ପଦରେ ନିଯୁକ୍ତି

ଲାଭ କରି ଶାସନକାର୍ଯ୍ୟ ପରିଚାଳନା କଲେ । ବାଲେଶ୍ୱରର ପାର୍ବତୀ ଚରଣ ଦାସ, ଢେଙ୍କାନାଳର ଚନ୍ଦ୍ରଶେଖର ପାଣି ଓ କଲିକତା ନିବାସୀ ପ୍ରଫୁଲ୍ଲ କୁମାର ସରକାର ରାଜାଙ୍କ ଅମଳରେ ସରକାରୀ ଦେଓ୍ୱାନ ଥିଲେ । ଏମାନେ ସହକାରୀ ସୁପରିଣ୍ଟେଡେଣ୍ଟ ରୂପେ ନିଯୁକ୍ତି ପାଇଥିଲେ ।

ଭାରତଚନ୍ଦ୍ର ଢେଙ୍କାନାଳରେ ଯୋଗ ଦେବା ପୂର୍ବରୁ ୧୯୧୯ ମସିହା ପ୍ରାରମ୍ଭରେ ଦୁର୍ଭିକ୍ଷଦ୍ୱାରା ରାଜ୍ୟର ଅବସ୍ଥା ଶୋଚନୀୟ ହୋଇପଡ଼ିଥିଲା । ଷ୍ଟେଟ୍ ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କୁ ଯେଉଁ ସାହାଯ୍ୟ ଦେଉଥିଲେ ଭାରତଚନ୍ଦ୍ର ଯିବାବେଳକୁ ତାହା ବନ୍ଦ ହୋଇଯାଇଥିଲା । ଭାରତଚନ୍ଦ୍ର ବିଭିନ୍ନ ଉପାୟରେ ଲୋକଙ୍କ ଆର୍ଥିକ ଅବସ୍ଥାରେ ସୁଧାର ଆଣିଥିଲେ । ପୁଣି ୧୯୨୦ ମସିହାରେ ସେଠାରେ ପ୍ରବଳ ବନ୍ୟାଦ୍ୱାରା ଭୀଷଣ କ୍ଷୟକ୍ଷତି ହୋଇଥିଲା । ସେହି ସମୟରେ ପ୍ରତି ଷ୍ଟେଟ୍‌ରେ ଜଣେ ଲେଖା କଲ୍ଲି ଠିକାଦାର ରହିଥିଲେ ଓ ସେଥିରୁ ପ୍ରବଳ ଲାଭ ପାଉଥିଲେ । ସେମାନଙ୍କୁ ଭାରତଚନ୍ଦ୍ର ବନ୍ୟା କ୍ଷତିଗ୍ରସ୍ତଅଞ୍ଚଳକୁ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲେ । ତତ୍‌କାଳୀନ ପଲିଟିକାଲ ଏଜେଣ୍ଟ ରାମ୍‌ସେ ସାହେବ ଅର୍ଥଦାନ କରିବାକୁ କୁଣ୍ଠିତ ହୋଇଥିଲେ । ଅଥଚ ଠିକାଦାର ପୋପାଟଲାଲଙ୍କ ଅନୁରୋଧ କ୍ରମେ ସେ ସଡ଼କର କାମ ସକାଶେ ଶହେଫୁଟ ମାଟିର ମୂଲ୍ୟ ଆଠଅଣାରୁ ଅଢ଼େଇ ଟଙ୍କା ବୃଦ୍ଧି କରିଥିଲେ । ଏହାଦ୍ୱାରା ଅଯଥାରେ ଅନେକ ଷ୍ଟେଟ୍ ଟଙ୍କା ଠିକାଦାରଙ୍କ ପକେଟକୁ ଯାଇଥିଲା । ବନ୍ୟାର କ୍ଷୟକ୍ଷତି ଆକଳନ କରି ଅନୁଗୁଳର ଡେପୁଟି କମିଶନର ଚକ୍ରଭେନ୍ ସାହେବଙ୍କୁ ଚିଠି ଦେବାରୁ ସେ ଆସି ବନ୍ୟାକ୍ଲିଷ୍ଟ ଲୋକଙ୍କ ଦୁଃଖ ଦେଖି ଗଭୀର ବ୍ୟଥା ପାଇଥିଲେ । ଅଳ୍ପଦିନ ପରେ ପଲିଟିକାଲ ଏଜେଣ୍ଟ ରାମ୍‌ସେ ସାହେବ ଆସି ଭାରତଚନ୍ଦ୍ର ପ୍ରସ୍ତୁତ କରିଥିବା ବନ୍ୟା ରିପୋର୍ଟକୁ ଅତିରଞ୍ଜିତ କହି ତିରସ୍କାର କରିଥିଲେ । ନଦୀକୂଳ ଜମି ଉପରେ ବାଲି ଚରିଯାଇଥିଲେ ହେଁ ତା' ଉପରେ ସେ ଗୁରୁତ୍ୱ ଦେଇ ନଥିଲେ । ଲୋକମାନଙ୍କ ଦୁଃଖ ପ୍ରତି ତାଙ୍କର ତିଳେମାତ୍ର ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ନ ଥିଲା । ଏହା ସତ୍ତ୍ୱେ ଲୋକମାନଙ୍କର ମଙ୍ଗଳ ନିମିତ୍ତ ତାଙ୍କ ଦ୍ୱାରା ଯାହା ସମ୍ଭବ, ସମସ୍ତ ବିରୋଧ ସତ୍ତ୍ୱେ ସେ ତାହା କରି ଜନସାଧାରଣଙ୍କ ପ୍ରିୟଭାଜନ ହୋଇପାରିଥିଲେ ।

୧୯୨୧ ମସିହା ଅଗଷ୍ଟ ବେଳକୁ ତାଙ୍କୁ ଢେଙ୍କାନାଳରୁ ପୁନରାୟ ଅନୁଗୁଳ ବଦଳି କରାଯାଇଥିଲା ଓ ସେ ଦ୍ୱିତୀୟବାର ସେଠାରେ କାର୍ଯ୍ୟଭାର ଗ୍ରହଣ କଲେ । ପ୍ରଥମ ଥର ଅନୁଗୁଳରେ କାର୍ଯ୍ୟ ସମୟରେ ସେ ଯାହା ଦେଖିଥିଲେ, ତା'ର ସାତବର୍ଷ ପରେ ପୁନରାୟ ସେଠାକୁ ଯାଇ ଅନୁଭବ କଲେ ଶାସନ ପ୍ରଣାଳୀରେ କୌଣସି ପରିବର୍ତ୍ତନ ହୋଇନଥିଲା । ସେତେବେଳେ ନିୟମାନୁସାରେ ଡେପୁଟି କମିଶନର ଇଚ୍ଛାକଲେ, ସେଠାରେ ଯେଉଁମାନେ ଚାକିରି କରିଥାନ୍ତି ସେମାନେ ରହୁଥିବା ଘରବାଡ଼ି ଓ ଜମିର ଚିରସ୍ଥାୟୀ ପଟ୍ଟା କରି

ଦେଇପାରୁଥିଲେ । ଏହାର ସୁଯୋଗରେ କିଛି ବଙ୍ଗାଳୀ ଓ ମାରୱାଡ଼ି ଅନୁଗୁଳ ବଜାର ଏବଂ ମଫସଲରେ ଘରବାଡ଼ି, ଚାଷଜମିକୁ ନିଜର କରି ନେଇଥିଲେ । ଶ୍ରୀ ଗିରିଜା ଭୂଷଣ ଦତ୍ତ ନାମରେ ଜଣେ ବଙ୍ଗାଳୀ ଏଠାକାର ଚିରସ୍ଥାୟୀ ବାସିନ୍ଦା ହୋଇ ୧୯୩୭ ସାଧାରଣ ନିର୍ବାଚନରେ ଅନୁଗୁଳରୁ ଓଡ଼ିଶା ବିଧାନସଭାର ସଦସ୍ୟ ହୋଇଥିଲେ । ସେ ପର୍ଯ୍ୟନ୍ତ ଅନୁଗୁଳରେ ପ୍ରତିବର୍ଷ ହାତୀ ଖେଦାହୋଇ ହାତୀ ଧରାଯାଇ ବିକ୍ରୟ କରାଯାଉଥିଲା । ଠିକ୍ ସେହି ସମୟରେ ତାଳଚେରଠାରେ କୋଇଲା ଖଣି ଆବିଷ୍କୃତ ହୋଇଥିଲା । କଟକରୁ ତାଳଚେର ପର୍ଯ୍ୟନ୍ତ ରେଳ ଚାଲିବା ସକାଶେ ପ୍ରାଥମିକ କାର୍ଯ୍ୟାରମ୍ଭ ହୋଇଥାଏ ।

ଭାରତଚନ୍ଦ୍ର ଅନୁଗୁଳରେ ଅଳ୍ପ କିଛିଦିନ କାମ କରିବା ପରେ ପୁଣି ତାଙ୍କୁ ବଣେଇ ଯିବାକୁ ବାଧ କରାଯାଇଥିଲା ଯଦିଓ ସେ ପୂର୍ବରୁ ବିଭିନ୍ନ ଗଡ଼ଜାତ ଅଞ୍ଚଳରେ ଦୀର୍ଘଦିନ ଧରି କାର୍ଯ୍ୟ କରିସାରିଥିଲେ । ନିଜର ବିଭିନ୍ନ ଅସୁବିଧା ସମ୍ପର୍କରେ କର୍ତ୍ତୃପକ୍ଷଙ୍କୁ ଜଣାଇଥିଲେ ହେଁ ତାଙ୍କ କଥା କେହି ଶୁଣି ନଥିଲେ, ଯଦିଓ ପୂର୍ବରୁ ଆଉ କେତେଜଣ ସବ-ଡେପୁଟିଙ୍କୁ ସେହି କାର୍ଯ୍ୟ ଯଚା ଯାଇଥିଲେ ହେଁ ସେମାନେ ଯାଇନଥିଲେ । ବଣେଇରେ ପହଞ୍ଚିବା ମାତ୍ରେ ସରକାରଙ୍କ ନିର୍ଦ୍ଦେଶ ମତେ ରାଜା ସାହେବ ସନନ୍ଦ ଲେଖି ଦେଇଥିଲେ । ଷ୍ଟେଟ୍ ଶାସନ ବିଷୟକ ସମସ୍ତ କ୍ଷମତା ତାଙ୍କୁ ହସ୍ତାନ୍ତର କରାଯାଇଥିଲା । କେବଳ ଦେୱାନି ଓ ଫୌଜଦାରୀ ମକଦ୍ଦମାରେ ଦେୱାନଙ୍କ ରାୟ ବିରୋଧରେ ଅପିଲ କରିବାର କ୍ଷମତା ରହିଥିଲେ ହେଁ ତାହା ସୀମାବଦ୍ଧ ରହିଥିଲା । ସରକାରଙ୍କ ନିର୍ଦ୍ଦେଶ ଥିଲା, ରାଜା ଦେବାନଙ୍କର କୌଣସି ରାୟ ରଦ୍ଦ କରିପାରିବେ ନାହିଁ; ମାତ୍ର ଯେଉଁ ରାୟ ରଦ୍ଦ କରିବାକୁ ସେ ଚାହିଁବେ ତାହା ସେ ପଲିଟିକାଲ ଏଜେଣ୍ଟଙ୍କୁ ଜଣାଇବେ ଏବଂ ତାଙ୍କ ମତାନୁସାରେ କାର୍ଯ୍ୟ ହେବ ।

ଇଂରେଜ ସରକାର ରାଜାଙ୍କର ସମସ୍ତ କ୍ଷମତା ସରକାରୀ କର୍ମଚାରୀଙ୍କ ହସ୍ତରେ ନ୍ୟସ୍ତ କରିଥିବାରୁ ରାଜା ବେଶ୍ କ୍ଷୁବ୍ଧ ହୋଇ ରହିଥାନ୍ତି । ଏଥିପାଇଁ ସରକାରଙ୍କ ଦ୍ୱାରା ପଠାଯାଇଥିବା ଦେୱାନଙ୍କ ସହିତ ତାଙ୍କର ବାରମ୍ବାର ମତାନ୍ତର ଓ ମନାନ୍ତର ହେଉଥିବାରୁ କୌଣସି ଦେୱାନ ସେଠାରେ ୨/୩ ବର୍ଷରୁ ଅଧିକ ସମୟ ରହିପାରନ୍ତି ନାହିଁ । ରାଜା ମଧ୍ୟ ଚାହୁଁଥାନ୍ତି ସରକାରଙ୍କ ଶାସନ ବ୍ୟବସ୍ଥା ଓ ଯୋଜନା ସବୁକୁ ବିଫଳ କରିବାକୁ । ଏ ସମ୍ପର୍କରେ ଭାରତଚନ୍ଦ୍ର ତାଙ୍କ ଆତ୍ମ ଜୀବନରେ ଲେଖିଛନ୍ତି- "ସରକାରଙ୍କ ଶାସନ ଅର୍ଥ ଦେୱାନ ଶାସନ । ଦେୱାନଙ୍କୁ ବଦନାମ କରିପାରିଲେ ସରକାରଙ୍କ ଶାସନ ଦୁର୍ନାମ ସଂସାରରେ ସାବ୍ୟସ୍ତ ହେବ । ଏହାହିଁ ରାଜାଙ୍କ ଏକମାତ୍ର ଲକ୍ଷ୍ୟ ହୋଇଥାଏ । ଏହି ଦୋସନ୍ଧି ମଧ୍ୟରେ ଚାକରମାତ୍ର ଦେୱାନର ଜୀବନ ଡହଳ ବିକଳ ହେଉଥାଏ । ଏକ ଦିଗରେ ରାଜ୍ୟର ପ୍ରଜାମାନଙ୍କୁ ଓ ଅପର ଦିଗରେ ସରକାରଙ୍କୁ ତୁଷ୍ଟ କରି ରଖିବା କଷ୍ଟକର ହୋଇଉଠେ ।" (ପୃ-୧୪୩) ଭାରତଚନ୍ଦ୍ରଙ୍କ ସହିତ ରାଜାଙ୍କର ସମ୍ପର୍କ ଭଲ ଥିଲେହେଁ, କ୍ଷମତା ପ୍ରାପ୍ତି ପାଇଁ ତାଙ୍କୁ ହଇରାଣ କରିବାକୁ

ହେବ ବୋଲି ରାଜା କହନ୍ତି । ଭାରତଚନ୍ଦ୍ର ଅନୁଭବ କରିଥିଲେ, ଯେଉଁ ରାଜ କର୍ମଚାରୀମାନେ ସେଠାରେ ନିଯୁକ୍ତି ପାଉଥିଲେ, ସେମାନେ ରାଜାଙ୍କୁ ଉପଯୁକ୍ତ ପରାମର୍ଶ ଦେଇପାରୁନଥିଲେ । ତେଣୁ ସେ ରାଜାଙ୍କ ଉପଦେଶ ପ୍ରତି ଗୁରୁତ୍ୱ ଦେଇ କାର୍ଯ୍ୟ କରିବାକୁ ଲାଗିଲେ । ଶିକ୍ଷାର ବିକାଶ ପାଇଁ ଗୁରୁତ୍ୱ ଦେଲେ । ଅଭିଭାବକଙ୍କୁ ବୁଝାଇ ତାଙ୍କ ପିଲାଙ୍କୁ ସ୍କୁଲକୁ ଆଣିବାର ବ୍ୟବସ୍ଥା କଲେ । କୁକୁଡ଼ା ଲଢ଼େଇ ପରି ଜୁଆ ଖେଳକୁ ସେ ବନ୍ଦ କରିଦେଲେ । ଧୀରେ ଧୀରେ ଦେଖାଗଲା କର୍ମଚାରୀମାନେ ରାଜାଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରୁଥିବାରୁ କାର୍ଯ୍ୟ କ୍ଷେତ୍ରରେ ବିଶୃଙ୍ଖଳା ବୃଦ୍ଧି ପାଇଲା । ଫରେଷ୍ଟ ଅଫିସର ଭାରତଚନ୍ଦ୍ରଙ୍କ ବିରୋଧରେ ମିଥ୍ୟା ଅଭିଯୋଗ ପଲିଟିକାଲ ଏଜେଣ୍ଟଙ୍କ ନିକଟରେ କରି କହିଲେ ଯେ, ସେ ଜଙ୍ଗଲର ମୂଲ୍ୟବାନ୍ ଗଛସବୁ କାଟି ତାଙ୍କ ସମ୍ବଲପୁର ନୂଆ ଘରରେ ଲଗାଇବାକୁ ପଠାଇଛନ୍ତି । ତାଙ୍କ ଅତ୍ୟାଚାରରେ ବଣେଇ ଲୋକ ଘର ଛାଡ଼ି ପଳାଉଛନ୍ତି । ରାଜାଙ୍କ ସହିତ ଅନ୍ୟାନ୍ୟ ସରକାରୀ କର୍ମଚାରୀ, ବିଶେଷକରି ପୋଲିସ୍ ଇନିସ୍‌ପେକ୍ଟର ୧୯୨୬ ମସିହା ଜୁଲାଇ- ଅଗଷ୍ଟ ମାସ ମଧ୍ୟରେ ଆସିଥିବା ପଲିଟିକାଲ ଏଜେଣ୍ଟଙ୍କ ପରିଦର୍ଶନ ସମୟରେ ଚକ୍ରାନ୍ତ କରି ତାଙ୍କ ବିରୋଧରେ ଅଭିଯୋଗ କରିବାକୁ ପ୍ରସ୍ତୁତ ରହିଥିଲେ । ଅଭିଯୋଗ ହେଲେ ଡେପୁଟିଙ୍କୁ ପ୍ରମୋସନ ନହେଲେ ଭବିଷ୍ୟତରେ ହେବାର ମଧ୍ୟ ସମ୍ଭାବନା ନାହିଁ । ସେ ଭଗବାନଙ୍କ ଉପରେ ଭରସା ରଖି ନିଜ ଦପ୍ତର ସଜାଡ଼ିବାକୁ ଲାଗିଲେ । ରାଜାଙ୍କର ତାଙ୍କ ପ୍ରତି ବ୍ୟବହାର ଦୟାପୂର୍ଣ୍ଣ ଥିଲେହେଁ ସବ-ଡେପୁଟିଙ୍କ ବିରୋଧରେ ଅଭିଯୋଗ ଆସିଲେ ସେ ପୁଣି କ୍ଷମତାସୀନ ହେବେ ବୋଲି ତାଙ୍କର ବିଶ୍ୱାସ ରହିଥିଲା । ପଲିଟିକାଲ ଏଜେଣ୍ଟ ଆସିବା ପୂର୍ବରୁ ସେ ରାଜାଙ୍କ ସହିତ ସାକ୍ଷାତ୍ କରିବାକୁ ଯାଇଥିବା ସମୟରେ ରାଜା ତାଙ୍କୁ କହିଥିଲେ- "ଭାରତ ବାବୁ ! ଆପଣ କିପରି ମନ୍ତ୍ରୀ ଏଥର ଦେଖାଯିବ । ଏଥର ଆପଣଙ୍କୁ ବିଷମ ସମସ୍ୟାର ସମ୍ମୁଖୀନ ହେବାକୁ ହେବ ।" (ପୃ-୧୫୨) ସେ ପ୍ରକୃତ ସମ୍ବାଦ ସଂଗ୍ରହ ନିମିତ୍ତ ରାଜାଙ୍କର ଜଣେ ଲୋକକୁ ଆୟତ୍ତ କରି ଜାଣିଲେ ରାଜବାଟିରେ ସମବେତ ଲୋକଙ୍କ ସହିତ ତାଙ୍କ ଶାସନ ସମ୍ବନ୍ଧରେ ଆଲୋଚନା ହେଉଛି । ସେ ନିଜେ କାବୁଲି ବାଲା ପୁତୁରା ବେଶରେ ଯାଇ ତଥ୍ୟ ସଂଗ୍ରହ କରିଥିଲେ । ପ୍ରଜାମାନେ ରାଜାଙ୍କର ବିଶ୍ୱସ୍ତ ଥିବାରୁ ସତ୍ୟ-ମିଥ୍ୟା ଜାଣିବା ପରବର୍ତ୍ତେ ତାଙ୍କ ପରାମର୍ଶରେ ସେମାନେ ପଲିଟିକାଲ ଏଜେଣ୍ଟ ଫିଲିପ୍ ସାହେବଙ୍କୁ ତାଙ୍କ ବିରୋଧରେ ଅଭିଯୋଗ କରିବାକୁ ଯାଇଥିଲେ ବୋଲି ବାସ୍ତବ ସତ୍ୟଟି ପଲିଟିକାଲ ଏଜେଣ୍ଟଙ୍କୁ ଜଣାଇଦେବାରୁ ସେ ତାଙ୍କ ଉପରେ ଖୁସିହେବା ସହିତ ତାଙ୍କୁ ଡେପୁଟି ପଦକୁ ଉନ୍ନତି ପାଇଁ ସୁପାରିସ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ରାଜାଙ୍କର ଯୋଜନା ପଣ୍ଡ ହେବାରୁ ସେ ଅପମାନିତ ବୋଧକରି ଲୋକମାନଙ୍କୁ ତାଙ୍କ ବିରୋଧରେ ଉତ୍ତେଜିତ କରିଥିଲେ । ପୋଲିସ୍ ଅଫିସର ମଧ୍ୟ ଈର୍ଷାନ୍ୱିତ ହୋଇ ରାଜାଙ୍କ ପରାମର୍ଶ କ୍ରମେ ତାଙ୍କର ବିରୋଧାଚରଣ କରିବାରୁ ସେ ବାଧ୍ୟହୋଇ ତାଙ୍କ

ବିରୋଧରେ ଯୋଜନା ପ୍ରସ୍ତୁତ କରି ବରଖାସ୍ତ କରିବା ସହିତ ୨୪ ଘଣ୍ଟା ମଧ୍ୟରେ ବଣେଇରୁ ବିଦା କରିଥିଲେ । ତତ୍ପରେ ସମସ୍ତ କାର୍ଯ୍ୟ ଶୃଙ୍ଖଳିତ ଭାବରେ ଚାଲିଲା ।

୧୯୨୬ ମସିହା ଡିସେମ୍ବର ମାସରେ ସେ ଡେପୁଟି କଲେକ୍ଟର ପଦକୁ ଉନ୍ନୀତ ହୋଇଥିଲେ । ବଣେଇରୁ ଆସି ଛୁଟିରେ ଥିବାବେଳେ ସେ ପଲିଟକାଲ ଏଜେଣ୍ଟ ଦପ୍ତରରୁ ଚିଠି ପାଇଥିଲେ, ଯେଉଁଥିରେ ବିହାର-ଓଡ଼ିଶା ଗଭର୍ଣ୍ଣରଙ୍କ ହୁକୁମ ଥିଲା । ଛୁଟି ଶେଷରେ ପୁଣି ସବ୍- ଡେପୁଟି କଲେକ୍ଟର ପଦକୁ ଖସି କାର୍ଯ୍ୟରେ ଯୋଗ ଦେବେ । ସେ ଫିଲିପ୍ ସାହେବଙ୍କୁ ଦେଖା କରି ନିଜ ସପକ୍ଷରେ ଯୁକ୍ତି ଉପସ୍ଥାପନ କରିଥିଲେ । ବନ୍ଧୁକ ରଖିବା ସମ୍ପର୍କରେ ମଧ୍ୟ ତାଙ୍କ ବିରୋଧରେ ଅଭିଯୋଗ ରହିଥିଲା, ଯାହାକୁ ସେ ତଥ୍ୟ- ପ୍ରମାଣ ସହିତ ନିଜର ନିର୍ଦ୍ଦୋଷତା ସାବ୍ୟସ୍ତ କରିଥିଲେ । ତତ୍ପରେ ତାଙ୍କ ବିରୋଧରେ ଦାଏର ମୋକଦ୍ଦମା ଉଠାଇ ନିଆଯାଇ ତାଙ୍କୁ ସବ୍-ଡେପୁଟି କଲେକ୍ଟର ପଦରେ ବରଗଡ଼ରେ ଯୋଗ ଦେବାକୁ ସରକାରୀ ହୁକୁମ ପ୍ରକାଶିତ ହେଲା । ନିଜ ପଦବୀର ଅବନତି ଯୋଗୁଁ ସେ ଚାକିରିରୁ ଇସ୍ତଫା ଦେଇ ଲ ପଢ଼ି ଓକିଲାତି କରିବାକୁ ନିଷ୍ପତ୍ତି ନେଇଥିଲେ । ମାତ୍ର ବଡ଼ ଦିନ ଛୁଟିରେ ସେ ପୁଣି ସରକାରଙ୍କ ନିକଟରୁ ଟେଲିଗ୍ରାମ୍ ପାଇ ଯାଜପୁରରେ ୨୫.୧.୧୯୨୮ରେ ଡେପୁଟି କଲେକ୍ଟର ଭାବରେ ଯୋଗ ଦେଇଥିଲେ । ସେତେବେଳେ କାର୍ତ୍ତିକ ଚନ୍ଦ୍ର ଚନ୍ଦ୍ର ସେଠାରେ ସବ୍ ଡିଭିଜନାଲ ଅଫିସର ଭାବରେ କାର୍ଯ୍ୟ କରୁଥିଲେ ଓ ଭାରତଚନ୍ଦ୍ର ସେକେଣ୍ଡ ଅଫିସର ରୂପେ ଯୋଗ ଦେଲେ । ସେକେଣ୍ଡ ଅଫିସରଙ୍କ ଦାୟିତ୍ୱ ଯଥେଷ୍ଟ ଅଧିକ । ଫୌଜଦାରି ମକଦ୍ଦମା ସହ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ଘଟିତ ମୋକଦ୍ଦମା ଆଦି ଅନେକ କାର୍ଯ୍ୟ ତାଙ୍କ ଉପରେ ନ୍ୟସ୍ତ ଥିଲା । ଗଡ଼ଜାତର ତିକ୍ତ ଅନୁଭୂତି ଠାରୁ ଏହି ସ୍ଥାନର କାର୍ଯ୍ୟ ଅଧିକ ଥିଲେ ହେଁ, ତାଙ୍କ ପାଇଁ ଥିଲା ଅତ୍ୟନ୍ତ ସୁଖକର । ଯାଜପୁର କ୍ଲବରେ ସନ୍ଧ୍ୟା ସମୟରେ ହାକିମ, ଅମଲା, ଓକିଲ ତଥା ସ୍ଥାନୀୟ ଭଦ୍ରବ୍ୟକ୍ତିମାନଙ୍କର ସମାବେଶ ସହିତ ବିଭିନ୍ନ ବିଷୟରେ ଯେଉଁ ଗଠନାତ୍ମକ ଆଲୋଚନା ହେଉଥିଲା ତାହା ତାଙ୍କୁ ବେଶ୍ ଆନନ୍ଦ ଦେଉଥିଲା । ଏଠାରେ ଛଅମାସ କାର୍ଯ୍ୟ କରିବା ପରେ ତା’ ୧୫/୭/୧୯୨୮ରେ ସମ୍ବଲପୁରରେ ଡେପୁଟି କଲେକ୍ଟର ଭାବରେ ଯୋଗ ଦେଲେ । ସେତେବେଳେ ସମ୍ବଲପୁରରେ ସତୀଶ ଚନ୍ଦ୍ର ମୁଖାର୍ଜୀ ଥିଲେ ଡେପୁଟି କମିଶନର । ତାଙ୍କପରେ ଜନ୍‌ଷ୍ଟନ ସାହେବ ଡେପୁଟି କମିଶନର ହୋଇଆସିଲେ । ସେ ମହାଶୟ ବାଲେଶ୍ୱରରେ କଲେକ୍ଟର ଥିବା ସମୟରେ ସେଠାରେ କେତେକ ଅଞ୍ଚଳରେ ଦୁର୍ଭିକ୍ଷ ହୋଇଥିବା ବିଷୟ ସରକାରଙ୍କୁ ଜଣାଇ ସାହାଯ୍ୟ ଚାହିଁବାରୁ ସରକାର ତାହା ଅଗ୍ରାହ୍ୟ କରିଥିଲେ । ମାତ୍ର ସେହି ଅଞ୍ଚଳ ଗୁଡ଼ିକୁ ଦୁର୍ଭିକ୍ଷ ପ୍ରପୀଡ଼ିତ ବୋଲି ପ୍ରଚାର କରିବାରୁ ସରକାର ଅସନ୍ତୁଷ୍ଟ ହୋଇ ତାଙ୍କ ପଦରୁ ବରଖାସ୍ତ କରିଥିଲେ । ପରେ ଅପିଲ କରିବାରୁ ପୁଣି ସେ

ତାଙ୍କ ପଦ ଫେରିପାଇଥିଲେ । ତାଙ୍କ ସହିତ କାର୍ଯ୍ୟ କରିବାର ଅନୁଭୂତି ସ୍ୱତନ୍ତ୍ର ବୋଲି ଭାରତଚନ୍ଦ୍ର ଅନୁଭବ କରିଥିଲେ ।

୧୯୨୮ ମସିହା ଡିସେମ୍ବର ମାସରେ ଘେସ୍‌ର ଜମିଦାର ରଘୁନାଥ ସିଂହଙ୍କ ମୃତ୍ୟୁ ହେବାରୁ ଏବଂ ତାଙ୍କର ଏକମାତ୍ର ପୁତ୍ର ଯୋଗେନ୍ଦ୍ର ସିଂହ ନାବାଳକ ଥିବାରୁ ତାହା କୋର୍ଟ ୱାର୍ଡ଼ସ୍ ଅଧୀନରେ ରହିଲା ଏବଂ ତା'ର ତତ୍ତ୍ୱାବଧାନ ଭାର ଭାରତଚନ୍ଦ୍ରଙ୍କ ଉପରେ ଅର୍ପିତ ହୋଇଥିଲା । ଏହାଥିଲା ଏକ କ୍ଷୁଦ୍ର ଜମିଦାରୀ । ଆୟ ମାତ୍ର ଆଠ ହଜାର ଟଙ୍କା । ଜମିଦାର ପରିବାରରେ ମୃତ ଜମିଦାରଙ୍କ ତିନୋଟି ପତ୍ନୀ, ବୃଦ୍ଧାମାତା ଏବଂ ନାବାଳକ ପୁତ୍ର । କନ୍ୟା ବିବାହିତ ହୋଇଥିଲେହେଁ ମସ୍ତିଷ୍କ ବିକୃତି ଯୋଗୁଁ ବାପଘରେ ରହୁଥିଲେ । ନାବାଳକ ପୁତ୍ରର ପାଠପଢ଼ା ବନ୍ଦ କରିବାକୁ ତାଙ୍କ ମାତା ଓ ପିତାମହୀ ପରାମର୍ଶ ଦେବାରୁ ଭାରତଚନ୍ଦ୍ର ତା'ର ବିରୋଧକରି ତାଙ୍କ ପଢ଼ାପଢ଼ିର ସୁବନ୍ଦୋବସ୍ତ କରିଥିଲେ ଓ ସେ ଯଥାସମୟରେ ମାଟ୍ରିକୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସୁନ୍ଦର ଭାବରେ ଜମିଦାରୀ କାର୍ଯ୍ୟ ପରିଚାଳନା କରିବାରୁ ଇଂରେଜ ସରକାରଙ୍କ ଦ୍ୱାରା 'ରାୟସାହେବ' ଉପାଧିରେ ଭୂଷିତ ହୋଇଥିଲେ ।

ସମ୍ବଲପୁରରେ କିଛିଦିନ କାର୍ଯ୍ୟ କରିବା ପରେ ପୁଣି ଦ୍ୱିତୀୟ ଥର ପାଇଁ ତାଙ୍କୁ ବାଲେଶ୍ୱର ଯିବାକୁ ପଡ଼ିଥିଲା । ଏହି ସମୟରେ ଅର୍ଥାତ୍ ୧୯୩୦ ମସିହା ମାର୍ଚ୍ଚ ମାସରେ ମହାତ୍ମାଗାନ୍ଧୀ ସରକାରଙ୍କ ଲୁଣ ମରା ବନ୍ଦ ନିୟମର ପ୍ରତିବାଦ କରିବାରୁ ତାଙ୍କୁ ଗିରଫ କରାଯାଇଥିଲା । ଶେଷରେ ବଡ଼ଲାଟ୍ ଲର୍ଡ଼ ଇରଉଇନଙ୍କ ସହ ଚୁକ୍ତି ଅନୁସାରେ ଯେ କୌଣସି ବ୍ୟକ୍ତି ନିଜ ଘରେ ବ୍ୟବହାର ପରିମାଣର ଲୁଣ ମାରିପାରିବ ବୋଲି ନିଷ୍ପତ୍ତି ହୋଇଥିଲା । ବାଲେଶ୍ୱରରେ ଥିବା ସମୟରେ ହଠାତ୍ ଏକ ମିଥ୍ୟା ଗୁଜବ ପ୍ରଚାରିତ ହୋଇଥିଲା ଯେ କାଖଡ଼ା ଗ୍ରାମର କେତେକ ଯୁବକ 'ତରୁଣ ସଂଘ' ନାମରେ ସଂଘ ସ୍ଥାପନ କରି ସରକାରଙ୍କ ବିରୋଧରେ ବିଦ୍ରୋହାତ୍ମକ କାର୍ଯ୍ୟ କରୁଛନ୍ତି । ଏହି ବିଷୟରେ ତଦନ୍ତଭାର ଭାରତଚନ୍ଦ୍ରଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସେ ତଦନ୍ତ କରି ଜାଣିପାରିଥିଲେ ଏ ଘଟଣାଟି ସମ୍ପୂର୍ଣ୍ଣ ମିଥ୍ୟା ଏବଂ ବଙ୍ଗାଳୀ ତଥା ଓଡ଼ିଆମାନଙ୍କ ମଧ୍ୟରେ ମନାନ୍ତର ପାଇଁ ଏପରି ଏକ ଘଟଣାର ସୂତ୍ରପାତ ହୋଇଛି । ସେ ନିଜ ଚେଷ୍ଟାରେ ଦୁଇ ଗୋଷ୍ଠୀଙ୍କ ମଧ୍ୟରେ ରହିଥିବା ମନୋମାଳିନ୍ୟକୁ ଦୂର କରି ପରସ୍ପର ମଧ୍ୟରେ ଭାଇଚାରା ସୃଷ୍ଟି କରିପାରିଥିଲେ । ବାଲେଶ୍ୱରରେ ଥିବା ସମୟରେ ସପରିବାର ମ୍ୟାଲେରିଆରେ ଆକ୍ରାନ୍ତ ହେବାରୁ ଜିଲ୍ଲା କଲେକ୍ଟରଙ୍କୁ ବଦଳି ପାଇଁ ବା ଛୁଟି ପାଇଁ ଅନୁରୋଧ କରିଥିଲେ ହେଁ କଲେକ୍ଟର ତାଙ୍କ ଦରଖାସ୍ତ ମଞ୍ଜୁର କରିନଥିଲେ । ତା'ର ୨/୩ ମାସ ପରେ ଓଡ଼ିଶାର କମିଶନର ହର୍ଣ୍ଣଲେ ସାହେବ ଆସିଥିବା ସମୟରେ ସେ ତାଙ୍କ ଅଭିଯୋଗ ଜଣାଇବାରୁ ବାଲେଶ୍ୱରରୁ ପୁରୀକୁ ବଦଳି କରାଯାଇଥିଲା ।

୧୯୩୩ ଡିସେମ୍ବର ମାସ ୭ ତାରିଖ ଦିନ ସେ ବାଲେଶ୍ୱରରୁ ବଦଳି ହୋଇ ପୁରୀ ଗଲେ । ଝିଅମାନଙ୍କର ବାର୍ଷିକ ପରୀକ୍ଷା ଥିବାରୁ ସେମାନେ ବାଲେଶ୍ୱରରେ ରହିଥିଲେ ଏବଂ

ପରୀକ୍ଷା ପରେ ବଡ଼ଦିନ ଛୁଟିରେ ସେ ପରିବାରକୁ ନିଜ ପାଖକୁ ନେଇଥିଲେ । ପୁରୀରେ କାର୍ଯ୍ୟ କରୁଥିବା ସମୟରେ ଏହି ଜିଲ୍ଲାର ଗୋପ, ନିମାପଡ଼ା, କାକଟପୁର ଅଞ୍ଚଳରେ ବନ୍ୟା ଯୋଗୁଁ ଅଧିବାସୀଗଣ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲେ । ଘରଦ୍ୱାର ଭାଙ୍ଗିଯାଇଥିବାରୁ ସେମାନେ ପୁରୀରେ ଆସି ରୁଣ୍ଡ ହୋଇଥିଲେ । ସେତେବେଳେ ଭାରତଚନ୍ଦ୍ର ସେମାନଙ୍କର ଉପଯୁକ୍ତ ଥଇଥାନ ପ୍ରତି ବିଶେଷ ଦୃଷ୍ଟି ଦେଇଥିଲେ । ସେ ପୁରୀରେ ଡେପୁଟି କଲେକ୍ଟର ଥିବା ସମୟରେ କଟକର ଡେପୁଟି କଲେକ୍ଟର ଥିଲେ ଗୋପୀନାଥ ଦାଶ । ତାଙ୍କ ଘର ପୁରୀରେ ଓ ତାଙ୍କର ଅବସର ସମୟ ପାଖ ହୋଇଥିବାରୁ ସେ ପୁରୀକୁ ଆସିବା ନିମିତ୍ତ ଦରଖାସ୍ତ କରିଥିଲେ । କମିଶନର ତାଙ୍କୁ କହିଥିଲେ ଯଦି ପୁରୀରେ ଥିବା କୌଣସି ଡେପୁଟି କଲେକ୍ଟର କଟକ ଆସିବାକୁ ଇଚ୍ଛୁକ, ତେବେ ବଦଳି କଥା ବିଚାର ହେବ । ଭାରତଚନ୍ଦ୍ର କଟକ ଆସିବାକୁ ରାଜି ହେଲେ ଏବଂ ତାଙ୍କର କଟକକୁ ବଦଳି ହେଲା । ସେ ୧୯୩୪ ମସିହା ଜାନୁଆରୀ ୨ ତାରିଖରେ କଟକ କାର୍ଯ୍ୟରେ ଯୋଗଦେଲେ । କଟକରେ ଅବସ୍ଥାନ କାଳରେ ଅଫିସ କାର୍ଯ୍ୟ ସହିତ ପିଲାମାନଙ୍କର ପାଠପଢ଼ାର ସୁବନ୍ଦୋବସ୍ତ କରିପାରିଥିଲେ । ଏଠାରେ ସେ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ପର୍କରେ ଆସିବାର ସୁଯୋଗ ଲାଭ କରିଥିଲେ । କଟକରେ ସେ ଜିଲ୍ଲାର ଟ୍ରେଜେରୀ ଭାର ସହିତ ପ୍ରଥମ ଶ୍ରେଣୀର ମାଜିଷ୍ଟ୍ରେଟ୍‌ଙ୍କ କାର୍ଯ୍ୟ ତୁଲାଇଥିଲେ । ଏହା ସହିତ କେତେକ ରାଜସ୍ୱ ବିଭାଗର ଦାୟିତ୍ୱ ମଧ୍ୟ ତାଙ୍କ ଉପରେ ନ୍ୟସ୍ତ ଥିଲା । ତୁଳନାତ୍ମକ ଭାବରେ କଟକ ଜିଲ୍ଲାର କାର୍ଯ୍ୟ ଅନ୍ୟ ଜିଲ୍ଲାର କାର୍ଯ୍ୟ ଅପେକ୍ଷା ଯଥେଷ୍ଟ ଅଧିକ ଥିଲେହେଁ ସେ ବେଶ୍ ଦାୟିତ୍ୱର ସହିତ ନିଜର କାର୍ଯ୍ୟ ନିର୍ବାହ କରି ପ୍ରଶଂସିତ ହୋଇଥିଲେ । ୧୯୩୯ ମସିହା ଏପ୍ରିଲ୍ ମାସରେ କଟକରୁ ବଦଳି ହୋଇ ସେହି ମାସ ୪ ତାରିଖରେ ସେ ସମ୍ବଲପୁରରେ ଡେପୁଟି କଲେକ୍ଟର ରୂପେ ଯୋଗଦାନ କଲେ । ଏହି ସମୟରେ ସମ୍ବଲପୁରର ସାମଗ୍ରିକ ବିକାଶ ପାଇଁ ସେ ଗୁରୁତ୍ୱ ପ୍ରଦାନ କରିଥିଲେ । ପ୍ରଶାସନିକ କ୍ଷେତ୍ରରେ, ଉଚ୍ଚଶିକ୍ଷାର ବିକାଶ ତଥା ବିଭିନ୍ନ କ୍ଷେତ୍ରରେ ରହିଥିବା ସାମାଜିକ କୁସଂସ୍କାର ବିରୋଧରେ ସଂସ୍କାର ଆଣିବାକୁ ଚେଷ୍ଟାକରି ସଫଳ ହୋଇଥିଲେ । ତାଙ୍କର ଉଦ୍ୟମ ଯୋଗୁଁ ସମ୍ବଲପୁର ବାଳିକା ବିଦ୍ୟାଳୟ ମଧ୍ୟ ଇଂରେଜୀ ବିଦ୍ୟାଳୟକୁ ଉନ୍ନୀତ ହୋଇପାରିଥିଲା ।

ଭାରତ ଚନ୍ଦ୍ର ତା' ୨୯.୯.୧୯୪୨ ମସିହାରେ ୩୨ ବର୍ଷରୁ ଉର୍ଦ୍ଧ୍ୱ ସମୟ ଚାକିରି ଜୀବନ ପରେ ଅବସର ଗ୍ରହଣ କରିଥିଲେ । ସେତେବେଳେ ସରକାରୀ ଚାକିରିର ସମୟସୀମା ଥିଲା ୫୫ ବର୍ଷ । ତାଙ୍କର ଜନ୍ମ - ୧୮୮୭ ମସିହା ମାର୍ଚ୍ଚ ମାସ ଶିବରାତ୍ରି ଦିନ । ନିୟମାନୁସାରେ ୧୯.୦୩.୧୯୪୨ରେ ତାଙ୍କର ୫୫ ବର୍ଷ ପୂର୍ତ୍ତି ହେଉଥିବାରୁ ସେହିଦିନ ସେ ଅବସର ନେବା କଥା । ମାତ୍ର ଆତ୍ମଜୀବନରେ ସୂଚନା ଦେଇଛନ୍ତି ୧୯.୪.୧୯୪୨ରେ ତାଙ୍କର ୫୫ ବର୍ଷ ବୟସ ପୂର୍ଣ୍ଣ ହେଉଥିବାରୁ ଅବସର ଗ୍ରହଣ କରିବା କଥା । କିନ୍ତୁ ଦ୍ୱିତୀୟ

ବିଶ୍ୱଯୁଦ୍ଧ ଚାଲିଥିବାରୁ ଏବଂ ଡେପୁଟି କଲେକ୍ଟରଙ୍କ ଅଭାବଯୋଗୁଁ ତାଙ୍କର କାର୍ଯ୍ୟକାଳ ୬ ମାସ ବଢ଼ାଇ ଦିଆଗଲା ଓ ୨୯.୯.୧୯୪୨ ମସିହାରେ ଚାକିରିରୁ ଅବସର ନେଲେ । ସମୟଗତ ଅସମାନତା ଏଥିରେ ପରିଲକ୍ଷିତ ହୋଇଥାଏ । ପୁଣି ସେ ଲେଖିଛନ୍ତି ଅବସର ପରେ ତା' ୧୫/୨/୧୯୪୩ରୁ ୧୪/୫/୧୯୪୩ ପର୍ଯ୍ୟନ୍ତ ଓଡ଼ିଶାର ଏସିଷ୍ଟାଣ୍ଟ ପବ୍ଲିସିଟି ଅଫିସର ଭାବରେ କାର୍ଯ୍ୟ କରିଥିଲେ । ତେବେ ସେ ଯାହା ହେଉନା କାହିଁକି ଦୀର୍ଘଦିନ ଧରି ସରକାରୀ କାର୍ଯ୍ୟରେ ଥାଇ ସେ ନିଜର କର୍ତ୍ତବ୍ୟ ପରାୟଣତା ଓ ବିଚାରବୁଦ୍ଧିର ଯଥାର୍ଥ ପରିଚୟ ପ୍ରଦାନ କରିଥିଲେ ଏବଂ ଅବସର ପରେ ସମାଜସେବା କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ରୂପେ ନିୟୋଜିତ କରିଥିଲେ ।

**ପାରିବାରିକ ଜୀବନ:-** ପ୍ରଥମରୁ ଭାରତଚନ୍ଦ୍ରଙ୍କ ଜୀବନୀ ସମ୍ପର୍କରେ ସୂଚନା ପ୍ରଦାନ କରାଯିବା ସମୟରେ କୁହାଯାଇଛି ଯେ ତାଙ୍କ ପିତା ଭଗବାନ ନାୟକଙ୍କର ସାତ ଜଣ ସନ୍ତାନଙ୍କ ମଧ୍ୟରୁ ତିନିଜଣ ଥିଲେ ପୁତ୍ର ଓ ଚାରିଜଣ କନ୍ୟା । ପୁତ୍ରମାନଙ୍କ ମଧ୍ୟରେ ଭାରତଚନ୍ଦ୍ର ଥିଲେ ସର୍ବ କନିଷ୍ଠ । ଜଣେ ଦରିଦ୍ର ପିତାର ସନ୍ତାନ ଭାବରେ ପିଲାଦିନରୁ ହିଁ ପ୍ରତିକୂଳ ପରିବେଶ ବିରୋଧରେ ସଂଗ୍ରାମ କରିବାକୁ ଶିକ୍ଷା କରିଥିଲେ । ଜଣେ ଉତ୍ତମ ଛାତ୍ରଥିବାରୁ ବୃତ୍ତି ପାଉଥିଲେ ଓ ସେହି ଅର୍ଥରେ ସେ ତାଙ୍କର ଛାତ୍ରଜୀବନ ବହୁ କଷ୍ଟରେ ଅତିବାହିତ କରିଥିଲେ । ୧୯୦୬ ମସିହାରେ ଏଫ୍.ଏ. ପରୀକ୍ଷା ଦେବାପରେ ତତ୍‌କାଳୀନ ପ୍ରଥାନୁସାରେ ତାଙ୍କର ବିବାହ କାର୍ଯ୍ୟ ସମାପନ ହୋଇଥିଲା ଶକ୍ରାବତୀ ଦେବୀଙ୍କ ସହିତ । ଶକ୍ରାବତୀଙ୍କ ଜନ୍ମ ୧୮୯୪ ମସିହା ପୌଷ ଶୁକ୍ଳ ତୃତୀୟା ତିଥିରେ । ବହୁ ସନ୍ତାନର ଜନନୀ ଥିଲେ ହେଁ, ଜଣେ ଉପଯୁକ୍ତ ସହଧର୍ମିଣୀ ଭାବରେ ସେ ତାଙ୍କର ସମସ୍ତ କାର୍ଯ୍ୟ ନିର୍ବାହ କରିଯାଇଛନ୍ତି । ଘରର ସମସ୍ତ ଦାୟିତ୍ୱ ହସି ହସି ନିଜ ଉପରକୁ ନେଇଛନ୍ତି । ଭାରତ ଚନ୍ଦ୍ରଙ୍କ ମତରେ ସେ ଥିଲେ ଜଣେ 'ପ୍ରକୃତ ସହଧର୍ମିଣୀ, କାର୍ଯ୍ୟକ୍ଷମା, ଉତ୍ସାହଦାତ୍ରୀ । ତାଙ୍କ ପାଇଁ ଝିଅ ସୁଷମା ସମଗ୍ର ଓଡ଼ିଶାରେ ବ୍ରାହ୍ମଣ ବଂଶରେ ପ୍ରଥମ ମାଟ୍ରିକୁଲେଟ୍, ପ୍ରଥମ ଆଇ.ଏସ୍‌ସି, ପ୍ରଥମ ଏମ୍.ବି.ବି.ଏସ୍ ଡାକ୍ତର ହେବାର ସୌଭାଗ୍ୟ ଅର୍ଜନ କରିପାରିଥିଲେ । ସେହି ସୁଷମା ୧୯୪୫ ମସିହାରେ ପାଟଣା ମେଡ଼ିକାଲ କଲେଜରୁ ଦ୍ୱିତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେବା ସହିତ ସମଗ୍ର ଭାରତ ବର୍ଷରେ ଛାତ୍ରୀମାନଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥାନ ଅଧିକାର କରି ତତ୍‌କାଳୀନ ବଡ଼ଲାଟ ୱେଭେଲଙ୍କ ପ୍ରଦତ୍ତ 'ୱେଭେଲ ମେଡେଲ' ପ୍ରାପ୍ତ ହୋଇଥିଲେ । ଏହା ସମ୍ଭବ ହୋଇପାରିଥିଲା ଶକ୍ରାବତୀ ଦେବୀଙ୍କ ଉତ୍ସାହ ଓ ପ୍ରେରଣା ଯୋଗୁଁ ।

ଭାରତଚନ୍ଦ୍ର ଚାରୋଟି ପୁତ୍ର ସନ୍ତାନ ଓ ଏଗାରଟି କନ୍ୟା ସନ୍ତାନଙ୍କ ଜନକ ଥିଲେ । ମାତ୍ର ଦୁଇଟି ପୁଅ ଓ ଗୋଟିଏ ଝିଅ ବାଲ୍ୟାବସ୍ଥାରେ ଇହଲୀଳା ସାଙ୍ଗ କରିଥିଲେ । ଜ୍ୟେଷ୍ଠପୁତ୍ର ସତ୍ୟଗୋପାଳ । ବେଶ୍ ଧୀରସ୍ଥିର । ବିବାହ କରିଥିଲେ । ଗୋଟିଏ ପୁତ୍ର ସନ୍ତାନର ଜନକ

ମଧ୍ୟ ଥିଲେ । ସମ୍ବଲପୁରରେ ଓକିଲାତି କରୁଥିବା ଅବସ୍ଥାରେ ଅକାଳରେ ଦେହତ୍ୟାଗ କରିଥିଲେ । କନିଷ୍ଠ ପୁତ୍ର ବିଭୁପ୍ରସାଦ । ମେଧାବୀ ଛାତ୍ର । ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିଲେ । ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱରେ ମଧ୍ୟ ରହିଥିଲେ । ତାଙ୍କର ଏଗାର ଜଣ କନ୍ୟାଙ୍କ ମଧ୍ୟରୁ ପ୍ରଥମ ତିନୋଟି କନ୍ୟା ଯଥା- ମନୋରମା, ତିଲୋତ୍ତମା ଓ ଅନୁପମାଙ୍କର ତତ୍କାଳୀନ ବିଧି ଅନୁଯାୟୀ ବାଲ୍ୟ ବିବାହ ହୋଇଥିଲା । ୧ ୯ ୨ ୯ ମସିହାରେ ବାଲ୍ୟବିବାହ ନିରୋଧ ଆଇନ୍ ପ୍ରବର୍ତ୍ତିତ ହୋଇଥିଲା । ତେଣୁ ଚତୁର୍ଥ କନ୍ୟା ନିରୁପମାର ବିବାହ ସାରଦା ଆଇନ୍ ଅନୁଯାୟୀ ୧ ୯୩୪ ମସିହାରେ ଚଉଦ ବର୍ଷ ବୟସରେ ସଂପନ୍ନ ହୋଇଥିଲା । ପରେ ସେ ପାଠ ପଢ଼ି ବି.ଏ., ବି.ଇଡ଼ି ହୋଇପାରିଥିଲେ । ପଞ୍ଚମ ଝିଅ ସୁଷମା ବେଶ୍ ମେଧାବିନୀ ଥିଲେ ଓ ଏମ୍.ବି.ବି.ଏସ୍ ଡାକ୍ତରାଣୀ ହୋଇପାରିଥିଲେ । ଷଷ୍ଠ ଝିଅ ସୁରମା ୧ ୯ ୪ ୦ ମସିହାରେ ମାଟ୍ରିକୁଲେସନ୍ ପରୀକ୍ଷାରେ ପାସ୍ ହେବାପରେ ତା'ର ବିବାହ ହୋଇଯାଇଥିଲା । ସପ୍ତମ ଝିଅ ନୀଳିମା ମଧ୍ୟ ୧ ୯ ୪ ୦ ମସିହାରେ ମେଟ୍ରିକୁଲେସନ ପାସ୍ କରିଥିଲେ । ତାଙ୍କର ପାଠ ପଢ଼ିବାକୁ ଖୁବ୍ ଆଗ୍ରହ ରହିଥିଲେହେଁ ଭାବୀଶ୍ୱଶୁରଙ୍କ ବାରଣ ଯୋଗୁଁ ସେ ଅଧିକ ପଢ଼ିବାକୁ ସମର୍ଥା ହୋଇପାରି ନଥିଲେ । ଅଷ୍ଟମ ଝିଅ ଉମା ବି.ଏ (ଅନର୍ସ) ପାସ୍ କରିଥିଲେ । ନବମ ଝିଅ ଶ୍ୟାମା ଏମ୍.ଏ, ଅଧ୍ୟାପିକା । ଦଶମ ଝିଅ ପୂର୍ଣ୍ଣିମା ଏମ୍.ଡ଼ି. ଡାକ୍ତରାଣୀ ଓ ଏକାଦଶ କନ୍ୟାର ନାମ ସତ୍ୟଭାମା । ଭାରତ ଚନ୍ଦ୍ରଙ୍କ ନାତିନାତୁଣୀ ମିଶି ସତୁରି ଜଣ ।

ସେ ବହୁ ସନ୍ତାନର ଜନକ ହୋଇଥିଲେହେଁ, ପ୍ରତିଟି ସନ୍ତାନଙ୍କୁ ଯୋଗ୍ୟ କରିବା ପାଇଁ ସେ ଯଥାସାଧ୍ୟ ଚେଷ୍ଟା କରିଛନ୍ତି । ଜଣେ ପ୍ରଶାସନିକ ଅଧିକାରୀ ଭାବରେ ବହୁ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହ କରିଥିଲେହେଁ ଏବଂ ସର୍ବଦା କାର୍ଯ୍ୟବ୍ୟସ୍ତ ରହୁଥିଲେହେଁ ପିଲାମାନଙ୍କର ପାଠପଢ଼ା ସେ ନିଜେ ତଦାରଖ କରୁଥିଲେ । ନିଜେ ପ୍ରଥମାବସ୍ଥାରେ ଶିକ୍ଷକତା କାର୍ଯ୍ୟ କରିଥିବାରୁ ପିଲାମାନଙ୍କୁ କିପରି ପାଠପଢ଼ାଯାଏ, ତାହା ସେ ଜାଣିଥିଲେ । ତେଣୁ ଅଫିସରୁ ଆସିବାପରେ ସେ ପିଲାମାନଙ୍କୁ ପାଠ ପଢ଼ାଉଥିଲେ । ଘରର ସମସ୍ତ କାର୍ଯ୍ୟ ଉପରେ ତୀକ୍ଷ୍ଣ ନଜର ରଖୁଥିଲେ । ପାଠପଢ଼ା ସହିତ କିପରି ଗୃହ-କାର୍ଯ୍ୟରେ ଝିଅମାନେ ନିପୁଣା ହୋଇପାରିବେ, ସେଥିପ୍ରତି ଦୃଷ୍ଟି ରଖୁଥିଲେ । ଏଥିପାଇଁ ସେ କାର୍ଯ୍ୟ ନିର୍ଘଣ୍ଟ ସ୍ଥିର କରିଥିଲେ । ତତ୍ ସହିତ ପିଲାଙ୍କୁ ସିଲେଇ ଶିକ୍ଷା ଦେବା ନିମିତ୍ତ ବ୍ୟବସ୍ଥା କରିଥିଲେ । ସଙ୍ଗୀତବିତ୍ ଗୋକୁଳଚନ୍ଦ୍ର ହରିଚନ୍ଦନଙ୍କୁ ସଙ୍ଗୀତ ଶିକ୍ଷକ ଭାବରେ ନିଯୁକ୍ତି ପ୍ରଦାନ କରିଥିଲେ । ୧ ୯ ୦ ୯ ମସିହାରେ ଚାକିରି କରିବାପରେ ସେ ନିଜ ପୁତୁରା ଏବଂ ଓ ଭଣଜାମାନଙ୍କୁ ପାଠପଢ଼ାରେ ସାହାଯ୍ୟ କରିଥିଲେ । ବଡ଼ ଭଉଣୀଙ୍କ ଶ୍ୱଶୁରଘର ଗରିବ ଥିବାରୁ ସେ ତାଙ୍କୁ ଯଥାସାଧ୍ୟ ଆର୍ଥିକ ସାହାଯ୍ୟ ମଧ୍ୟ କରୁଥିଲେ । ଭାରତଚନ୍ଦ୍ରଙ୍କ ଝିଅମାନେ ସଙ୍ଗୀତରେ ଥିଲେ ବେଶ୍

ନିପୁଣା । ଏପରିକି ତାଙ୍କର ସେତେବେଳର ତିନି ବର୍ଷିଆ କନ୍ୟା ପୂର୍ଣ୍ଣିମା ୧୯୩୫ ମସିହା ଡିସେମ୍ବର ମାସରେ କଟକସ୍ଥ ରାମଚନ୍ଦ୍ର ଭବନରେ ଅନୁଷ୍ଠିତ ସଙ୍ଗୀତ ସମ୍ମିଳନୀରେ ଗୀତ ଗାଇ ସମସ୍ତଙ୍କୁ ଚମତ୍କୃତ କରି ଦେଇଥିଲେ । ପାଟଣା ଉଚ୍ଚନ୍ୟାୟାଳୟର ପ୍ରଧାନ ବିଚାରପତି ସାର୍ କୋର୍ଟନି ଟେରେଲ ମଧ୍ୟ ତାଙ୍କୁ କୋଳରେ ଧରି ଅନେକ ପ୍ରଶଂସା କରିଥିଲେ । 'ଉତ୍କଳ ସାହିତ୍ୟ' ଓ 'ସମାଜ'ରେ ତାଙ୍କ ବିଷୟରେ ପ୍ରଶଂସାବାଣୀ ପ୍ରକାଶ ପାଇଥିଲା । ଗୋପାଳଚନ୍ଦ୍ର ପ୍ରହରାଜ ୧୯୩୬ 'ଉତ୍କଳ ସାହିତ୍ୟ'ର ବୈଶାଖ ସଂଖ୍ୟାରେ 'ଭାଷା କୋଷ ପାଇଁ ସଫର' ଶୀର୍ଷକ ପ୍ରବନ୍ଧରେ ପୂର୍ଣ୍ଣିମା ସମ୍ବନ୍ଧରେ ଅନେକ ପ୍ରଶଂସାବାକ୍ୟ ଲେଖିଥିଲେ । ମାତ୍ର ଦୁଃଖର ବିଷୟ ସେହି ପ୍ରତିଭାଧାରିଣୀ ପୂର୍ଣ୍ଣିମାଙ୍କର ୧୯୪୫ ମସିହା ଅଗଷ୍ଟ ମାସ ୬ ତାରିଖ ଦିନ ଅକାଳ ବିୟୋଗ ଘଟିଥିଲା ଟାଇଫଏଡ଼ରେ । ଏହି ଧକ୍କା ଭାରତଚନ୍ଦ୍ରଙ୍କ ପାଇଁ ଥିଲା ଅସହ୍ୟ । ସେ ତାଙ୍କର ଝିଅ ଓ ପୁଅଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖୁନଥିଲେ । କନ୍ୟାମାନଙ୍କୁ ଉପଯୁକ୍ତ ଶିକ୍ଷାଦେବାକୁ ସେ ବଦ୍ଧପରିକର ଥିଲେ । ସେହି କାରଣରୁ ବ୍ରାହ୍ମଣ ଝିଅମାନଙ୍କ ମଧ୍ୟରେ ତାଙ୍କ ଝିଅ ସୁଷମା ପ୍ରଥମେ ମାଟ୍ରିକ୍ ପାସ୍ କରିଥିଲେ । ପରେ ପରେ ଝିଅମାନଙ୍କ ଶିକ୍ଷାକୁ ସମାଜରେ ଗୁରୁତ୍ୱ ପ୍ରଦାନ କରାଯିବାରୁ ୧୯୫୮ ସାଲରେ ସମ୍ବଲପୁର ସ୍ଥାନୀୟ ଉଚ୍ଚ ବାଳିକା ବିଦ୍ୟାଳୟର ପୁରସ୍କାର ବିତରଣୀ ସଭାରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ସରକାରଙ୍କ ତରଫରୁ ସମ୍ବଲପୁରରେ ଏକ ମହିଳା କଲେଜ ସ୍ଥାପନ ଦାବୀକୁ ଗ୍ରହଣ କରିଥିଲେ ଏବଂ ୧୯୫୯ ମସିହାରେ ମହିଳା କଲେଜ ସ୍ଥାପିତ ହୋଇଥିଲା । ଏ କ୍ଷେତ୍ରରେ ଭାରତଚନ୍ଦ୍ର ନିଜ କନ୍ୟାମାନଙ୍କୁ ଶିକ୍ଷିତ କରିବାକୁ ଯେଉଁ ପଦକ୍ଷେପ ଗ୍ରହଣ କରିଥିଲେ, ପରୋକ୍ଷରେ ତା'ର ସୁଫଳ ହେଲା ସମ୍ବଲପୁରରେ ମହିଳା କଲେଜର ସ୍ଥାପନ ।

ଅନୁଗୁଳରେ କାର୍ଯ୍ୟରତ ଥିବା ସମୟରେ ତାଙ୍କର ଜ୍ୟେଷ୍ଠକନ୍ୟା ମନୋରମା ପରେ· ଗୋଟିଏ ପୁତ୍ର ଜନ୍ମ ହୋଇ ମାତ୍ର ଦୁଇ ବର୍ଷ ମଧ୍ୟରେ ମୃତ୍ୟୁବରଣ କରିବାରୁ ପରିବାରର ସମସ୍ତେ ଦୁଃଖାଭିଭୂତ ହୋଇ ପଡ଼ିଥିଲେ । ଭାରତଚନ୍ଦ୍ର ନିଜେ ଭାଙ୍ଗିପଡ଼ିଥିଲେ ହେଁ ଧୈର୍ଯ୍ୟର ସହିତ ପତ୍ନୀଙ୍କୁ ସାନ୍ତ୍ୱନା ଦେଇ ସେହି ଦୁଃଖର ସମୟକୁ କିଛିତ୍ ପରିମାଣରେ ହ୍ରାସ କରିପାରିଥିଲେ । ଅବଶ୍ୟ ପରେ ପରେ ସେହି ଅନୁଗୁଳରେ ଥିବା ସମୟରେ ତାଙ୍କର ଦ୍ୱିତୀୟ ପୁତ୍ର ଜନ୍ମ ହେବାରୁ ମୃତ ସନ୍ତାନର ଦୁଃଖକୁ କିଛି ମାତ୍ରାରେ ଭୁଲି ଯାଇଥିଲେ ପରିବାରର ସଦସ୍ୟଗଣ । ସେତେବେଳେ ସମାଜର ଝିଅମାନଙ୍କୁ ବିଶେଷ ଗୁରୁତ୍ୱ ଦିଆଯାଉନଥିଲା । ଝିଅ ଜନ୍ମକୁ ଅନେକ ବ୍ୟକ୍ତି ସ୍ୱାଭାବିକ ଭାବରେ ଗ୍ରହଣ କରିପାରୁ ନଥିଲେ । ବର୍ତ୍ତମାନ ମଧ୍ୟ ସେହି ଦୃଷ୍ଟିଭଙ୍ଗୀର ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇଛି ବୋଲି କୁହାଯାଇ ନପାରେ । ମାତ୍ର ଭାରତ ଚନ୍ଦ୍ର ଏଗାରଟି କନ୍ୟା ସନ୍ତାନର ଜନକ ଥିଲେ ହେଁ, ସେଥିପ୍ରତି ତାଙ୍କ ମନରେ ଆଦୌ

ଅବସୋସ ନଥିଲା । ଏ ସମ୍ପର୍କରେ ସେ ତାଙ୍କ ଆତ୍ମଜୀବନୀରେ କହିଛନ୍ତି- "ମୋ ମନରେ ଏହି ଧାରଣା ଦୃଢ଼ବଦ୍ଧ ହୋଇ ରହିଥାଏ ଯେ, ଭଗବାନ ଏତେ ଗୁଡ଼ିଏ ଝିଅ ମୋର ଦୁର୍ବଳ ହସ୍ତରେ ଯେଉଁ ଉଦ୍ଦେଶ୍ୟରେ ଦାନ କରିଅଛନ୍ତି, ତା'ର ପୂରଣ ସକାଶେ ନିଶ୍ଚୟ ସେ ମୋତେ ଶକ୍ତି ପ୍ରଦାନ କରିବେ । ଝିଅମାନେ ଯେ କେବଳ ପାକଶାଳାର ଅଧିକାରିଣୀ, ଅନ୍ୟ କୌଣସି ଉଚ୍ଚତର କାର୍ଯ୍ୟ ସକାଶେ ଅଯୋଗ୍ୟା, ଏହି ଧାରଣା ମୋ ମନରୁ କ୍ରମେ ଦୂରୀଭୂତ ହେବାକୁ ଲାଗିଲା ।" (ପୃ-୨୩୪) ତେଣୁ ଝିଅମାନଙ୍କୁ ନେଇ ସେ ଏକ ସୁଖୀପରିବାର ଗଠନ କରିଥିଲେ, ଯେଉଁଠି ସ୍ନେହ, ଶ୍ରଦ୍ଧା ଓ ଭଲ ପାଇବାର ଅଫୁରନ୍ତ ପ୍ରବାହ ଲାଗି ରହିଥିଲା ।

ବିଭିନ୍ନ କ୍ଷେତ୍ରରେ ଭାରତଚନ୍ଦ୍ର ଜଣେ ଉତ୍ତମ ପିତାର କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି । ତାଙ୍କର ନବମ କନ୍ୟା ଶ୍ୟାମାର ଚକ୍ଷୁପୀଡ଼ା ସମୟରେ ସେ ତାକୁ ପାଟଣା ନେଇ ପାଟଣା ମେଡ଼ିକାଲ କଲେଜର ଅଧ୍ୟାପକ ଡା. ଦୁଖନରାମଙ୍କ ନିକଟରେ ଚିକିତ୍ସା କରାଇଛନ୍ତି । ସେତେବେଳେ ଡାକ୍ତରଙ୍କ ପରାମର୍ଶ କ୍ରମେ ଦୁଷ୍ପ୍ରାପ୍ୟ ଥିବା AS³ ନାମକ ଔଷଧ ପାଇବା ନିମିତ୍ତ କଲିକତା ଯାଇ ଯେପରି କଷ୍ଟ ସ୍ୱୀକାର କରିଥିଲେ, ସମଗ୍ର କଲିକତା ନଗରୀ ଭ୍ରମଣ କରି ଏବଂ ବିଜ୍ଞାପନ ଦେଇ ଯେଉଁ କଷ୍ଟରେ ଔଷଧଟି ପାଇ ପାରିଥିଲେ, ସେଥିରୁ ଜଣେ ସ୍ନେହଶୀଳ, ଦରଦୀ ପିତାର ଭୂରିଭୂରି ନିଦର୍ଶନ ମିଳିଥାଏ । ପୁଣି ସୁଷମା ପାଟଣା ମେଡ଼ିକାଲ କଲେଜରେ ଅଧ୍ୟୟନ ସମୟରେ ପ୍ଲୁରିସି ରୋଗରେ ଆକ୍ରାନ୍ତ ହୋଇ ପଡ଼ିଥିବା ବେଳେ ସେ ଯେପରି ତା'ର ସେବା କରିଛନ୍ତି, ତା'ର ପଟାନ୍ତର ନାହିଁ । ସରକାରୀ ଚାକିରିରୁ ଦୀର୍ଘ ତିନି ମାସ ଛୁଟି ନେଇ ଘଟଣାରେ ରହି ଝିଅମାନଙ୍କର ସେବା ଶୁଶ୍ରୁଷା କରିଛନ୍ତି । ଆରୋଗ୍ୟ ପରେ ଜଳବାୟୁର ପରିବର୍ତ୍ତନ ନିମିତ୍ତ ସପରିବାର ପୁରୀରେ ଅବସ୍ଥାନ କରିଛନ୍ତି । ଏଥିରୁ ତାଙ୍କ ବ୍ୟକ୍ତିତ୍ୱର ଭିନ୍ନ ଏକ ଦିଗ ଉନ୍ମୋଚିତ ହୋଇଥାଏ ।

ଭାରତଚନ୍ଦ୍ରଙ୍କ ଜୀବନରେ ଏକ ଦୁଃଖଦ ଘଟଣା ଘଟିଥିଲା ଜ୍ୟେଷ୍ଠପୁତ୍ର ସତ୍ୟ ଗୋପାଳଙ୍କ ମୃତ୍ୟୁପରେ । ସତ୍ୟଗୋପାଳ ଥିଲେ ବାପାଙ୍କର ବେଶ୍ ବଶମ୍ବଦ । ସ୍ଥିର, ସରଳ ଓ ଧୈର୍ଯ୍ୟବାନ ଯୁବକ । ମାତ୍ର ଖୁବ୍ କମ୍ ବୟସରେ ତାଙ୍କର ଅକାଳ ବିୟୋଗ ଘଟିଥିଲା । ପୁତ୍ର ମୃତ୍ୟୁର ଶୋକରେ ଅଧୀର ଥିବାବେଳେ ତାଙ୍କର ବଡ଼ ବୋହୂ (ସତ୍ୟଗୋପାଳଙ୍କ ପତ୍ନୀ) କିଛି ଖଳଲୋକଙ୍କ ପରାମର୍ଶ କ୍ରମେ ଏବଂ ପିତା ସଚ୍ଚିଦାନନ୍ଦଙ୍କ ପ୍ରରୋଚନାରେ ଘର ଛାଡ଼ି ବାପଘରକୁ ଚାଲିଗଲେ । ତାଙ୍କର ବଡ଼ ନାତୁଣୀ ମଧୁଛନ୍ଦା ପାଟଣାରେ ଡାକ୍ତରାଣୀ ଥିବା ସୁଷମା ନିକଟରେ ରହିଥିବାରୁ ତାକୁ ସାଙ୍ଗରେ ନେଇ ପାରିନଥିଲେ । ମାତ୍ର ଅନ୍ୟ ଏକ ଝିଅ ଓ ଦୁଇ ବର୍ଷର ସାନ ପୁଅକୁ ସଙ୍ଗରେ ନେଇ ବାପାଙ୍କ ପାଖକୁ ବଡ଼ ବୋହୂ ଚାଲିଯାଇ ଥିଲେ, ଯେଉଁଠାରେ ଶିକ୍ଷା ଓ ସ୍ୱାସ୍ଥ୍ୟ ପାଇଁ ଆଦୌ କୌଣସି ସୁବିଧା ନଥିଲା । ଭାରତଚନ୍ଦ୍ରଙ୍କ ଅନୁରୋଧ ସତ୍ତ୍ୱେ ତାଙ୍କ ସମୁଧି ବୋହୂ କିମ୍ବା ନାତି ନାତୁଣୀକୁ ପଠାଇଲେ ନାହିଁ । ଏଥିପାଇଁ

ଅଦାଲତର ଆଶ୍ରୟ ନେବାକୁ ପଡ଼ିଥିଲା । ମାତ୍ର ଘଟଣାଟି ଅନ୍ୟ ଦିଗକୁ ଗତି କରିବାରୁ ସେ ଅଦାଲତରୁ ବାଧ ହୋଇ କେସ୍ ଉଠାଇ ଆଣିଲେ । ପାଟଣାରେ କନ୍‌ଭେଣ୍ଟରେ ପଢୁଥିବା ନାତୁଣୀ ମାଧୁ (ମଧୁଛନ୍ଦା)କୁ ଧରି ସୁଷମା ଆସୁଥିବା ବେଳେ ବାଟରୁ ମାମୁଁଘର ଲୋକେ ନାତୁଣୀର ଅନିଚ୍ଛା ସତ୍ତ୍ୱେ ତାକୁ ଜବରଦସ୍ତ ନେଇଗଲେ । କନିଷ୍ଠ ପୁତ୍ର (ଭାରତଚନ୍ଦ୍ରଙ୍କ) ବିଭୁପ୍ରସାଦ ଉଚ୍ଚଶିକ୍ଷା ନିମିତ୍ତ ଜର୍ମାନ୍ ଯିବା ପୂର୍ବରୁ ଭାଉଜଙ୍କୁ ଦେଖିବାକୁ ଯାଇ ସେଠାରେ ମାଧୁର ଶୋଚନୀୟ ଅବସ୍ଥା ଦେଖି ବେଶ୍ ଦୁଃଖିତ ହୋଇଥିଲେ । ଶେଷରେ ସମ୍ବନ୍ଧୀଙ୍କ ଭାଇମାନଙ୍କ ମଧ୍ୟରେ ମନାନ୍ତର ହୋଇ କେସ୍ କୋର୍ଟକୁ ଯିବାରୁ ତାଙ୍କ ସମ୍ବନ୍ଧୀ ଭାରତଚନ୍ଦ୍ରଙ୍କ ବନ୍ଧୁ ବାଳମୁକୁନ୍ଦଙ୍କୁ ଝିଅ ଏବଂ ନାତିନାତୁଣୀମାନଙ୍କୁ ତାଙ୍କ ଘରକୁ ଫେରାଇ ନେବାକୁ ଅନୁରୋଧ କରିଥିଲେ ଏବଂ ସମ୍ବନ୍ଧୀ ଭାରତଚନ୍ଦ୍ରଙ୍କୁ ଏ ବିଷୟରେ ବୁଝାଇବାକୁ କହିଥିଲେ । ଯାହାହେଉ ଶେଷରେ ନାତିନାତୁଣୀ ଭାରତଚନ୍ଦ୍ରଙ୍କ ଘରକୁ ଆସିଲେ ଓ ସେ ସେମାନଙ୍କର ଉପଯୁକ୍ତ ତତ୍ତ୍ୱନେଇ ତାଙ୍କୁ ଶିକ୍ଷା ପ୍ରଦାନ କରିଥିଲେ ।

ଶେଷ ପର୍ଯ୍ୟନ୍ତ ଭାରତଚନ୍ଦ୍ର ତାଙ୍କ ପରିବାରକୁ ଏକ ଶୃଙ୍ଖଳିତ ଜୀବନଧାରା ପ୍ରଦାନ କରିଥିଲେ । ପରିବାରର ସଦସ୍ୟମାନଙ୍କ ମଧ୍ୟରେ ଗଭୀର ଆତ୍ମୀୟତା ରହିଥିଲା । ଝିଅଟିଏ ଜନ୍ମ ହେବାମାତ୍ରେ ଭବିଷ୍ୟତର ଜ୍ୱାଇଁ ପାଇଁ ସେ ବିଭିନ୍ନ ସ୍ଥାନରେ ଆଖି ପକାଉଥିଲେ । ତାଙ୍କ ପତ୍ନୀ ବିଭିନ୍ନ କ୍ଷେତ୍ରରେ ସହଯୋଗ କରୁଥିବାରୁ ଏତେବଡ଼ ପରିବାର ହୋଇ ମଧ୍ୟ କେବେବି ବିଶୃଙ୍ଖଳା ଘଟିନଥିଲା । ପତ୍ନୀ ଶକ୍ରାବତୀ ଦେବୀ ପକ୍ଷାଘାତ ରୋଗରେ ୧୯୫୬ ମସିହା ଡିସେମ୍ବର ୮ ତାରିଖରେ ଇହଲୀଳା ସମ୍ବରଣ କରିବାରୁ ସେ ଦୁଃଖରେ ଭାଙ୍ଗି ପଡ଼ିଥିଲେ । ଅବଶ୍ୟ କିଛି ଦିନ ପରେ ପୁଣି ନିଜକୁ ଧୈର୍ଯ୍ୟ ଦେଇ ସମାଜସେବାରେ ମନପ୍ରାଣ ଢାଳିଦେଇଥିଲେ ।

**ସମାଜ ସେବା:-** ଭାରତଚନ୍ଦ୍ରଙ୍କର ସମାଜସେବା କରିବାର ଆଗ୍ରହ ପିଲାଦିନରୁ ରହିଥିଲା । ସରକାରୀ ଚାକିରି କରିଥିବା ସମୟରେ ପ୍ରଶାସନିକ ଅଧିକାରୀର ସୀମିତ ପରିସର ମଧ୍ୟରେ ରହି ଜନସାଧାରଣଙ୍କୁ ଯେତିକି ସାହାଯ୍ୟ କରିବା କଥା, ତାହା କରିବାକୁ ସେ ଆଦୌ କୁଣ୍ଠିତ ନଥିଲେ । ତାଙ୍କ ଚାକିରି ଜୀବନରେ ବିଭିନ୍ନ ସ୍ଥାନରେ ଦୁର୍ଭିକ୍ଷ ଏବଂ ବନ୍ୟା ସମୟରେ ସେ ନିଜେ ଲୋକମାନଙ୍କୁ ଧରି ବିପନ୍ନ ଲୋକମାନଙ୍କୁ ସାହାଯ୍ୟ କରିବାକୁ ଯାଉଥିଲେ । ସରକାରଙ୍କୁ ଅଧିକ ସାହାଯ୍ୟ ପାଇଁ ଅନୁରୋଧ ପତ୍ର ଲେଖୁଥିଲେ । ଲୋକମାନଙ୍କୁ ସେମାନଙ୍କର ଅଧିକାର ଓ କାର୍ଯ୍ୟ ସମ୍ବନ୍ଧରେ ସଚେତନ କରାଇ ଦେଉଥିଲେ । ସମାଜର ବୃହତ୍ତର ମଙ୍ଗଳ ପାଇଁ ସେ ବହୁ ଜନକଲ୍ୟାଣ ଯୋଜନା ପ୍ରଣୟନ କରିଥିଲେ । ଏଥିପାଇଁ ଅବଶ୍ୟ କେତେକ କ୍ଷେତ୍ରରେ ତାଙ୍କୁ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମାତ୍ର ସେ ତାହାକୁ ଭ୍ରୂକ୍ଷେପ ନ କରି ନିଜ କାର୍ଯ୍ୟ ଉଚିତ୍ ମାର୍ଗରେ କରି ଚାଲିଥିଲେ ।

ଚାକିରିରୁ ଅବସର ଗ୍ରହଣ ପରେ ତାଙ୍କର ସମାଜସେବା ପରିସର ବୃଦ୍ଧି ପାଇଥିଲା । ଯେଉଁ କାର୍ଯ୍ୟ ଚାକିରି ସମୟରେ କରିବା ସମ୍ଭବ ନଥିଲା, ତାହାକୁ ସେ ଅବସର ପରେ ହିଁ କରିଛନ୍ତି । କାରଣ ଚାକିରିରେ ଥିବାବେଳେ କେତେକ ଅନୁଶାସନ ମଧ୍ୟରେ ରହି କାର୍ଯ୍ୟ କରିବାକୁ ପଡୁଥିଲା । କାର୍ଯ୍ୟ କ୍ଷେତ୍ରରେ ଅବାଧ ସ୍ୱାଧୀନତା ନଥିଲା । ମାତ୍ର ଅବସର ପରେ ସେ ଅନୁଶାସନ ବନ୍ଧନରୁ ମୁକ୍ତ ହୋଇ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାର ପରିସର ପାଇଛନ୍ତି । ବିଶେଷ କରି ବିଦ୍ୟାଳୟ ପ୍ରତିଷ୍ଠା, ନାରୀଶିକ୍ଷା, ବାଲ୍ୟ ବିବାହ, ସମାଜରେ ପରିପୂରିତ କୁସଂସ୍କାର ଆଦିର ବିଲୋପ ପାଇଁ ସେ ଯଥାସାଧ୍ୟ ଚେଷ୍ଟା କରିଛନ୍ତି ।

ସମ୍ବଲପୁରରେ ଓଡ଼ିଶା ଶିକ୍ଷା ବିଭାଗର ଡିରେକ୍ଟର ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ସହିତ ଭାରତଚନ୍ଦ୍ରଙ୍କର ସାକ୍ଷାତ୍ ହେବାରୁ ସେ ପରାମର୍ଶ ଦେଇଥିଲେ ସମ୍ବଲପୁର ଅଧିକାରୀ ଯଦି ଦରଖାସ୍ତ ଦିଅନ୍ତି, ତେବେ ବାଳିକା ସ୍କୁଲରେ ଦଶମ ଓ ଏକାଦଶ ଶ୍ରେଣୀ ଖୋଲିବାକୁ ଚେଷ୍ଟା କରିବେ । ତତ୍କାଳୀନ ଶିକ୍ଷାମନ୍ତ୍ରୀ ଗୋଦାବରୀଶ ମିଶ୍ର ସମ୍ବଲପୁର ଗସ୍ତରେ ଆସିଥିବା ବେଳେ ତାଙ୍କ ସହିତ ସାକ୍ଷାତ୍ କରି ଭାରତଚନ୍ଦ୍ର ସମ୍ବଲପୁର ବାଳିକା ସ୍କୁଲକୁ ପୂର୍ଣ୍ଣାଙ୍ଗ ହାଇସ୍କୁଲରେ ପରିଣତ କରିବାକୁ ଅନୁରୋଧ କରିଥିଲେ । ସମ୍ବଲପୁରର କେତେକ ଭଦ୍ରବ୍ୟକ୍ତିଙ୍କ ସ୍ୱାକ୍ଷରରେ ସେହି ବର୍ଷ ଜୁଲାଇ ମାସ ଆରମ୍ଭରୁ ବାଳିକା ସ୍କୁଲରେ ଦଶମ ଓ ଏକାଦଶ ଶ୍ରେଣୀ ଖୋଲିବା ନିମିତ୍ତ ଦରଖାସ୍ତ ଦିଆଗଲା । ଚିଠିର କୌଣସି ଉତ୍ତର ନ ଆସିବାରୁ ସେ କଟକ ଯାଇ ବୁଝିଲେ ଯେ ରେଭେନ୍ସା ବାଳିକା ସ୍କୁଲ ସଂଲଗ୍ନ ହଷ୍ଟେଲ ଖୋଲା ହୋଇ (ଯୁଦ୍ଧ ପାଇଁ ଏହା ପୂର୍ବରୁ ବନ୍ଦଥିଲା) ଛାତ୍ରୀମାନେ ରହିଥିବାରୁ ଏ ସମ୍ପର୍କରେ ବିଚାର କରାଯାଇ ପାରିନାହିଁ । ଗୋଦାବରୀଶ ମିଶ୍ରଙ୍କୁ ସାକ୍ଷାତ୍ କରିବାରୁ ସେ ବୁଝିବେ ବୋଲି କହିଲେ । ସେ ଯାହାହେଉ ତାଙ୍କ ଉଦ୍ୟମ ଯୋଗୁଁ ବାଳିକା ବିଦ୍ୟାଳୟ ଏକ ପୂର୍ଣ୍ଣାଙ୍ଗ ବିଦ୍ୟାଳୟର ରୂପରେଖ ଗ୍ରହଣ କରିବାରୁ ଅନେକ ଶିକ୍ଷିତା ଝିଅ ସେଠାରୁ ଉତ୍ତୀର୍ଣ୍ଣ ହେବାର ଓ ଶିକ୍ଷା ଲାଭ କରିବାର ସୁଯୋଗ ପାଇଲେ ।

ସମ୍ବଲପୁରରେ ଦୁଇ ପ୍ରକାର ବ୍ରାହ୍ମଣ ଯଥା ଝାଡୁଆ ବ୍ରାହ୍ମଣ ଓ ଓଡ଼ିଆ ବ୍ରାହ୍ମଣ ବାସ କରୁଥିଲେ ହେଁ ସେମାନଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ସ୍ଥାପନ ସମ୍ଭବ ହେଉନଥିଲା । ବିଶେଷ କରି ଉଭୟ ବ୍ରାହ୍ମଣ ସଂପ୍ରଦାୟ ନିଜ ନିଜକୁ ଶ୍ରେଷ୍ଠ ବୋଲି ଭାବୁଥିବାରୁ ଏହି ବୈବାହିକ ସମ୍ବନ୍ଧକୁ ବିରୋଧ କରୁଥିଲେ । ମାତ୍ର ଭାରତଚନ୍ଦ୍ର ପ୍ରଥମେ ନିଜ କନ୍ୟାକୁ ଓଡ଼ିଆ ବ୍ରାହ୍ମଣ ଘରେ ବିବାହ ଦେଇ ଏହି ପରମ୍ପରାକୁ ଭାଙ୍ଗିଥିଲେ । ଏହାଦ୍ୱାରା ତାଙ୍କୁ ବାସନ୍ଦ କରାଯାଇଥିଲା; ମାତ୍ର ସେ ସେଥିରେ ଦବିଯାଇ ନଥିଲେ । ପରବର୍ତ୍ତୀ କାଳରେ ତାଙ୍କର ସେହି ସାହସିକ ପଦକ୍ଷେପ ଯୋଗୁଁ ଉଭୟ ସଂପ୍ରଦାୟ ମଧ୍ୟରେ ସଦ୍ଭାବ ବୃଦ୍ଧି ପାଇଥିଲା ।

ଶାରଦା ଆଇନ୍ ପ୍ରଣୟନ ପରେ ମଧ୍ୟ ସେତେବେଳେ ଓଡ଼ିଶାର ଅନେକ ସ୍ଥାନରେ ବାଲ୍ୟ ବିବାହର ପ୍ରଚଳନ ରହିଥିଲା । ସେ ତାଙ୍କର ଅଷ୍ଟମ କନ୍ୟା ଉମା ସକାଶେ ବିବାହ

ସମ୍ପର୍କରେ ଆଲୋଚନା କରିବାକୁ ପାଟଣାରେ ଇଞ୍ଜିନିୟରିଂ ପଢୁଥିବା ଭୁବନେଶ୍ୱର ବେହେରାଙ୍କ ପିତାଙ୍କ ସହିତ ସାକ୍ଷାତ କରିବାକୁ କଳାହାଣ୍ଡି ଯାଇଥିଲେ । ଭାରତଚନ୍ଦ୍ର ଅନୁଭବ କଲେ ସେ ଯାବତ୍ କଳାହାଣ୍ଡିରେ ବାଲ୍ୟ ବିବାହର ଗୁରୁତ୍ୱ ରହିଥିଲା । ଯୁବତୀ ବିବାହ ସମାଜରେ ଅନୁମୋଦିତ ଓ ପ୍ରବର୍ତ୍ତିତ ହୋଇନଥିବାରୁ ସେ ବିଷୟରେ ଶେଷ ନିଷ୍ପତ୍ତି ନହେବା ପର୍ଯ୍ୟନ୍ତ ଭୁବନେଶ୍ୱରଙ୍କ ସହିତ ଉମାର ବିବାହ ସମ୍ଭବ ନୁହେଁ ବୋଲି ତାଙ୍କ ପିତା ପରୋକ୍ଷରେ ସୂଚେଇ ଦେଇଥିଲେ । ମାତ୍ର ସେଠାକାର ଯୁବକମାନେ ଯୁବତୀ ବିବାହ ପାଇଁ ଅନୁକୂଳ ମତ ପୋଷଣ କରୁଥିଲେ । ସେମାନେ ସଭା କରି ଉପଯୁକ୍ତ ନିଷ୍ପତ୍ତି ନେବେବୋଲି ଭାରତଚନ୍ଦ୍ରଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ଯେଉଁଥିପାଇଁ ପରବର୍ତ୍ତୀ ସମୟରେ ଉମା ସହିତ ଭୁବନେଶ୍ୱରଙ୍କ ବିବାହ ସମ୍ଭବ ହୋଇପାରିଥିଲା । ନିଜର ବଡ଼ ନାତୁଣୀ ପାଇଁ ଭାରତଚନ୍ଦ୍ର ବରପାତ୍ର ଅନ୍ୱେଷଣରେ ସୋନପୁର, ବୌଦ୍ଧ ଓ ଆଠମଲ୍ଲିକ ଯାଇଥିବା ସମୟରେ ସୋନପୁରରେ ବାଲ୍ୟବିବାହ ପ୍ରଥାର ବହୁଳ ପ୍ରଚଳନ ଥିବାର ଲକ୍ଷ୍ୟ କରିଥିଲେ । ତାଙ୍କୁ ସୋନପୁର ସବ୍‌ଡ଼ିଭିଜନାଲ ଅଫିସର ରାମଚନ୍ଦ୍ର ତ୍ରିପାଠୀ କହିଥିଲେ 'ଏଠାରେ ୧୪ ବର୍ଷରୁ ଅଧିକ ବୟସ୍କ ଅବିବାହିତ ବାଳକ ମିଳିବା ଦୁଷ୍କର ।' ଭାରତଚନ୍ଦ୍ର ଅନୁଭବ କରିଥିଲେ ମହାରାଜାଙ୍କ ଉଦାସୀନତା ଓ ବ୍ରାହ୍ମଣମାନଙ୍କ ରକ୍ଷଣଶୀଳତା ଯୋଗୁଁ ବାଲ୍ୟବିବାହ ନିରୋଧ ଆଇନ୍ ଫଳପ୍ରସୂ ହୋଇ ପାରିନାହିଁ । ଏପରି ଏକ କୁସଂସ୍କାର ଓ ସମାଜ ଅହିତ ପ୍ରଥାକୁ କିପରି ସମ୍ପୂର୍ଣ୍ଣ ବିଲୋପ କରାଯାଇପାରିବ, ସେଥିପାଇଁ ସେ ବହୁତ ଚେଷ୍ଟା କରିଥିଲେ । ସେତେବେଳେ ସମାଜରେ ନାରୀ ଶିକ୍ଷାକୁ ବହୁ ଉଚ୍ଚଶିକ୍ଷିତ ମଧ୍ୟ ବିରୋଧ କରୁଥିଲେ । ଉଚ୍ଚଶିକ୍ଷିତମାନଙ୍କର ଏପରି ରକ୍ଷଣଶୀଳ ମନୋବୃତ୍ତିକୁ ଭାରତଚନ୍ଦ୍ର ସହଜରେ ଗ୍ରହଣ କରିପାରିନଥିଲେ ।ସମାଜର ବିରୋଧ ଓ ପ୍ରତିକୂଳ ଆଚରଣ ସତ୍ତ୍ୱେ ନାରୀ ଶିକ୍ଷାର ବିକାଶ ଓ ପ୍ରସାର ପାଇଁ ସେ ତାଙ୍କର ଉଦ୍ୟମ ଜାରି ରଖିଥିଲେ । ନାରୀଶିକ୍ଷା ପ୍ରତି ତାଙ୍କର ଏହି ସହାନୁଭୂତି ଏବଂ ନିଜ କନ୍ୟାମାନଙ୍କୁ ଶିକ୍ଷିତା କରିବାକୁ ତାଙ୍କର ଉଦ୍ୟମ ତାଙ୍କ ନିଜ ବନ୍ଧୁମାନଙ୍କୁ ମଧ୍ୟ ଶତ୍ରୁ କରିଦେଇଥିଲା । ତାଙ୍କର ଏପରି ମନୋବୃତ୍ତି ଯୋଗୁଁ ଝାଡୁଆପଡ଼ାର ସମ୍ଭ୍ରାନ୍ତ ସାନପୁଅ କେତେକ ଯୁବକଙ୍କ ସହିତ ମିଶି ତାଙ୍କ ପ୍ରତି ଅଶୋଭନୀୟ ଆଚରଣ ପ୍ରଦର୍ଶନ କରିଥିଲେ । ତାଙ୍କ ଅବିବାହିତା ଝିଅମାନଙ୍କ ନାମରେ ଅଶ୍ରାବ୍ୟ ଓ ଅଶ୍ଳୀଳ ଭାଷାରେ ପତ୍ରଲେଖି ପ୍ରେରଣ କରିଥିଲେ । ଘର ସମ୍ମୁଖରେ ଅଶୋଭନୀୟ ଆଚରଣ ଦେଖାଇଥିଲେ । ଏହାସତ୍ତ୍ୱେ ସେ ତାଙ୍କ ସଙ୍କଳ୍ପରୁ ବିଚ୍ୟୁତ ନହୋଇ ବରଂ ଅଧିକ ଉତ୍ସାହର ସହିତ ନାରୀଶିକ୍ଷାର ପ୍ରସାର ନିମିତ୍ତ ସକ୍ରିୟ ହୋଇଥିଲେ । ଭାରତଚନ୍ଦ୍ର ସମାଜର ସାମୂହିକ ବିକାଶରେ ଯେଉଁ ପ୍ରଥା ପ୍ରତିବନ୍ଧକ ସୃଷ୍ଟି କରୁଛି ବୋଲି ଅନୁଭବ କରୁଥିଲେ ତା'ର ଦୃଢ଼ ବିରୋଧ କରୁଥିଲେ ଓ ଯେଉଁ ପ୍ରଥାଦ୍ୱାରା ସାମାଜିକ ମଙ୍ଗଳ ହେବାର ସମ୍ଭାବନା ଥିଲା, ତାହାକୁ ଆନ୍ତରିକ ସମର୍ଥନ କରି କିପରି ତାହା ଜନସମୂହଙ୍କ ଦ୍ୱାରା ଗ୍ରହଣୀୟ ହୋଇପାରିବ ସେଥିପାଇଁ ଜନସଚେତନତା ସୃଷ୍ଟି କରୁଥିଲେ ।

**ସାହିତ୍ୟ ସୃଷ୍ଟି:-** ଭାରତଚନ୍ଦ୍ର କଥାସାହିତ୍ୟ, କବିତା ବା ନାଟକାଦି ରଚନା କରି ନଥିଲେ ମଧ୍ୟ ସାହିତ୍ୟ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ରହିଥିଲା । ସେ ଥିଲେ ଜଣେ ବହୁପାଠୀ ବ୍ୟକ୍ତିତ୍ୱ । ମଧ୍ୟଯୁଗୀୟ ସାହିତ୍ୟଠାରୁ ଆରମ୍ଭ କରି ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ- ସବୁ ସାହିତ୍ୟକୁ ସେ ଶ୍ରଦ୍ଧାର ସହିତ ପାଠ କରୁଥିଲେ ଓ ଆବଶ୍ୟକ ବେଳେ ତାହାର ବ୍ୟାଖ୍ୟାନ ମଧ୍ୟ କରୁଥିଲେ । ରାଧାନାଥଙ୍କ କାବ୍ୟ କବିତା; ଭକ୍ତକବି ମଧୁସୂଦନଙ୍କ ଭକ୍ତିପୂର୍ଣ୍ଣ କବିତାବଳୀ; ରାମ ଶଙ୍କର ରାୟଙ୍କର ବିବାସିନୀ ଉପନ୍ୟାସ, କାଞ୍ଚିକାବେରୀ ନାଟକ; ନନ୍ଦକିଶୋରଙ୍କ ପଲ୍ଲିଚିତ୍ର, ନିର୍ଝରିଣୀ, ବସନ୍ତକୋକିଳ, କୃଷ୍ଣାକୁମାରୀ, ସୀତା ବନବାସ; ଗଙ୍ଗାଧରଙ୍କ ଇନ୍ଦୁମତୀ, କୀଚକ ବଧ, ବିଭିନ୍ନ କ୍ଷୁଦ୍ର କବିତା; ଗୋପୀନାଥ ନନ୍ଦଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନ, ଓଡ଼ିଆ ଭାଷାତତ୍ତ୍ୱ, ମେଘଦୂତର ଅନୁବାଦ; ଫକୀରମୋହନଙ୍କ କଥାସାହିତ୍ୟ: ଗୋପାଳଚନ୍ଦ୍ର ପ୍ରହରାଜଙ୍କ ରାମ୍ୟରଚନା ଆଦିକୁ ସେ ବେଶ୍ ଶ୍ରଦ୍ଧାର ସହିତ ପାଠ କରିଥିଲେ । ସାମସମୟିକ ସାହିତ୍ୟିକ ପାଣିପାଗ ସମ୍ପର୍କରେ ସେ ସଂପୂର୍ଣ୍ଣ ସଚେତନ ରହିଥିଲେ । ଥରେ ଭାରତଚନ୍ଦ୍ର ବଙ୍ଗ ସାହିତ୍ୟର ବିଶିଷ୍ଟ ଲେଖକ ପ୍ରଫୁଲ୍ଲ କୁମାର ସରକାରଙ୍କ ସହିତ ବନ୍ୟାଞ୍ଚଳ ପରିଦର୍ଶନରେ ଯାଉଥିବା ସମୟରେ ଶ୍ରୀଯୁକ୍ତ ସରକାର ଓଡ଼ିଆ ସାହିତ୍ୟ ନିକୃଷ୍ଟ ଓ ଯାହା ରଚିତ ତାହା ବଙ୍ଗ ସାହିତ୍ୟର ଅନୁକରଣ ବୋଲି କହି ରାଧାନାଥଙ୍କ କାବ୍ୟ ଏହି ଶ୍ରେଣୀୟ ବୋଲି ମତ ଦେବାରୁ ଭାରତଚନ୍ଦ୍ର ତା'ର ଉତ୍ତରରେ କହିଥିଲେ, ଆଧୁନିକ ସାହିତ୍ୟରେ କେତେକ କ୍ଷେତ୍ରରେ ତାହା ପ୍ରଯୁଜ୍ୟ ହୋଇପାରେ; ମାତ୍ର ପ୍ରାଚୀନ ସାହିତ୍ୟ କ୍ଷେତ୍ରରେ ଆଦୌ ନୁହେଁ । ଏହା କହିବା ପରେ ସେ ବିଦଗ୍ଧ ଚିନ୍ତାମଣି, ବୈଦେହୀଶ ବିଳାସ, ରସକଲ୍ଲୋଳ ଆଦି କାବ୍ୟରୁ କେତେକାଂଶ ଆବୃତ୍ତି କରି ଏଥିରେ ଥିବା ଛନ୍ଦ ବୈଚିତ୍ର୍ୟ, ଯମକ, ଅନୁପ୍ରାସାଦି ଅଳଙ୍କାର ସମ୍ପର୍କରେ ବ୍ୟାଖ୍ୟ କରିବାରୁ ଶ୍ରୀଯୁକ୍ତ ସରକାର ନିଜ ତ୍ରୁଟି ବୁଝିପାରି କହିଥିଲେ ଏପରି କଥା ମୁଁ କେବେ ଶୁଣି ନାହିଁ । ଏଣୁ ଭାରତଚନ୍ଦ୍ର ତାଙ୍କ ଆତ୍ମଜୀବନୀରେ କହିଛନ୍ତି "ବଙ୍ଗାଳୀମାନଙ୍କ ପ୍ରଧାନ ଦୋଷ ଏହି ଯେ, ନିଜ ସାହିତ୍ୟ ଛଡ଼ା ଭାରତବର୍ଷର ଅନ୍ୟ ଜାତିର ସାହିତ୍ୟ ପଢ଼ନ୍ତି ନାହିଁ । ଅଥଚ ତାହାର ପ୍ରତିକୂଳ ସମାଲୋଚନା କରନ୍ତି ।" (ପୃ-୧୨୪) ଓଡ଼ିଆ ପ୍ରାଚୀନ କାବ୍ୟର ଅନେକ ଛାନ୍ଦ ତାଙ୍କର ମୁଖସ୍ଥ ରହିଥାଏ । ଯାଜପୁରରେ ଚାକିରି କରିଥିବା ସମୟରେ ସନ୍ଧ୍ୟା ସମୟରେ ସେ ରାଗରାଗିଣୀରେ ତା'ର ଆବୃତ୍ତି କରିଥାନ୍ତି ଏବଂ ଜିଲ୍ଲାଦାର ବ୍ରହ୍ମାନନ୍ଦ ମହାନ୍ତି ହାରମୋନିୟମ ବଜାନ୍ତି । ତାଙ୍କର ଏହି ଗୁଣଯୋଗୁଁ ସେ ଯାଜପୁରର ଉନ୍ନତ ସଂପ୍ରଦାୟଙ୍କ ବିଶେଷ ପ୍ରିୟପାତ୍ର ହୋଇପାରିଥିଲେ ।

'ନବଜୀବନ' ପତ୍ରିକା ଓ ତା'ର ସଂପାଦକ ଚିନ୍ତାମଣି ମିଶ୍ରଙ୍କ ସହିତ ଭାରତଚନ୍ଦ୍ରଙ୍କ ନିବିଡ଼ ସମ୍ପର୍କ ରହିଥିଲା । ଭାରତଚନ୍ଦ୍ରଙ୍କ ତିରୋଧାନ ପରେ 'ସମ୍ବାଦ ଓ ସଙ୍କେତ' ପର୍ଯ୍ୟାୟରେ ନବଜୀବନର ସମ୍ପାଦକ ୧୪ଶ ବର୍ଷ ୧୦ମ ସଂଖ୍ୟା ଅର୍ଥାତ୍ ଫେବୃଆରୀ ୧୯୭୦ରେ

ତାଙ୍କର ବିଶେଷତ୍ୱ ସମ୍ପର୍କରେ ମତ ଦେଇ ଲେଖିଥିଲେ- "ଥରେ ମୁଁ ତାଙ୍କୁ ପଚାରିଲି, ଏ ବୟସରେ ସେ ଏତେ ଲେଖାପଢ଼ି କରିପାରୁଛନ୍ତି କିପରି ? ସେ ଉତ୍‌ଫୁଲ୍ଲ ହୋଇ ଉତ୍ତର ଦେଲେ 'ନବ ଜୀବନ'ରେ ବାହାରିବ ବୋଲି ଖାଲି ଲେଖେ ନାହିଁ, କି ଅବସର ବିନୋଦନ ପାଇଁ ଲେଖେ ନାହିଁ; ମୁଁ ସାହିତ୍ୟ ସେବାକରେ ମୋ ମନର ଅବସାଦ ଦୂର କରିବା ପାଇଁ । ତା'ପରେ ଉଠିଯାଇ ତାଙ୍କ ଆଲମାରୀର ସଯତ୍ନ ସଜ୍ଜିତ ଥାକରୁ ସେ ଥାକେ ଖାତା ବାହାର କଲେ । ବିସ୍ମିତ ହୋଇ ଦେଖିଲି, ଶ୍ରୀମଦ୍ ଭାଗବତ ଦଶମ ଓ ଏକାଦଶ ସ୍କନ୍ଧର ଅତି ଚମତ୍କାର ଗଦ୍ୟାନୁବାଦ- ଖାତାର ଗୋଟିଏ ପାଖରେ ସଂସ୍କୃତ ଶ୍ଳୋକ ଓ ଆର ପାଖରେ ଅନୁବାଦ । 'ବେଦସ୍ତୁତି' ବାହାର କରି ପଢ଼ିଲି । ଅନୁବାଦରେ ବେଦସ୍ତୁତିର ଜଟିଳ ଭାଷା ଓ ଭାବ ଭିତରକୁ ପଶିପାରିଛନ୍ତି । କାଗଜରୁ ଲକ୍ଷ୍ୟ କଲି, ବହୁ ବର୍ଷ ପୂର୍ବର ଲେଖା; କହିଲେ 'ସତ୍ୟଗୋପାଳର (ବଡ଼ ପୁଅ, କି ବିଚକ୍ଷଣ ! କେଡ଼େ ଭଦ୍ର ! ଓକିଲ ଓ ଜନନାୟକ ଭାବେ ଉଠି ଆସୁଥିଲେ) ମୃତ୍ୟୁ ଓ ତତ୍ ପରବର୍ତ୍ତୀ ପାରିବାରିକ ବିପର୍ଯ୍ୟୟରେ ମୁହ୍ୟମାନ ହୋଇଥାଏ । ଦିନେ ରାତି ଅଧରେ ମନେହେଲା, ଦଶମ ସ୍କନ୍ଧର ଅନୁବାଦ କଲେ ଶାନ୍ତି ଆସିପାରେ । ଉଠି ଆରମ୍ଭ କଲି । ଆରମ୍ଭ ଯେତେବେଳେ କଲି, ସାରିବାକୁ ପଡ଼ିଲା । ତା'ପରେ ଅଭ୍ୟାସ ହୋଇଗଲା, ଏକାଦଶ ବି ସାରି ଦେଇଛି ।"

ମୁଁ ପଚାରିଲି- ଉଦ୍ଦେଶ୍ୟ ସିଦ୍ଧି ହେଲା ?

ସେ କହିଲେ, ଉଦ୍ଦେଶ୍ୟ ସିଦ୍ଧ ନ ହୋଇଥିଲେ ଆଜିଯାଏ କ'ଣ ଥାନ୍ତି !" ମନେ ମନେ ତାଙ୍କୁ ପ୍ରଣାମ କରୁଛି । ସାହିତ୍ୟ ସାଧନାର ଏ ଉପଯୋଗ ସେତେବେଳେ ଜାଣିନଥିଲି । ଯାବାଦ୍ ରାଜ ତରଙ୍ଗିଣୀ, ସୌନ୍ଦରାନନ୍ଦ କାବ୍ୟ ଓ କାଦମ୍ବରୀ ଉପନ୍ୟାସର ସେ ଅନୁବାଦ ମଧ୍ୟ କରିଛନ୍ତି । ଏସବୁର ମୁଦ୍ରଣ ପାଇଁ ତାଙ୍କର ଆକାଂକ୍ଷା ଥିଲା ଓ ଏଇ ୧୯୭୦ ଖ୍ରୀଷ୍ଟାବ୍ଦ ଭିତରେ ଏହି ତିନୋଟି ଅନୁବାଦ ଗ୍ରନ୍ଥର ମୁଦ୍ରଣ ଶେଷ କରିବାକୁ ସେ ଯୋଜନା କରିଥିଲେ । ତାଙ୍କର ଅପୂର୍ଣ୍ଣ ବାସନା ପୂରଣ କରିବାର ଦାୟିତ୍ୱ ବର୍ତ୍ତମାନ ତାଙ୍କର ଦାୟାଦମାନଙ୍କ ଉପରେ ।" (ପୃ-୬୬୧) ସଂପାଦକଙ୍କ ଏହି ସ୍ୱୀକାରୋକ୍ତିରୁ ଭାରତଚନ୍ଦ୍ରଙ୍କ ସୃଷ୍ଟି ତଥା ସାହିତ୍ୟ ପ୍ରତି ରହିଥିବା ତାଙ୍କ ଆନ୍ତରିକ ଆତ୍ମୀୟତା ଭାବର ସୂଚନା ମିଳିଥାଏ ।

ନବଜୀବନର ସେହି ସଂଖ୍ୟାରେ 'ସମ୍ବାଦ ଓ ସଙ୍କେତ' ପର୍ଯ୍ୟାୟରେ ସମ୍ପାଦକ ଶ୍ରୀଯୁକ୍ତ ମିଶ୍ର '୰ ଭାରତଚନ୍ଦ୍ର' ଶିରୋନାମାରେ ତାଙ୍କର ଭାଷାପ୍ରୀତି ସମ୍ପର୍କରେ ଉଲ୍ଲେଖ କରି କହିଛନ୍ତି- "ସମ୍ବଲପୁରୀ ଶବ୍ଦସମ୍ଭାର ଓଡ଼ିଆ ଭାଷାରେ କିପରି ପଶିବ, ସେ ବିଷୟରେ ଆଲୋଚନା କରି କେତୋଟି ପ୍ରବନ୍ଧ ଲେଖିବାକୁ ତାଙ୍କୁ ଅନୁରୋଧ କଲୁ । ସାଙ୍ଗେ ସାଙ୍ଗେ କାମ ଆରମ୍ଭ ହୋଇଗଲା । ପ୍ରାୟ ଶହେ ଖଣ୍ଡେ ଶବ୍ଦର ଏଭଳି ଗୋଟିଏ ତାଲିକା କଲେ, ଯାହା ତତ୍‌ସମ ପ୍ରତିଶବ୍ଦ ପ୍ରଚଳିତ ଓଡ଼ିଆ ଭାଷାରେ ନଥିଲା ପରି ମନେହେଲା । ପ୍ରତ୍ୟେକ

ଶବ୍ଦର ବ୍ୟୁତ୍ପତ୍ତି କରି ସେ ଦେଖାଇଥିଲେ ସେଗୁଡ଼ିକ ସଂସ୍କୃତ ଭାଷାରୁ ଆହୃତ; ଲୋକ ମୁଖରେ ଏଭଳି ରୂପ ନେଇଛି, ଦେଖିଲେ ଆପାତତଃ ମନେ ହେଉଛି, ତାହାର ଉତ୍ପତ୍ତି ସମ୍ବଲପୁରର ଲୋକମୁଖରୁ ।" (ପୃ-୬୬୦)

ତାଙ୍କର ବିଶ୍ବାସ ଥିଲା- ସମ୍ବଲପୁରୀ ଭାଷା ଓଡ଼ିଆ ଠାରୁ ସ୍ୱତନ୍ତ୍ର ହୋଇ ଚାଲୁହେବା ସମ୍ଭବ ନହେଲେ ସୁଦ୍ଧା ଓଡ଼ିଆ ଭାଷାକୁ ପ୍ରାଞ୍ଜଳ ଶବ୍ଦ ସମ୍ଭାରରେ ସମୃଦ୍ଧ କରିପାରିବ ଏବଂ ଓଡ଼ିଆ ଭାଷାର ଲେଖକମାନେ ସେ ଶବ୍ଦଗୁଡ଼ିକୁ ଶୀଘ୍ର ଆହରଣ କରି ଆଞ୍ଚଳିକ ସଂହତି ରକ୍ଷା କରିବା ଦିଗରେ ଯତ୍ନବାନ୍ ହେବା ଉଚିତ୍ ।"

ସମ୍ପାଦକ 'ନବ ଜୀବନ'ରେ ତାଙ୍କର ଅନୁବାଦ ଗ୍ରନ୍ଥମାନଙ୍କ ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି । ମାତ୍ର ସେଗୁଡ଼ିକ ପ୍ରକାଶନର ଆଲୋକ ଦେଖିବାରେ ସମର୍ଥ ହୋଇନଥିବାରୁ ସେ ସମ୍ପର୍କରେ କୌଣସି ମତାମତ ପ୍ରଦାନ ସମ୍ଭବ ନୁହେଁ । ହୁଏତ କାଳଗର୍ଭରେ ବହୁ ମୂଲ୍ୟବାନ୍ ସମ୍ପତ୍ତି ପରି ସେଗୁଡ଼ିକ ମଧ୍ୟ ନଷ୍ଟ ହୋଇଯାଇଛି । ବଣେଇରେ କାର୍ଯ୍ୟ କରୁଥିବା ସମୟରେ କର୍ମଜଞ୍ଜାଳ ମଧ୍ୟରେ ରହି ମଧ୍ୟ କାଳିଦାସଙ୍କ 'କୁମାର ସମ୍ଭବମ୍' ସଂସ୍କୃତ କାବ୍ୟର ଓଡ଼ିଆ ଅନୁବାଦ କରିଥିଲେ । ପରବର୍ତ୍ତୀ ସମୟରେ ତାହାକୁ ସଂଶୋଧନ କରି ୧୯୨୭ ମସିହାରେ ଛପାଇ ପ୍ରକାଶ କରିଥିଲେ । କାଳିଦାସଙ୍କ କାବ୍ୟର ଭାବକୁ ଅକ୍ଷୁର୍ଣ୍ଣ ରଖି ସେ ଯଥାସମ୍ଭବ ସରଳ ଓଡ଼ିଆ ଭାଷାରେ ତା'ର ଅନୁବାଦ କରିବାକୁ ଚେଷ୍ଟା କରିଛନ୍ତି । ଅନୁବାଦରୁ ତାଙ୍କର ଦକ୍ଷତା ସ୍ପଷ୍ଟ ବାରିହୋଇ ପଡ଼ିଥାଏ । ଭାରତଚନ୍ଦ୍ର ଯେଉଁ ଦୁଇଟି ଗ୍ରନ୍ଥପାଇଁ ଅମର ହୋଇ ରହିପାରିଛନ୍ତି ତାହାହେଲା ତାଙ୍କର ଆତ୍ମଜୀବନୀ "ମୋର ପୂର୍ବ ସ୍ମୃତି କଥା" ଏବଂ "ହୁଏନ୍ ସାଂ ଓ ତାହାଙ୍କ ଭାରତ-ଭ୍ରମଣ" ଅନୁବାଦ ଗ୍ରନ୍ଥ । "ମୋର ପୂର୍ବ ସ୍ମୃତି କଥା" ୧୯୬୬ ମସିହାରେ ଏବଂ 'ହୁଏନ୍‌ସାଂ ଓ ତାହାଙ୍କ ଭାରତ-ଭ୍ରମଣ' ୧୯୪୦ ମସିହାରେ ପ୍ରକାଶିତ । ଆତ୍ମଜୀବନଟିକୁ ଲେଖକ ନିଜେ ପ୍ରକାଶ କରିଥିଲେ । କିନ୍ତୁ 'ହୁଏନ୍‌ସାଂ ଓ ତାହାଙ୍କ ଭାରତ- ଭ୍ରମଣ' ଗ୍ରନ୍ଥଟି ଓଡ଼ିଶା ସରକାରଙ୍କ ଆର୍ଥିକ ସହାୟତାରେ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ପ୍ରକାଶିତ ହୋଇଥିଲା ।

'ମୋର ପୂର୍ବ ସ୍ମୃତି କଥା'- ଏକ ଚମତ୍କାର ଆତ୍ମଜୀବନୀ । ଏହି ଗ୍ରନ୍ଥଟିରେ ଲେଖକ ବାଲ୍ୟ ଜୀବନଠାରୁ ଆରମ୍ଭ କରି ତାଙ୍କର ପ୍ରଶାସନ ଜୀବନର ଅନୁଭୂତି, ସମକାଳୀନ ଓଡ଼ିଶା ଓ ଭାରତର ସାମାଜିକ, ରାଜନୀତିକ, ଆର୍ଥନୀତିକ, ସାଂସ୍କୃତିକ ଜୀବନ ଚିତ୍ରକୁ ବେଶ୍ ତଥ୍ୟ-ପ୍ରମାଣାଦି ମାଧ୍ୟମରେ ଆଲୋଚନା କରିଛନ୍ତି । ତତ୍‌କାଳୀନ ଭାରତବର୍ଷର ଜାତୀୟ ଜୀବନ, ଲୋକ ମାନସିକତା, ଭାଷାଗତ ଆନ୍ଦୋଳନ, ରକ୍ଷଣଶୀଳତା, ରଢ଼ିବାଦୀ ଚିନ୍ତାଧାରା, କୁସଂସ୍କାର ଆଦିକୁ ମଧ୍ୟ ବାସ୍ତବତାର ପଟ୍ଟଭୂମିରୁ ଆଲୋକପାତ କରିଛନ୍ତି । ତାଙ୍କ ଆତ୍ମଜୀବନୀରେ ପରିଲକ୍ଷିତ ବିଭିନ୍ନ ଘଟଣାବଳୀକୁ ଏକ ସ୍ୱତନ୍ତ୍ର ପରିଚ୍ଛେଦରେ ଆଲୋଚନା

କରାଯାଉଥିବାରୁ ଏଠାରେ ସେ ସମ୍ପର୍କରେ ସବିଶେଷ ଆଲୋଚନା କରାଯାଉନାହିଁ । ତାଙ୍କର ଆତ୍ମ ଜୀବନୀ ସ୍ୱୟଂସମ୍ପୂର୍ଣ୍ଣ ନୁହେଁ । ସେ ତାଙ୍କ ଜୀବନାନୁଭୂତିର ଅନ୍ୟ କେତେକ କଥା 'ନାନା କଥା' ଶିରୋନାମାରେ ଲେଖିବାକୁ ଆରମ୍ଭ କରିଥିଲେ, ମାତ୍ର ତିରୋଧାନ ଯୋଗୁଁ ତାହା ପୂର୍ଣ୍ଣାଙ୍ଗ ରୂପ ପାଇପାରିନଥିଲା । ନଚେତ୍ ସମକାଳୀନ ଭାରତ ତଥା ଓଡ଼ିଶାର ଅନେକ ଘଟଣା ପାଠକମାନେ ଜାଣିବାକୁ ସମର୍ଥ ହୋଇଥାନ୍ତେ । "ହୁଏନ୍‌ସାଂ ଓ ତାହାଙ୍କ ଭାରତ-ଭ୍ରମଣ" ଏକ ମୂଲ୍ୟବାନ୍ ଅନୁବାଦ ଗ୍ରନ୍ଥ । ଏହି ଗ୍ରନ୍ଥଟିକୁ ସେ ଏସ୍. ବିଲ୍‌ଙ୍କ 'The life of Hiuen- Tsiang' ଗ୍ରନ୍ଥରୁ ଅନୁବାଦ କରିଛନ୍ତି । ଅନୁବାଦରେ ମୌଳିକତା ପ୍ରତିକ୍ଷେତ୍ରରେ ଲକ୍ଷଣୀୟ । ଭାରତବର୍ଷରେ ହୁଏନ୍‌ସାଂ ଦୀର୍ଘ ୧୪ ବର୍ଷ କାଳ ଅତିବାହିତ କରିଥିବା ସମୟରେ ଯେଉଁ ସ୍ଥାନମାନଙ୍କୁ ଯାଇଥିଲେ, ସେ ସ୍ଥାନର ଭୌଗୋଳିକ ବିବରଣୀ ସହିତ, ସାଂସ୍କୃତିକ, ସାମାଜିକ ଓ ଧାର୍ମିକ ବାସ୍ତବଚିତ୍ରକୁ ପ୍ରଦାନ କରିଛନ୍ତି । ଜଣେ ପରିବ୍ରାଜକର ପ୍ରସାରିତ ଓ ସୂକ୍ଷ୍ମଦୃଷ୍ଟିଭଙ୍ଗୀକୁ ପାଠକମାନେ ଭେଟିପାରିବେ ଏହି ଗ୍ରନ୍ଥଟିରେ । ଗୋଟିଏ ସ୍ୱତନ୍ତ୍ର ପରିଚ୍ଛେଦରେ ଏହି ଗ୍ରନ୍ଥଟି ସମ୍ପର୍କରେ ମଧ୍ୟ ସବିଶେଷ ଆଲୋଚନା କରାଯାଉଛି । ପ୍ରଶାସନିକ ଜୀବନରେ ଯେଉଁ ଅଳ୍ପ ସମୟ ପାଇଛନ୍ତି, ସେ ତା'ର ସଦ୍ ବିନିଯୋଗ କରିଛନ୍ତି ଗ୍ରନ୍ଥ ପଠନ ଓ ଲିଖନରେ । ଏହି ଦୃଷ୍ଟିରୁ ସମକାଳୀନ ଓଡ଼ିଶାରେ ଭାରତଚନ୍ଦ୍ରଙ୍କ ବ୍ୟକ୍ତିତ୍ୱ ଥିଲା ସ୍ୱତନ୍ତ୍ର ।

ଉପସଂହାର- ଜଣେ କାର୍ଯ୍ୟଦକ୍ଷ, କର୍ତ୍ତବ୍ୟନିଷ୍ଠ ପ୍ରଶାସକ ଭାବରେ ଭାରତଚନ୍ଦ୍ର ସମକାଳୀନ ଓଡ଼ିଶାରେ ଯେପରି ପ୍ରସିଦ୍ଧି ଲାଭ କରିଥିଲେ, ଅନୁରୂପ ଜଣେ ସାହିତ୍ୟିକ ଓ ପାଠକ ଭାବରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବାକୁ ସମର୍ଥ ହୋଇପାରିଥିଲେ । ତାଙ୍କର ସମଗ୍ର ଚାକିରି ଜୀବନକାଳ ଅତିବାହିତ ହୋଇଥିଲା ଇଂରେଜ ସରକାରଙ୍କ ଅଧୀନରେ । ମାତ୍ର ଚାକିରି ଜୀବନରୁ ଅବ୍ୟାହତ ନେବାପରେ ସେ ପ୍ରାୟ ୨୮ ବର୍ଷ ବଞ୍ଚି ରହିଥିଲେ । ଏଣୁ ସେ ପରାଧୀନ ଏବଂ ସ୍ୱାଧୀନ ଭାରତବର୍ଷକୁ ଅଙ୍ଗେ ନିଭେଇଛନ୍ତି । ସେହି ସମୟର ସାମାଜିକ, ସାଂସ୍କୃତିକ ଜୀବନ ସହିତ ନିଜକୁ ଓତପ୍ରୋତ ଜଡ଼ିତ କରିଛନ୍ତି । ସମାଜର ଧରାବାନ୍ଧା ଜୀବନର ଉଭୟ ସାକାର ଓ ବିପରୀତ ଦିଗକୁ ଜଣେ ସମାଜତତ୍ତ୍ୱବିତ୍ ଭାବରେ ଲକ୍ଷ୍ୟ କରିଛନ୍ତି । ତଥାକଥିତ ରକ୍ଷଣବାଦୀ ଚିନ୍ତାଧାରା ବିରୋଧରେ ପ୍ରତିକ୍ରିୟାଶୀଳ ହୋଇ ପରିବର୍ତ୍ତନ ପାଇଁ ଆହ୍ୱାନ ଦେଇଛନ୍ତି । ପ୍ରତିରୋଧର ସମ୍ମୁଖୀନ ହୋଇ ମଧ୍ୟ ନିଜ ଗଠନମୂଳକ ଚିନ୍ତାଧାରାରୁ ଅବ୍ୟାହତ ନେଇ ନାହାନ୍ତି; ବରଂ ତାକୁ ଫଳବତୀ କରିବାକୁ ଚେଷ୍ଟା କରିଛନ୍ତି । ଯେଉଁ ଅବସର ସମୟ ପାଇଛନ୍ତି, ପଠନ- ପାଠନରେ ତାହାକୁ ବିନିଯୁକ୍ତ କରିଛନ୍ତି । ଜଣେ ସମ୍ବେଦନଶୀଳ ପାଠକ ଭାବରେ ମଧ୍ୟ ତାଙ୍କର ଖ୍ୟାତି ରହିଛି । ଏକାଧାରାରେ ଭାରତଚନ୍ଦ୍ର ଥିଲେ ସମକାଳୀନ ଓଡ଼ିଶାର ଜଣେ ଉତ୍ତମ ପ୍ରଶାସକ, ଉତ୍ତୁଙ୍ଗ ଚିନ୍ତାନାୟକ, ସମ୍ବେଦନଶୀଳ ସମାଜ ସଂସ୍କାରକ ଓ ବୌଦ୍ଧିକ ସାହିତ୍ୟ ପ୍ରିୟ ବ୍ୟକ୍ତିତ୍ୱ ।



# ଦ୍ୱିତୀୟ ପରିଚ୍ଛେଦ

# ମୋର ପୂର୍ବ ସ୍ମୃତିକଥା : କିଛି ସତ୍ୟ କିଛି ତଥ୍ୟ :

ଉପକ୍ରମ:- ଆତ୍ମଜୀବନୀ ସମ୍ପର୍କରେ ପଣ୍ଡିତମାନଙ୍କ ମଧ୍ୟରେ ପରସ୍ପର ବିରୋଧୀ ମନ୍ତବ୍ୟ ପରିଲକ୍ଷିତ ହୋଇଥାଏ । କେହି କେହି ଆତ୍ମଜୀବନୀକୁ ମିଥ୍ୟା ଏବଂ ପ୍ରତ୍ୟେକ ଆତ୍ମଜୀବନୀକାରଙ୍କୁ ମିଥ୍ୟାବାଦୀ ବୋଲି ଘୋଷଣା କରିବା ସମୟରେ, ଅନ୍ୟ କେହି ବିଶିଷ୍ଟ ବ୍ୟକ୍ତିଙ୍କ ଆତ୍ମଜୀବନୀକୁ ଜାତିର ବିକାଶ ଓ ପ୍ରଗତିର ନନ୍ଦିଘୋଷ ବୋଲି ମତଦେଇଥାନ୍ତି । ତେବେ ସବୁ ଆତ୍ମଜୀବନୀ ମିଥ୍ୟା ନୁହେଁ କିମ୍ବା ସବୁ ଆତ୍ମଜୀବନୀ ଜାତିର ନନ୍ଦିଘୋଷ ମଧ୍ୟ ନୁହେଁ । ଏହାସତ୍ତ୍ୱେ ସାମସମୟିକ ସମାଜଜୀବନ ତଥା ବ୍ୟକ୍ତିତ୍ୱକୁ ଜାଣିବା କ୍ଷେତ୍ରରେ ସଚେତନ ଆତ୍ମଜୀବନୀକାରଙ୍କ ଆତ୍ମଜୀବନୀ ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରେ, ଏହାକୁ ଅସ୍ୱୀକାର କରାଯାଇନପାରେ । ଭାରତଚନ୍ଦ୍ର ନାୟକଙ୍କ ଆତ୍ମଜୀବନୀ "ମୋର ପୂର୍ବ ସ୍ମୃତିକଥା" ସମକାଳୀନ ଓଡ଼ିଶାର ବହୁ ଘଟଣା ଓ ବିବରଣୀର ସତ୍ୟନିଷ୍ଠ ଉଚ୍ଚାରଣ । ଦୀର୍ଘ ପାଞ୍ଚବର୍ଷକାଳ ଏହି ଆତ୍ମଜୀବନୀଟି ଧାରାବାହିକ ଭାବେ 'ନବ ଜୀବନ' ପତ୍ରିକାର କଳେବର ମଣ୍ଡନ କରିଥିଲା ଏବଂ ସେହି ଅନୁଭୂତିମୂଳକ 'ସ୍ମୃତିକଥା' ପରବର୍ତ୍ତୀ ସମୟରେ ୧୯୬୬ ମସିହାରେ 'ମୋର ପୂର୍ବ ସ୍ମୃତିକଥା' ଶିରୋନାମାରେ ସ୍ୱତନ୍ତ୍ର ପୁସ୍ତକ ରୂପରେ ଆତ୍ମ ପ୍ରକାଶ କରିଥିଲା । ଧାରାବାହିକ ଭାବେ 'ସ୍ମୃତିକଥା' ଶୀର୍ଷକରେ ପ୍ରକାଶ ପାଉଥିବା ସମୟରେ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି ତାହା ପାଠକରି ମୁଗ୍ଧ ହୋଇଥିଲେ ଏବଂ ତାହାକୁ ପୁସ୍ତକ ରୂପେ ପ୍ରକାଶ କରିବାପାଇଁ ଲେଖକଙ୍କୁ ଅନୁରୋଧ କରିଥିଲେ । ସାମସମୟିକ ଓଡ଼ିଶାର ରାଜନୀତି, ସମାଜ, ଶିକ୍ଷା, ଜାତୀୟ ଘଟଣାବଳୀ, ବ୍ୟକ୍ତିଚରିତ୍ର, ସ୍ୱତନ୍ତ୍ର ଉତ୍କଳ-ପ୍ରଦେଶ ଗଠନଠାରୁ ସ୍ୱାଧୀନତା ଆନ୍ଦୋଳନ ପର୍ଯ୍ୟନ୍ତ ଘଟଣାବଳୀ ସହିତ ନାରୀଶିକ୍ଷା, ଭାଷା ଆନ୍ଦୋଳନ, ଜନସାଧାରଣଙ୍କ ଅନ୍ଧ ବିଶ୍ୱାସ, ପ୍ରଶାସନିକ ଅବସ୍ଥା, ବିଚାର ବ୍ୟବସ୍ଥା, ଲୋକମାନଙ୍କର ରଢ଼ିବାଦୀ ଓ ରକ୍ଷଣଶୀଳ ଚିନ୍ତାଧାରା ଆଦି ବିଭିନ୍ନ ବିଷୟରେ ପ୍ରତ୍ୟକ୍ଷ ବିବରଣୀ ଏଥିରେ ସ୍ଥାନ ପାଇଛି । ଆହୁରି ଅନେକ ଘଟଣା ଗ୍ରନ୍ଥର କଳେବରକୁ ଦୃଷ୍ଟିରେ ରଖି ଲେଖକ ବାଦ୍ ଦେଇଛନ୍ତି । ତେଣୁ ଆତ୍ମଜୀବନୀର ଉପସଂହାରରେ ସେ କହିଛନ୍ତି- "ପ୍ରାୟ ପାଞ୍ଚବାର୍ଷିକାଳ ମଧ୍ୟରେ 'ନବ

ଜୀବନ' ମାସିକ ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶିତ "ମୋର ପୂର୍ବ ସ୍ମୃତିକଥା" ସବୁର ନାମକୁ ଉପସଂହାର ହୋଇଅଛି; ଭାବକୁ ହୋଇନାହିଁ । ଲେଖୁ ଲେଖୁ ଯେଉଁ ମୁଖ୍ୟ ମୁଖ୍ୟ କଥାମାନ ସ୍ମୃତି ପଥରେ ଉଦିତ ହେଲା ସେ ସମସ୍ତ ଲିପିବଦ୍ଧ କରିଗଲି । ତନ୍ମଧ୍ୟରେ ଆଉ କେତେ କ୍ଷୁଦ୍ର କ୍ଷୁଦ୍ର ଘଟଣା ସଂକ୍ରାନ୍ତ କଥା ଲିପିବଦ୍ଧ ହେବାଯୋଗ୍ୟ ହୋଇଥିଲେହେଁ ଲେଖାଗୁଡ଼ିକର କଳେବର ବୃଦ୍ଧି ଓ ତଜ୍ଜନିତ ପାଠକ-ପାଠିକାଙ୍କ ଧୈର୍ଯ୍ୟଚ୍ୟୁତି ଓ ବିତୃଷ୍ଣା ଉଦ୍ରେକ ଭୟରେ ସେ ସମସ୍ତକୁ ସାମୟିକ ବର୍ଜନ କରି ଭବିଷ୍ୟତ ସକାଶେ ସଞ୍ଚୟ କରି ରଖିଅଛି ।" ସେ 'ନାନାକଥା' ଶିରୋନାମାରେ ଅନେକ କଥା ଲେଖିବାକୁ ଆରମ୍ଭ କରିଥିଲେ ହେଁ ଅଚାନକ ତିରୋଧାନ ଯୋଗୁଁ ସେଗୁଡ଼ିକ ପୂର୍ଣ୍ଣାଙ୍ଗ ରୂପ ପାଇପାରିଲା ନାହିଁ ।

ଭାରତଚନ୍ଦ୍ରଙ୍କ ଆତ୍ମଜୀବନୀରେ ଏତେ ଘଟଣା ସ୍ଥାନ ପାଇଛି ଯେ, ସେ ସବୁର ତନ୍ନ ତନ୍ନ ବିଶ୍ଳେଷଣ ଏହି କ୍ଷୁଦ୍ର ଗ୍ରନ୍ଥରେ ସମ୍ଭବ ନୁହେଁ । ତେଣୁ କେତୋଟି ବିଶିଷ୍ଟ ଘଟଣାକୁ ଏଠାରେ ଆଲୋଚନା କରାଯାଇ ଲେଖକଙ୍କ ସାମାଜିକ ପ୍ରତିବଦ୍ଧତା ଓ ଦାୟିତ୍ୱବୋଧ ସମ୍ପର୍କରେ ସାମାନ୍ୟ ମାତ୍ର ସୂଚନା ପ୍ରଦାନ କରାଯାଉଛି ।

**ଶିକ୍ଷା ଓ ଶୈକ୍ଷିକ ପରିବେଶଃ-** ଲେଖକ ତାଙ୍କ ଆତ୍ମଜୀବନୀରେ ନିଜ ଗ୍ରାମର ଶିକ୍ଷା ବ୍ୟବସ୍ଥା ଓ ଶୈକ୍ଷିକ ପରିବେଶଠାରୁ ଆରମ୍ଭ କରି ସାମଗ୍ରିକ ଓଡ଼ିଶାର ସମକାଳୀନ ଶିକ୍ଷା ଅବସ୍ଥା ସମ୍ପର୍କରେ ପ୍ରସଙ୍ଗ କ୍ରମେ ସୂଚନା ପ୍ରଦାନ କରିଛନ୍ତି । ଆବଶ୍ୟକ ସ୍ଥଳେ ଓଡ଼ିଶାର ସ୍କୁଲ ଅବସ୍ଥା ତଥା ଶିକ୍ଷକମାନଙ୍କର ଶିକ୍ଷାଦାନ ପଦ୍ଧତି ବିଷୟରେ ମଧ୍ୟ ସୂଚନା ଦେଇଛନ୍ତି । ଆଗଲପୁରରେ ପଢ଼ିବା ସମୟରେ ସେଠାରେ ଶିକ୍ଷାବ୍ୟବସ୍ଥା ସମ୍ପର୍କରେ ସୂଚନା ଦେଇ ଆତ୍ମଜୀବନୀରେ କହିଛନ୍ତି- ହିନ୍ଦୁ ଶିଶୁ ପାଞ୍ଚ ବର୍ଷ ବୟସରେ ଖଡ଼ି ଛୁଇଁ ବିଦ୍ୟାରମ୍ଭ କରୁଥିଲା । ଇଂରେଜୀ ପାଠ ସେହି ମାତ୍ର ଆରମ୍ଭ ହୋଇଥିଲା ଓ ଯେଉଁମାନେ ମାଇନର ପାସ୍ କରୁଥିଲେ ସମାଜର ବିଭିନ୍ନ ବିଭାଗରେ ସେମାନଙ୍କ ସକାଶେ କାର୍ଯ୍ୟକ୍ଷେତ୍ର ପ୍ରଶସ୍ତ ଥିଲା ଏବଂ ନିମ୍ନ ସ୍ତରରୁ ଉଚ୍ଚସ୍ତର ପର୍ଯ୍ୟନ୍ତ ସରକାରୀ ଚାକିରିରେ ସୁଦ୍ଧା ସେମାନେ ଉନ୍ନତି ଲାଭ କରୁଥିଲେ ।" (ପୃ-୨୨) ସେତେବେଳେ ମାତୃଭାଷାରେ କିଛି ଜ୍ଞାନ ଓ ଅଙ୍କ ଶିକ୍ଷା ଥିଲେ ସରକାରୀ ବା ଅନ୍ୟ ଚାକିରି ସହଜରେ ମିଳି ଯାଉଥିଲା । ଆଗଲପୁର ଅପେକ୍ଷା ପାଟଣାର ଶିକ୍ଷା ଓ ବିଦ୍ୟାଳୟ ଅଧିକ ଉଚ୍ଚମାନର ଥିଲା । ୧୯୦୫ ଅକ୍ଟୋବର ୧୫ ତାରିଖ ପର୍ଯ୍ୟନ୍ତ ପାଟଣା ଷ୍ଟେଟ୍‌ରେ ମଧ୍ୟପ୍ରଦେଶର ଶାସନ ପ୍ରବର୍ତ୍ତିତ ଥିଲା । ପଲିଟିକାଲ ଏଜେଣ୍ଟ ରହୁଥିଲେ ରାୟପୁରରେ । ତାଙ୍କ ଅଧୀନରେ ଥିଲା ପାଟଣା, ସୋନପୁର, କଳାହାଣ୍ଡି, ବାମଣ୍ଡା ଓ ରେଢ଼ାଖୋଲ । ପାଟଣା ଷ୍ଟେଟ୍‌ର ସମସ୍ତ ସ୍କୁଲ ଥିଲା ଉଚ୍ଚ ପ୍ରାଥମିକ; କେବଳ ବଲାଙ୍ଗିରରେ ଏକମାତ୍ର ମଧ୍ୟ ଇଂରାଜୀ ସ୍କୁଲ ଥିଲା । ଶିକ୍ଷକମାନଙ୍କୁ ପ୍ରଶିକ୍ଷଣ ଦେବାର ବ୍ୟବସ୍ଥା ନ ଥିଲା । ପ୍ରାଇମେରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆଉ ଦୁଇବର୍ଷ ପଢ଼ି ଯେଉଁମାନେ ମଧ୍ୟ ଓଡ଼ିଆ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉଥିଲେ

ସେମାନେ ଶିକ୍ଷକତା ସକାଶେ ଉପଯୁକ୍ତ ବିବେଚିତ ହେଉଥିଲେ । ଉଚ୍ଚ ପ୍ରାଇମେରୀ ପରୀକ୍ଷାର ଫଳ ଉପରେ ଶିକ୍ଷକଙ୍କ ବେତନର ପରିମାଣ ନିର୍ଦ୍ଦିଷ୍ଟ ହେଉଥିଲା । ସେଥିପାଇଁ ଶିକ୍ଷକମାନେ ପ୍ରତିଯୋଗିତା କରି ପିଲାଙ୍କ ପାଠପଢ଼ାର ଯତ୍ନ ନେଉଥିଲେ ।

ଯେଉଁ ଛାତ୍ରମାନେ ପାଠପଢ଼ାରେ ଅବହେଳା ପ୍ରଦର୍ଶନ କରୁଥିଲେ ଦଣ୍ଡସ୍ୱରୂପ ସେମାନଙ୍କୁ ନିର୍ମମ ବେତ୍ରାଘାତ ହେଉଥିଲା । ଦୀର୍ଘଦିନ ଅନୁପସ୍ଥିତ ରହୁଥିବା ପିଲାଙ୍କ ଅଭିଭାବକଙ୍କୁ ୨୫ ମାଇଲ ଦୂରବର୍ତ୍ତୀ ପାଟଣା ରାଜଧାନୀ ବଲାଙ୍ଗିରକୁ ଧରି ନିଆଯାଇ ହାକିମଙ୍କ ଘରେ ଛୋଟ ଚାକର କାର୍ଯ୍ୟରେ ରଖାଯାଉଥିଲା । କିଛିଦିନ ପରେ ମୁଚାଲିକା ନେଇ ବା ଧମକ ଦେଇ ଛାଡ଼ି ଦିଆଯାଉଥିଲା । ହାକିମମାନେ ମଫସଲ ଗସ୍ତ ବେଳେ ସ୍କୁଲରେ ପିଲାଙ୍କ ଉପସ୍ଥିତି ପ୍ରତି ଧ୍ୟାନ ଦେଉଥିଲେ । ସେତେବେଳେ ଆଗଲପୁର ଉଚ୍ଚ-ପ୍ରାଇମେରୀ ସ୍କୁଲର ପ୍ରଧାନଶିକ୍ଷକ ଥିଲେ ପ୍ରବୀଣ ଶିକ୍ଷକ ଲିଙ୍ଗରାଜ ଗୁରୁ । ତାଙ୍କର ଉନ୍ନତ ଧରଣର ଶିକ୍ଷାଦାନ ଯୋଗୁଁ ସେତେବେଳେ ଆଗଲପୁର ସ୍କୁଲ ଷ୍ଟେଟ୍ ମଧ୍ୟରେ ସର୍ବୋତ୍ତମ ସ୍କୁଲ ରୂପେ ପରିଚିତ ଥିଲା । ସ୍କୁଲ ସମୂହର ଡେପୁଟି ଇନିସ୍‌ପେକ୍ଟର ଥିଲେ ଗଣପତି ରାମଚନ୍ଦ୍ର କନିଟ୍‌କର, ମହାରାଷ୍ଟ୍ରର ବ୍ରାହ୍ମଣ ଏବଂ ବେଶ୍ କର୍ତ୍ତବ୍ୟନିଷ୍ଠ ।ପରିଦର୍ଶନ ସମୟରେ ଅଭିଭାବକଙ୍କୁ ଡାକି ପିଲାଙ୍କୁ ସ୍କୁଲକୁ ନିୟମିତ ପଠାଇବା ସକାଶେ ଉପଦେଶ ଦେଉଥିଲେ ଏବଂ ନଶୁଣିଲେ ଧମକ ଦେଇ ବାଧ୍ୟ କରୁଥିଲେ । ସ୍କୁଲରେ ଖରା ଛୁଟି ନଥିଲା । ଡେପୁଟି ଇନିସ୍‌ପେକ୍ଟର ଶିକ୍ଷାପ୍ରଣାଳୀ ଓ ସ୍କୁଲପରିଚାଳନା ବିଷୟରେ ଶିକ୍ଷକଙ୍କୁ ଉପଦେଶ ଦେଉଥିଲେ । ଜୁଲାଇ ଅବକାଶରେ ଶିକ୍ଷକମାନଙ୍କ 'ଜୁଲାଇ ସଭା' ହେଉଥିଲା । ଶିକ୍ଷକ ସ୍ୱରଚିତ ପ୍ରବନ୍ଧମାନ ପାଠ କରୁଥିଲେ ଓ ଯୋଗ୍ୟତାନୁସାରେ ପୁରସ୍କାର ପାଉଥିଲେ । ଗଡ଼ଜାତ ସମୂହର ଶିକ୍ଷାକାର୍ଯ୍ୟ ପରିଦର୍ଶନ ପାଇଁ ରାୟପୁରରୁ ଏଜେନ୍‌ସି ଇନିସ୍‌ପେକ୍ଟର ପ୍ରତିବର୍ଷ ଆସୁଥିଲେ । ସେତେବେଳେ ମଧ୍ୟପ୍ରଦେଶର ସ୍କୁଲ ଓ କଲେଜ ସମୂହ କଲିକତା ବିଶ୍ୱବିଦ୍ୟାଳୟ ଅନ୍ତର୍ଭୁକ୍ତ ଥିଲା ।

ଲେଖକ ପଢ଼ିବା ସମୟରେ କଟକରେ ୪ଟି ଯଥା- କଲେଜିଏଟ୍, ପ୍ୟାରୀମୋହନ ଏକାଡେମୀ, ଭିକ୍ଟୋରିଆ ଓ ମିଶନ୍ ସ୍କୁଲ, କେନ୍ଦ୍ରପଡ଼ା ଓ ଯାଜପୁରରେ ଗୋଟିଏ ଲେଖାଏଁ, ପୁରୀ ଜିଲ୍ଲାରେ ପୁରୀ ଓ ଖୋର୍ଦ୍ଧା, ବାଲେଶ୍ୱରରେ ବାଲେଶ୍ୱର ଜିଲ୍ଲା ସ୍କୁଲ ଓ ମିଶନ୍ ସ୍କୁଲ, ଭଦ୍ରକ ଓ ଲକ୍ଷ୍ମଣନାଥ ସ୍କୁଲ ଓ ସମ୍ବଲପୁରରେ ଏକମାତ୍ର ସମ୍ବଲପୁର ଜିଲ୍ଲା ସ୍କୁଲ ରହିଥିଲା । ସ୍କୁଲମାନଙ୍କରେ ବଙ୍ଗାଳୀ ଛାତ୍ରମାନଙ୍କର ବିଶେଷ ପ୍ରାଧାନ୍ୟ ରହିଥିଲା । କାରଣ କଚେରୀରେ ଜଜ୍, ମାଜିଷ୍ଟ୍ରେଟ ବଙ୍ଗାଳୀ, ଓକିଲ ବଙ୍ଗାଳୀ, ଡାକ୍ତର ବଙ୍ଗାଳୀ, ସ୍କୁଲରେ ମାଷ୍ଟର ବଙ୍ଗାଳୀ । ପ୍ରସିଦ୍ଧ କଲେଜ ରେଭେନ୍‌ସା କଲେଜ ଥିଲା । ଲେଖକ ଅନୁଗୁଳରେ ଚାକିରି କରିବା ସମୟରେ ସେଠାରେ ଶିକ୍ଷାର ବିଶେଷ ବିସ୍ତାର ହୋଇନଥିଲା । ସମଗ୍ର ଜିଲ୍ଲାରେ ଅନୁଗୁଳ ଟାଉନ୍‌ରେ ଏକମାତ୍ର ମଧ୍ୟ ଇଂରେଜୀ ସ୍କୁଲ । ଜଣେ ବି ଗ୍ରାଜୁଏଟ୍ ନଥିଲେ । ସେତେବେଳେ ସମ୍ବଲପୁରର

ବରଗଡ଼ ଏକ ପ୍ରସିଦ୍ଧ ବ୍ୟାବସାୟିକ ଅଞ୍ଚଳ ହୋଇଥିଲେ ହେଁ ଶିକ୍ଷାର ବିଶେଷ ବିକାଶ ହୋଇନଥିଲା । ବରଗଡ଼ରେ ପ୍ରଥମେ ୧୯୦୮ ରେ ମଧ୍ୟ ଇଂରେଜ ସ୍କୁଲ ସ୍ଥାପନ ହୋଇଥିଲା ଏବଂ ୧୯୧୯ରେ ହାଇସ୍କୁଲ ତଥା ୧୯୬୦ ମସିହାରେ ଗୋଟିଏ କଲେଜ ସ୍ଥାପନ ହୋଇଥିଲା । ବଣେଇରେ ଦେଓ୍ୱାନ କାର୍ଯ୍ୟରେ ନିଯୁକ୍ତ ହୋଇଥିବା ସମୟରେ ଲେଖକ ଲକ୍ଷ୍ୟ କରିଥିଲେ ଗଡ଼ଜାତ ରାଜ୍ୟମାନଙ୍କରେ ଶିକ୍ଷାର ବ୍ୟବସ୍ଥା ଆଦୌ ଉନ୍ନତ ଧରଣର ନଥିଲା । ତେଣୁ ଧରଣୀଧର ଇନ୍ଦ୍ରଦେଓଙ୍କୁ (ରାଜପୁତ୍ର) ଶିକ୍ଷାପାଇଁ ରାଞ୍ଚିଯିବାକୁ ହୋଇଥିଲା । ସେଥିପାଇଁ ଭାରତଚନ୍ଦ୍ର ଶିକ୍ଷାର ଉପଯୁକ୍ତ ବିକାଶ ପାଇଁ ଧ୍ୟାନ ଦେଇଥିଲେ । ମଫସଲର କେତେକ ନିମ୍ନ ପ୍ରାଇମେରୀକୁ ଉଚ୍ଚ ପ୍ରାଇମେରୀରେ ପରିଣତ କରିଥିଲେ । କେତେକ ନୂଆ ସ୍କୁଲ ପ୍ରତିଷ୍ଠା କରିଥିଲେ । ସ୍କୁଲରେ ଛାତ୍ରସଂଖ୍ୟା ବୃଦ୍ଧିପାଇଁ ଇନିସ୍‌ପେକ୍ଟରଙ୍କ ମାଧ୍ୟମରେ ଚେଷ୍ଟା କରିଥିଲେ । କିଛି ଅଭିଭାବକ ତାଙ୍କ ପିଲାମାନେ କାର୍ଯ୍ୟରେ ସାହାଯ୍ୟ କରିବେ ବୋଲି କହିବାରୁ ସେମାନଙ୍କ ପାଇଁ ସ୍କୁଲର ସମୟ ରଖାଯାଇଥିଲା ଦିନ ୧୨ଟା ରୁ ୫ଟା ପର୍ଯ୍ୟନ୍ତ । ପିଲାଙ୍କୁ ବିନା ମୂଲ୍ୟରେ ସ୍ଲେଟ୍, ବହି ଯୋଗାଇ ଦେବାକୁ ଶିକ୍ଷା ବଜେଟ୍‌ରେ ବ୍ୟବସ୍ଥା କରାଗଲା । ଛାତ୍ରବୃତ୍ତି ସୃଷ୍ଟିହେଲା । ମଧ୍ୟ ଇଂରେଜୀ ଉତ୍ତୀର୍ଣ୍ଣ ଛାତ୍ରଙ୍କ ପାଇଁ ହାଇସ୍କୁଲରେ ଅଧ୍ୟୟନ ପାଇଁ ବୃତ୍ତିର ବ୍ୟବସ୍ଥା ହେଲା । ଅନୁନ୍ନତ, ଅସ୍ପୃଶ୍ୟ ଶିକ୍ଷାଭିଳାଷୀ ଛାତ୍ରମାନଙ୍କୁ ଉଚ୍ଚଜାତିର ପିଲାଙ୍କ ସହିତ ବସାଇବାର ବ୍ୟବସ୍ଥା କରାଯାଇଥିଲା ।

ସେତେବେଳେ ଶିକ୍ଷାର ବିକାଶ କ୍ଷେତ୍ରରେ ସମାଜର କିଛି ରକ୍ଷଣଶୀଳ ଶିକ୍ଷିତ ବ୍ୟକ୍ତି ମଧ୍ୟ ଅନ୍ତରାୟ ସୃଷ୍ଟି କରୁଥିଲେ । ସମ୍ବଲପୁର ବାଳିକା ସ୍କୁଲକୁ ମଧ୍ୟ ଇଂରେଜୀକୁ ଉନ୍ନୀତ କରିବାକୁ ତତ୍‌କାଳୀନ ସ୍କୁଲ ଇନିସ୍‌ପେକ୍ଟର ଶ୍ରୀମତୀ ନିର୍ମଳବାଳା ନାୟକଙ୍କୁ ଲେଖକ ଅନୁରୋଧ କରିଥିଲେ । ଶ୍ରୀମତୀ ନାୟକ ଲେଖକଙ୍କୁ ଜଣାଇଥିଲେ ଯେ ତାଙ୍କର ସମ୍ବଲପୁର ଗସ୍ତ ସମୟରେ ଯଦି ମଧ୍ୟ ଇଂରେଜୀ ବାଳିକା ସ୍କୁଲ ପାଇଁ ସ୍ଥାନୀୟ ଲୋକ ଦାବୀ କରନ୍ତି, ତେବେ ସେ ଦିଗରେ କାର୍ଯ୍ୟାନୁଷ୍ଠାନ କରିବାକୁ ସହଜ ହେବ । ଲେଖକ ଛୁଟି ନେଇ ସମ୍ବଲପୁର ଆସି ଗୋଟିଏ ସଭାର ଆୟୋଜନ କରିଥିଲେ । ମାତ୍ର ସଭାକୁ କେହି ଆସିଲେ ନାହିଁ । ବିଜ୍ଞାପନ ଦିଆଯିବା ପରେ ମାତ୍ର ଦୁଇଜଣ ଆସିଲେ । ତେଣୁ ଭାରତଚନ୍ଦ୍ର ସମ୍ବଲପୁର ବାସୀଙ୍କ ସ୍ତ୍ରୀଶିକ୍ଷା ପ୍ରତି ରହିଥିବା ଉଦାସୀନତା ଲକ୍ଷ୍ୟ କରି ଅସନ୍ତୋଷ ପ୍ରକାଶ କରି ଚାଲିଗଲେ । ଏହି ବିଷୟରେ ଲେଖକ ସମ୍ବଲପୁରର ବିଶିଷ୍ଟ ଶିକ୍ଷାପ୍ରେମୀ ବ୍ରଜମୋହନ ପଣ୍ଡା, ଅବସର ପ୍ରାପ୍ତ ଡେପୁଟି କଲେକ୍ଟର ବାଳମୁକୁନ୍ଦ ବହିଦାରଙ୍କୁ ଜଣାଇଲେ । ବାଳମୁକୁନ୍ଦ ବାବୁଙ୍କ ଘରେ ଗୋଟିଏ କପୋଳକଳ୍ପିତ ସଭା କରାଯାଇ ମଧ୍ୟ ଓଡ଼ିଆ ସ୍କୁଲକୁ ମଧ୍ୟ ଇଂରେଜୀ ସ୍କୁଲରେ ପରିଣତ କରିବା ସପକ୍ଷରେ ଏକ ପ୍ରସ୍ତାବ ଗୃହୀତ ହୋଇଛି ବୋଲି ନିର୍ଦ୍ଧାରଣ ଲେଖାଯାଇ ଶ୍ରୀମତୀ ନାୟକଙ୍କ ନିକଟକୁ ପଠାଗଲା । ଏହା ଫଳରେ ସମ୍ବଲପୁରରେ ମଧ୍ୟ ଇଂରେଜୀ ବିଦ୍ୟାଳୟ

ପ୍ରତିଷ୍ଠା ହେବା ସମ୍ଭବ ହୋଇପାରିଥିଲା । ସମଗ୍ର ଓଡ଼ିଶାରେ ସେତେବେଳେ ବଙ୍ଗଳା ପରି ଶିକ୍ଷାର ପ୍ରସାର ହୋଇପାରିନଥିଲା । ପୁଣି ଓଡ଼ିଶାରେ ବଙ୍ଗଳାପରି ବିଶେଷ ଉଚ୍ଚଶିକ୍ଷିତ ନଥିବାରୁ ଶିକ୍ଷାର ପ୍ରକୃତ ମର୍ଯ୍ୟାଦା ଉପଲବ୍ଧ କରିପାରିନଥିଲେ । ଏଣୁ ଶିକ୍ଷା କ୍ଷେତ୍ରରେ ଓଡ଼ିଶା ଭାରତର ବହୁ ଅଞ୍ଚଳ ତୁଳନାରେ ପଛରେ ପଡ଼ି ରହିଥିଲା ।

**ନାରୀଶିକ୍ଷା ପ୍ରତି ସାମାଜିକ ଦୃଷ୍ଟିଭଙ୍ଗୀ:-** ଭାରତଚନ୍ଦ୍ରଙ୍କ ଆତ୍ମଜୀବନରେ ତତ୍‌କାଳୀନ ସମାଜର ନାରୀଶିକ୍ଷା ପ୍ରତି ଯେଉଁ ନେତିବାଚକ ଦୃଷ୍ଟିଭଙ୍ଗୀ ରହିଥିଲା, ସେ ସମ୍ପର୍କରେ ସବିଶେଷ ଆଲୋଚନା ରହିଛି । ପୂର୍ବରୁ ଆଲୋଚନା କରାଯାଇଥିବା ବାଳିକା ସ୍କୁଲ୍‌କୁ ମଧ୍ୟ ଇଂରେଜୀ ସ୍କୁଲକୁ ଉନ୍ନୀତ କରିବା ପାଇଁ ଭାରତଚନ୍ଦ୍ର ଯେଉଁ ସଭା ଡାକିଥିଲେ, ସେଠାକୁ କେହି ଆସିନଥିଲେ । ପୁନରାୟ ଏକ କପୋଳକଳ୍ପିତ ନିର୍ଦ୍ଧାରଣ ପଠାଯାଇ ଉକ୍ତ ସ୍କୁଲ୍‌କୁ ମଧ୍ୟ ଇଂରେଜୀ ସ୍କୁଲ୍‌କୁ ଉନ୍ନୀତ କରାଯିବାପରେ ତଥାକଥିତ ରକ୍ଷଣଶୀଳ ଲୋକମାନେ ଏହାର ବିରୋଧ କରିଥିଲେ । ସେମାନଙ୍କର ଧାରଣା ଥିଲା ଇଂରେଜୀ ପାସ୍ କଲାବେଳକୁ ଝିଅମାନଙ୍କ ବୟସ ୧୨/୧୩ ବର୍ଷ ହୋଇଯିବ । ଏମିତି ହେଲେ ସେମାନେ ଘରକରଣା ବିଷୟ ଶିକ୍ଷା କରିବେ କେବେ ? ପୁଣି ଯଦି ଝିଅମାନେ ହାଇସ୍କୁଲ ଓ କଲେଜକୁ ଯିବେ, ତେବେ ସର୍ବନାଶ । ଅଥଚ ସେମାନେ ବୁଝିବା ଉଚିତ୍ ଯେ, ଶିକ୍ଷା ପିଲାଙ୍କ ଘରକରଣା ପାଇଁ ଆଦୌ ପ୍ରତିକୂଳ ନୁହେଁ । ଶିକ୍ଷାଦ୍ୱାରା ସେମାନେ ଅଧିକ ମାର୍ଜିତ ହେବେ । ଏଥିପାଇଁ ସମାଜ ନେତାମାନେ ଝାଡୁଆପଡ଼ାର ବ୍ରହ୍ମପୁରା ମନ୍ଦିର ପ୍ରାଙ୍ଗଣରେ ଗୋଟିଏ ସଭା କରି ସେଥିରେ ଦୁଇଟି ପ୍ରସ୍ତାବ ଗୃହୀତ କରାଇଥିଲେ । ପ୍ରଥମ ପ୍ରସ୍ତାବ ହେଲା- ବାଳିକା ବିଦ୍ୟାଳୟର ଶିକ୍ଷୟିତ୍ରୀ ଖ୍ରୀଷ୍ଟିଆନ୍ ହୋଇଥିବାରୁ ସେମାନେ ହିନ୍ଦୁଶାସ୍ତ୍ର ପଢ଼ି ନାହାନ୍ତି । ତେଣୁ ହିନ୍ଦୁ ବାଳିକାଙ୍କୁ ପଢ଼ାଇବାକୁ ଅଯୋଗ୍ୟ । ଦ୍ୱିତୀୟ ପ୍ରସ୍ତାବ ହେଲା- ଯେତେ ଅଧିକ ପରିମାଣରେ ହିନ୍ଦୁ ଝିଅମାନେ ଇଂରାଜୀ ସ୍କୁଲରେ ପଢ଼ିବାକୁ ବସିଲେଣି, ଏହା ସମାଜ ପକ୍ଷରେ ମଙ୍ଗଳକର ନୁହେଁ । ସେମାନେ କେବଳ ୧୦ ବର୍ଷ ପର୍ଯ୍ୟନ୍ତ ସ୍କୁଲରେ ପଢ଼ିପାରିବେ । ଏଥିରେ ଅଧିକ ବୟସ ପର୍ଯ୍ୟନ୍ତ ଯଦି କେହି ଝିଅକୁ ସ୍କୁଲ୍‌ରେ ରଖିବେ, ସେ ଅଜାତି ହେବେ । ଲେଖକ ଏହି ପ୍ରସ୍ତାବ ବିପକ୍ଷରେ କହିଲେ ଯେ, ପ୍ରସ୍ତାବ ଦ୍ୱୟ ପରସ୍ପର ବିରୋଧାତ୍ମକ । ଆମେ ଗୋଟିଏ ପ୍ରସ୍ତାବରେ ହିନ୍ଦୁ ଶିକ୍ଷୟିତ୍ରୀ କଥା କହିବାବେଳେ ଅପର ପ୍ରସ୍ତାବରେ ଝିଅମାନଙ୍କୁ ୧୦ ବର୍ଷ ପର୍ଯ୍ୟନ୍ତ ଶିକ୍ଷା ଦେଇ ହିନ୍ଦୁ ଶିକ୍ଷୟିତ୍ରୀ ଲୋପ କରିବାକୁ ଯାଉଛୁ । ଏହି ପ୍ରସ୍ତାବ ସରକାରଙ୍କ ନିକଟକୁ ଯାଇଥିଲେହେଁ ତାହା ନାକଚ ହୋଇଯାଇଥିଲା ।

ଝିଅ ପିଲାଙ୍କ ଶିକ୍ଷାକୁ ନେଇ ଲେଖକ ବହୁ ପ୍ରତିରୋଧ ଓ ପ୍ରତିବନ୍ଧକର ସମ୍ମୁଖୀନ ହୋଇଛନ୍ତି । ସେତେବେଳେ ଲେଖକ ରହୁଥିବା ଝାଡୁଆପଡ଼ାର କେତେକ ଉଚ୍ଚ ଶିକ୍ଷିତ ବ୍ୟକ୍ତି ମଧ୍ୟ ନାରୀଶିକ୍ଷାକୁ ଗ୍ରହଣ କରିପାରୁନଥିଲେ । ଭାରତଚନ୍ଦ୍ରଙ୍କ ସପ୍ତମ କନ୍ୟା ନୀଳିମା

ପାଇଁ ସ୍ଥିରୀକୃତ ପିଲାଦିନ ବରପାତ୍ରର ଯାଦବପୁର ଇଞ୍ଜିନିୟରିଂ କଲେଜରେ ଶିକ୍ଷା ସମାପ୍ତ ହୋଇନଥିବାରୁ ଦୁଇବର୍ଷ ପର୍ଯ୍ୟନ୍ତ ସେମାନଙ୍କର ବିବାହ ସ୍ଥଗିତ ରହିଥିଲା । ଝିଅକୁ ଲେଖକ ଆଇ.ଏ. ପଢ଼ିବାକୁ କଟକ ମହିଳା କଲେଜକୁ ପଠାଇବା ନିମିତ୍ତ ସ୍ଥିର କରିବାରୁ ଭାବୀ ସମ୍ବନ୍ଧୀ ସତର୍କ କରାଇଦେଇ କହିଥିଲେ ଯଦି ନୀଳିମାକୁ ଉଚ୍ଚ ଶିକ୍ଷା ଦିଆଯାଏ ତେବେ ତା' ସହିତ ତାଙ୍କ ପୁତ୍ରର ବିବାହ ସମ୍ବନ୍ଧ ଭାଙ୍ଗି ଦିଆଯିବ । ଏପରିକି ସେତେବେଳର ମେଡ଼ିକାଲ କଲେଜର ପ୍ରଥମ ପ୍ରିନ୍‌ସିପାଲ ଡାକ୍ତର ସନାତନ ପୂଜାରୀ ମଧ୍ୟ ତାଙ୍କ ଝିଅଙ୍କ ଉଚ୍ଚଶିକ୍ଷାକୁ ପ୍ରଥମେ ବିରୋଧ କରିଥିଲେ । ଝାଡ଼ୁଆପଡ଼ାର ଯେଉଁ କିଛି ଲୋକ ଲେଖକଙ୍କ କନ୍ୟାର ଉଚ୍ଚ ଶିକ୍ଷାକୁ ବିରୋଧ କରୁଥିଲେ, ତନ୍ମଧ୍ୟରେ ତାଙ୍କର ଜଣେ ସମ୍ବନ୍ଧୀ ସେଥିରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏ ସମ୍ପର୍କରେ ଲେଖକ ତାଙ୍କର ଅନ୍ୟ ଏକ ତିକ୍ତ ଅନୁଭୂତି ବିଷୟ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ତାଙ୍କର ଅନ୍ୟ ଏକ କନ୍ୟା ସୁଷମା ୧୯୩୭ ମସିହାରେ ମେଟ୍ରିକୁଲେସନ ପାସ୍ ପରେ ପାରମ୍ପରିକ ପ୍ରଥାନୁଯାୟୀ ତା'ର ଦୁଇବର୍ଷ ବୟସରୁ ସ୍ଥିର ହୋଇଥିବା ପାତ୍ର ସହିତ ବିବାହ କରିବାକୁ ଭାବୀ ଶ୍ୱଶୁରଙ୍କୁ ପତ୍ର ଲେଖିବାରୁ ସେ ତା'ର କୌଣସି ଉତ୍ତର ଦେଲେ ନାହିଁ । ଜଣେ ବନ୍ଧୁକଠାରୁ ଖବର ନେଇ ଜାଣିଲେ ଯେ ସେହି ପାତ୍ରର ଅନ୍ୟ ଏକ ପାତ୍ରୀ ସହିତ ନିର୍ବନ୍ଧ ହୋଇଯାଇଛି । ଭାରତଚନ୍ଦ୍ର ଭାବୀ ସମ୍ବନ୍ଧୀଙ୍କୁ ସାକ୍ଷାତ୍ କରିବାରୁ ସେ କହିଲେ- "ଇଂରେଜୀ ପାଠପଢ଼ା ବୋହୂ ସେ ଚାହାନ୍ତି ନାହିଁ । ଏପରି ବୋହୂ ସମାଜକୁ ଛାରଖାର କରିଦେବେ, ଶାଶୂ ଶ୍ୱଶୁରଙ୍କୁ ମାନିବେ ନାହିଁ, ଫେଶନ କରିବେ । ସ୍ନୋ, ପାଉଡ଼ର, ସାବୁନ ମାଖିବେ, ଘର କରଣା କରିବେ ନାହିଁ ଇତ୍ୟାଦି ଅମୂଳକ ଓ ଅବାନ୍ତର କଥାମାନ କହି ମୁଁ ଯେତେ ଅନୁରୋଧ କଲି ତତ୍ ପ୍ରତି କର୍ଣ୍ଣପାତ ସୁଦ୍ଧା କରିବାକୁ ଅସମ୍ମତ ହେଲେ । ସମ୍ଧୁଣୀ କବାଟକଣରେ ଠିଆହୋଇ ସବୁ ଶୁଣୁଥିଲେ । ତାଙ୍କ ଆଡ଼କୁ କଣେଇ ଦେଖିଲି, 'ଜ୍ୱାଳାମୁଖୀ' ଆଖି ଦୁଇଟାରୁ ଯେମନ୍ତ ଅଗ୍ନିକଣା ନିର୍ଗତ ହେଉଅଛି । ମୋ ଝିଅକୁ ଇଂରେଜୀ ପଢ଼ାଇଥିବା ଦୋଷରେ କଠୋର ଭାଷାରେ ମୋତେ ଦୋଷୀ କରିବାକୁ ଲାଗିଲେ ।" (ପୃ- ୨୩୮-୩୯)

ଭାରତଚନ୍ଦ୍ର ତାଙ୍କର ଷଷ୍ଠ ଝିଅ ସୁରମାକୁ ଯେଉଁ ଘରେ ବିବାହ ଦେଇଥିଲେ, ତା'ର ଶ୍ୱଶୁର ଉଚ୍ଚ ଶିକ୍ଷିତ ହୋଇଥିଲେ ହେଁ ନାରୀଶିକ୍ଷାର ପକ୍ଷପାତୀ ନଥିଲେ । ତାଙ୍କ ପ୍ରତିବାଦ ଯୋଗୁଁ ଝିଅ ମାଟ୍ରିକୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧ୍ୟ ପାଠ ପଢ଼ିଲା ନାହିଁ । ଝିଅ ମାଟ୍ରିକୁଲେସନ ପାସ୍ କରିଥିବାରୁ ଶାଶୂଘରେ ତା' ଉପରେ ଅତ୍ୟାଚାର ହେଲା । ସେମିଜ, ବ୍ଲାଉଜ, କୁର୍ତ୍ତା ପିନ୍ଧିବାକୁ ବାରଣ କରାଗଲା । ରୋଷେଇଶାଳ ନିଷେଧ ହେଲା । ବାସନ ମଜା ଓ ଗୋରୁଗୁହାଳ ସଫା କରିବା ଦାୟିତ୍ୱ ତାକୁ ଦିଆଗଲା । ଦୁଇ ଓଳି ପଖାଳ ସାଙ୍ଗକୁ ଫଡ଼ାଏ ଆମ୍ବୁଲ ବା ଗୋଟିଏ କଖାରୁବଡ଼ି ପୋଡ଼ା ଦିଆଗଲା । ଗର୍ଭବତୀ ଅବସ୍ଥାର ମଧ୍ୟ

ତାଙ୍କୁ ବିଭିନ୍ନ କାର୍ଯ୍ୟ କରିବାକୁ ପଡ଼ିଲା । ଝିଅର ଏପରି ଅବସ୍ଥା ଦେଖି ଭାରତଚନ୍ଦ୍ର ତାଙ୍କୁ ନିଜ ଘରକୁ ଆଣିଲେ । ତା'ର କନ୍ୟା ସନ୍ତାନଟିଏ ଜନ୍ମ ହେଲା । ସମୁଧି ଡାକ୍ତର ହେଲେବି ରକ୍ଷଣଶୀଳ । ଶିକ୍ଷିତା ଝିଅକୁ ସହଜରେ ସେ ଗ୍ରହଣ କରିପାରନ୍ତି ନାହିଁ । ତାଙ୍କର ବିଶ୍ୱାସ ଥିଲା ଝିଅମାନେ ପଢ଼ିଲେ ଦୁଷ୍ଟରିତ୍ରା ହୋଇଯିବେ । ତାଙ୍କର ଧାରଣା ଥିଲା "ଝିଅମାନଙ୍କ ଶିକ୍ଷା କେବଳ ରାମାୟଣ, ମହାଭାରତ ପାଠରେ ପର୍ଯ୍ୟବସିତ ରହିଲେ ଯଥେଷ୍ଟ ହେଲା । ତାହାହେଲେ ସୀତା ସାବିତ୍ରୀ ହୋଇପାରିବେ ।" (ପୃ-୩୪୮) ସେ ଦଶହରା ଭାଇ ଜିଉଁତିଆକୁ ମଧ ଝିଅକୁ ପଠାଇଲେ ନାହିଁ । ବାଧହୋଇ ଭାରତଚନ୍ଦ୍ର ତାଙ୍କର ଝିଅମାନଙ୍କୁ ଓ ପୁଅକୁ ନେଇ ସମୁଧିଙ୍କ ଘରେ ଭାଇଜିଉଁତିଆ ଓଷାକଲେ ଏବଂ ପଡ଼ୋଶୀମାନେ ଏହାର କାରଣ ଜାଣିବାରୁ ଖୁବ୍ ସମାଲୋଚନା କଲେ । ପରେ ସମୁଧିଙ୍କ ପିତାଙ୍କ ମାଧ୍ୟମରେ ମିଳାମିଶା ହୋଇଥିଲେହେଁ, ତାହା ଥିଲା କ୍ଷଣିକ । ଅଳ୍ପଦିନ ପରେ ସମ୍ପର୍କ ପୁନରାୟ ତିକ୍ତ ହୋଇ ଯାଇଥିଲା ।

ଭାରତଚନ୍ଦ୍ର କେବଳ ନିଜର ଝିଅମାନଙ୍କୁ ନୁହଁନ୍ତି, ସମାଜର ସମସ୍ତ ଝିଅ ଶିକ୍ଷିତା ହୁଅନ୍ତୁ ବୋଲି ଚାହୁଁଥିଲେ । ପୁରୀରେ ଚାକିରି କରୁଥିବା ସମୟରେ ସୂର୍ଯ୍ୟମଣି ନାମ୍ନୀ ବ୍ରାହ୍ମଣ କନ୍ୟାଟିକୁ ତା' ବାପା ୧୦/୧୧ ବର୍ଷରେ ବିବାହ ଦେଇଥିଲେ । ମାତ୍ର ୧୫ ଦିନ ପରେ ସେ ବିଧବା ହୋଇଗଲା । କିନ୍ତୁ ସେ ଖୁବ୍ ଭଲ ପଢୁଥିଲା । ସ୍କୁଲର ହେଡ୍‌ପଣ୍ଡିତ ତା' ବିଷୟରେ ଭାରତଚନ୍ଦ୍ରଙ୍କ ସହିତ ସାହାଯ୍ୟ ପାଇଁ କଥାବାର୍ତ୍ତା ହେବାବେଳେ ସେ ତାଙ୍କୁ କହିଥିଲେ ସୂର୍ଯ୍ୟମଣି ଓଡ଼ିଆ ବୃତ୍ତି ପରୀକ୍ଷାରେ ଉତୀର୍ଣ୍ଣ ହେବାପରେ ତାଙ୍କୁ କଟକ ପଠାଇ ଦେଲେ, ତା'ର ପାଠ ପଢ଼ିବାର ସମସ୍ତ ବ୍ୟବସ୍ଥା ସେ କରିବେ । ପରୀକ୍ଷା ପରେ ହେଡ୍‌ପଣ୍ଡିତ ତାଙ୍କୁ ଚିଠିରେ ଲେଖିଲେ, ବାଳବିଧବା ଛାତ୍ରୀ ବୃତ୍ତି ପରୀକ୍ଷାରେ ପୁରୀ ଜିଲ୍ଲାର ଛାତ୍ରୀମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନ ପ୍ରାପ୍ତହୋଇ ଚାରିଟଙ୍କା ବୃତ୍ତି ପାଇଛି । ଭାରତଚନ୍ଦ୍ର ନିଜ ପ୍ରତିଶ୍ରୁତି ରକ୍ଷାକରି ସୂର୍ଯ୍ୟମଣିକୁ କଟକର ରେଭେନ୍‌ସା ବାଳିକା ସ୍କୁଲ୍‌ରେ ସପ୍ତମ ଶ୍ରେଣୀରେ ନାମ ଲେଖାଇ ଦେଇଥିଲେ ଓ ତା'ର ସ୍ଥାନୀୟ ଅଭିଭାବକ ହୋଇଥିଲେ । ତାଙ୍କର ଏଗାରଟି ଝିଅଙ୍କ ସହିତ ସୂର୍ଯ୍ୟମଣି ମଧ୍ୟ ଗୋଟିଏ ଝିଅ ହୋଇ ରହିଥିଲା ।

ତତ୍‌କାଳୀନ ସମାଜରେ ନାରୀ ଶିକ୍ଷାପ୍ରତି ନକାରାତ୍ମକ ଦୃଷ୍ଟିଭଙ୍ଗୀ ରହିଥିଲେ ହେଁ, ଭାରତଚନ୍ଦ୍ର କିନ୍ତୁ ଏ କ୍ଷେତ୍ରରେ ଥିଲେ ବେଶ୍ ପ୍ରଗତିଶୀଳ । ତାଙ୍କର ବିଶ୍ୱାସ ଥିଲା ସମାଜର ପ୍ରଗତିରେ କେବଳ ଶିକ୍ଷିତ ବ୍ୟକ୍ତିମାନେହିଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇପାରିବେ । ସେଥିପାଇଁ ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି- "ପିଲାଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ହେବ । ଏହା ମୁଁ ହୃଦୟଙ୍ଗମ କରି ଝିଅମାନଙ୍କୁ ଉଚ୍ଚ ଶିକ୍ଷା ଦେଲେ ଗୁରୁତର ସାମାଜିକ ସମସ୍ୟାମାନ ସହଜରେ ସମାଧାନ ହେବା ସଙ୍ଗେ ସଙ୍ଗେ ଏମାନଙ୍କର ଜ୍ଞାନ ବିକାଶ ହେବ ଓ ଏମାନଙ୍କ

ଜୀବନରେ କୌଣସି ପ୍ରକାର ଦୁର୍ଘଟଣା ବା ଅସୁବିଧାଜନକ ପରିସ୍ଥିତି ଉପସ୍ଥିତ ହେଲେ ଶିକ୍ଷା ବଳରେ ନିଜ ଜୀବନକୁ ସୁଶୃଙ୍ଖଳ କରିପାରିବେ- ଏହି ଦୃଢ଼ ବିଶ୍ୱାସରେ ବଶବର୍ତ୍ତୀ ହୋଇ ଏମାନଙ୍କୁ ଉଚ୍ଚଶିକ୍ଷା ଦେବାରେ ପ୍ରବୃତ୍ତ ହେଲି ।" (ପୃ-୨୨୯) ସେତେବେଳେ ପୁରୀରେ ଇଂରେଜୀ ପଢ଼ା ହେବା ବାଳିକା ସ୍କୁଲ କିମ୍ବା ସହ ଶିକ୍ଷାର ସୁବିଧା ନଥିବାରୁ ସେ ଚେଷ୍ଟା କରି କଟକ ବଦଳି ହୋଇ ଆସିଥିଲେ ।

**କନ୍ୟାମାନଙ୍କର ସାମାଜିକ ସ୍ଥିତି:-** ତତ୍କାଳୀନ ସମାଜରେ ବ୍ରାହ୍ମଣସମାଜ ଥିଲେ ଅଧିକ ରକ୍ଷଣଶୀଳ । ସମ୍ବଲପୁର ବ୍ରାହ୍ମଣସମାଜ ଏଥିରୁ ବାଦ୍ ପଡ଼ିନଥିଲେ । ସେତେବେଳେ ପାତ୍ର ଅଭାବ ଯୋଗୁଁ ସମ୍ପର୍କୀୟ ପାତ୍ର-ପାତ୍ରୀଙ୍କ ମଧ୍ୟରେ ବୈବାହିକ କାର୍ଯ୍ୟ ଅନୁଷ୍ଠିତ ହେଉଥିଲା । ଚାକିରିଆ ପାତ୍ରଙ୍କର ଗୁରୁତ୍ୱ ସମାଜରେ ଅଧିକ ଥିବାରୁ ଅଧିକାଂଶ ପିତାମାତା ସେମାନଙ୍କ ପ୍ରତି ଆକୃଷ୍ଟ ହେଉଥିଲେ । ସେଥିପାଇଁ ବିବାହ ବଜାରରେ ସେମାନଙ୍କର ଦାମ୍ ବେଶ୍ ଚଢ଼ା । ସମଗ୍ର ଭାରତବର୍ଷରେ ସେହି ଏକ ପ୍ରକାର ଅବସ୍ଥା । ଏ ସମ୍ପର୍କରେ ସୂଚନା ଦେଇ ଲେଖକ ନିଜ ଆତ୍ମଜୀବନୀରେ କୁହନ୍ତି- "ଜଣେ ସରକାରୀ ଚାକିରିଆ ବରକୁ ସମସ୍ତେ କନ୍ୟା ଯାଚୁଛନ୍ତି । ପାଠ ଶେଷ ନ ହେଉଣୁ ବରମାନେ ଲୋଲୁପ ଦୃଷ୍ଟିରେ କନ୍ୟା ଦାୟଗ୍ରସ୍ତ ପିତାକୁ ବିବ୍ରତ କରୁଛନ୍ତି । ପଣପ୍ରଥା ଅତର୍କିତ ଭାବରେ ସମାଜରେ ପ୍ରବେଶ କରିବାକୁ ଚେଷ୍ଟା କରୁଅଛି । ଯେଉଁ ପ୍ରଥାରେ ବଙ୍ଗ ଦେଶ ଜର୍ଜରିତ, ଯେଉଁ ପ୍ରଥାଯୋଗୁଁ କେତେକ କନ୍ୟା ପିତାଙ୍କୁ ଦାୟରୁ ମୁକ୍ତ କରିବା ସକାଶେ କେତେକ ବଙ୍ଗ ଯୁବତୀ ଆତ୍ମହତ୍ୟା କରି ବଙ୍ଗଯୁବକ ଏବଂ ଅଭିଭାବକମାନଙ୍କ କଳଙ୍କ ପ୍ରଚାର କରୁଅଛନ୍ତି; ଯେଉଁ ପୈଶାଚିକ ପ୍ରଥାକୁ ସମୂଳ ଉତ୍ପାଟନ କରିବାକୁ ସର୍ବତ୍ର ଉଦ୍ୟମ ଚାଲିଅଛି, ଆଜି ଆମ'ମାନଙ୍କ ଦରିଦ୍ର ସମାଜରେ ଏହାର ଅଙ୍କୁରା ରୋପଣ ହେବାକୁ ଯାଉଅଛି । ଏହି ବିଷୟ ଜୀବନକୁ ଏକାବେଳକେ ବିନଷ୍ଟ କରିବା ସମସ୍ତଙ୍କ କର୍ତ୍ତବ୍ୟ ।" (ପୃ-୨୯୧) ସେତେବେଳେ ସମ୍ବଲପୁରରେ ବରପାତ୍ରକୁ ନେଇ ଅନେକ ବିବାଦ ସୃଷ୍ଟି ହେଉଥିଲା । ଜଣେ ବରପାତ୍ର ଠିକ୍ କରିବା ବେଳକୁ ଅନ୍ୟ ଜଣେ ତାହା ଛଡ଼ାଇ ନେବାକୁ ପ୍ରସ୍ତୁତ । ପରୋକ୍ଷରେ ନିଲାମ ଡାକଚାଲେ; ଚାଲେ ମଧ୍ୟ ଫନ୍ଦିଫିକର । ଅନେକ ରକ୍ଷଣଶୀଳ ପରିବାରରେ ଝିଅ ଅବିବାହିତ ରହିଯାଉଥାନ୍ତି । ବିଧବା, ବିତାଡ଼ିତା ଓ ଅବିବାହିତା କନ୍ୟା ଅନେକ କ୍ଷେତ୍ରରେ ପିତ୍ରାଳୟରେ ଆଶ୍ରା ନେବାକୁ ବାଧ୍ୟ ହୋଇଥାନ୍ତି । ସେଥିପାଇଁ ଲେଖକ ସମାଜକୁ ପରାମର୍ଶ ଦେଇଥିଲେ ଏପରି ଦୁର୍ଭାଗ୍ୟଜନକ ଅବସ୍ଥାରୁ ରକ୍ଷା ପାଇବାକୁ ହେଲେ ଝିଅମାନଙ୍କୁ ଶିକ୍ଷିତା କରିବାକୁ ପଡ଼ିବ । ଏହାଦ୍ୱାରା ଦେଶର ବହୁମୁଖୀ ଉପକାର ସାଧିତ ହେବା ସଙ୍ଗେ ସଙ୍ଗେ ସେମାନେ ସ୍ୱାବଲମ୍ବନଶୀଳ ହୋଇପାରିବେ । ନାରୀ ପ୍ରତି ରହିଥିବା ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ନ ଆସିଲେ, ସେମାନଙ୍କର କିମ୍ବା ସମାଜର ଅଥବା ପୁରୁଷମାନଙ୍କର କୌଣସି ପ୍ରକାର

ବିକାଶ ସାଧିତ ହୋଇପାରିବ ନାହିଁ । ତେଣୁ ଲେଖକ କୁହନ୍ତି- "ନାରୀମାନଙ୍କ ଶିକ୍ଷା ସକାଶେ ଯେଉଁ ସଂସ୍କାର ଆବଶ୍ୟକ, ତାହା ସମ୍ପାଦନ କରି ସେମାନଙ୍କୁ ସର୍ବାଂଶରେ ଶିକ୍ଷିତ ହେବା ସକାଶେ ସୁଯୋଗ ପ୍ରଦାନ କରିବାକୁ ହେବ । ବିଳାସିତା, ଆତ୍ମମ୍ଭରିତା ପରିତ୍ୟାଗ କରିବାକୁ ହେବ । ପୁରୁଷଙ୍କ ସଙ୍ଗରେ ଦଣ୍ଡାୟମାନ ହୋଇ ମୁକ୍ତିସାଧନ କାର୍ଯ୍ୟରେ ସେମାନଙ୍କ ସହିତ ଅଂଶଗ୍ରହଣ କରିବାକୁ ହେବ । ନାରୀମାନଙ୍କ ବିଷୟରେ ଯାବତୀୟ ବ୍ୟବସ୍ଥା ସମ୍ବନ୍ଧରେ କେବଳ ଯେ ସେମାନଙ୍କ ମତ ଗ୍ରହଣ କରିବାକୁ ହେବ ଏପରି ନୁହେଁ, ଏହାର ପ୍ରଣୟନ ଓ ପ୍ରତିପାଦନରେ ସେମାନଙ୍କୁ ଯଥେଷ୍ଟ ସ୍ୱାଧୀନତା ଦେବାକୁ ହେବ । ସ୍ୱାମୀମାନଙ୍କ ମତ ନନେଇ ସେସବୁ ସେମାନଙ୍କୁ ପାଳନ କରିବାକୁ ବାଧ କରା ହେଉଅଛି । ପୁରୁଷର ଏହି ମନୋବୃତ୍ତି ପରିବର୍ତ୍ତନ କରିବାକୁ ହେବ । କଥାରେ କେବଳ ସ୍ତ୍ରୀକୁ ସହଧର୍ମିଣୀ ବୋଇଲେ ଚଳିବ ନାହିଁ । ନାରୀ ସମ୍ବନ୍ଧରେ ସତୀତ୍ୱ ଓ ମାତୃତ୍ୱ ଭାରତୀୟ ସଭ୍ୟତାର ବୈଶିଷ୍ଟ୍ୟ । ଏହା ଅପେକ୍ଷା ଅମୂଲ୍ୟ ସମ୍ପଦ ଆଉ କିଛି ନାହିଁ । ନାରୀକୁ ଯେପରି ଏକନିଷ୍ଠ ପ୍ରେମରେ ଗ୍ରହଣ କରିବାକୁ ହେବ ଓ ଏହାଦ୍ୱାରା ସତୀତ୍ୱକୁ ମର୍ଯ୍ୟାଦା ରକ୍ଷାକରିବାକୁ ହେବ, ପୁରୁଷକୁ ମଧ ତଦ୍ରୂପ ସ୍ତ୍ରୀ ପ୍ରତି ଏକନିଷ୍ଠ ହେବାକୁ ହେବ । ନାରୀଠାରୁ ଯେପରି ଆଦର୍ଶ ଗୃହିଣୀତ୍ୱ, ଆଦର୍ଶ ମାତୃତ୍ୱ ଦାବି କରାଯାଉଅଛି, ପୁରୁଷକୁ ମଧ ଆଦର୍ଶ ଗୃହୀ, ଆଦର୍ଶ ପିତା ହେବା ସକାଶେ ନିର୍ଦ୍ଦେଶ ଦିଆଯିବ ।" (ପୃ-୨୯୫)

**ରକ୍ଷଣଶୀଳତା ଓ ସାମାଜିକ କୁସଂସ୍କାରର ବିରୋଧ:-** ଭାରତଚନ୍ଦ୍ର ତାଙ୍କ ଆତ୍ମ ଜୀବନୀରେ ସମକାଳୀନ ସମାଜରେ ପରିପୂରିତ କୁସଂସ୍କାରର ବିଲୋପ ନିମିତ୍ତ ଯେପରି ଆହ୍ୱାନ ଦେଇଛନ୍ତି, ତଥାକଥିତ ରକ୍ଷଣଶୀଳ ବ୍ରାହ୍ମଣମାନଙ୍କର ରକ୍ଷିବଦ୍ଧ ଚିନ୍ତାଧାରାକୁ ସେହିପରି ସମାଲୋଚନା କରିଛନ୍ତି । ସେ ସମସ୍ତ ବିରୋଧ ଓ ପ୍ରତିରୋଧ ସତ୍ତ୍ୱେ ସମାଜ ପାଇଁ ପରିବାର ପାଇଁ ଓ ବିଶେଷ କରି ତାଙ୍କ ଝିଅମାନଙ୍କ ପାଇଁ ଯାହା ମଙ୍ଗଳକର, ତାହା କରିବାକୁ ଆଦୌ ଦ୍ୱିଧାବୋଧ କରିନାହାନ୍ତି । ସମ୍ବଲପୁର ବ୍ରାହ୍ମଣମାନଙ୍କ ମଧରେ ରହିଥିବା ରକ୍ଷଣଶୀଳ ମନୋବୃତ୍ତିର ପରିବର୍ତ୍ତନ ପାଇଁ ସେ ଚେଷ୍ଟା କରିଛନ୍ତି । ସମ୍ବଲପୁରର ବ୍ରାହ୍ମଣସମାଜ ବାହାରେ ବିବାହ ସମ୍ପର୍କ ସ୍ଥାପନ ନ କଲେ ଭବିଷ୍ୟତରେ ଅସୁବିଧାର ସମ୍ମୁଖୀନ ହେବାର ବହୁ ସମ୍ଭାବନା ରହିଛି ବୋଲି ତାଙ୍କର ଦୃଢ଼ ଧାରଣା ହୋଇଥିଲା । ପୁରୀ, କଟକ, ବାଲେଶ୍ୱର, ଗଞ୍ଜାମ, ସିଂହଭୂମ ଓ ଗଡ଼ଜାତ ରାଜ୍ୟର ବ୍ରାହ୍ମଣମାନେ ଯେପରି ଭେଦାଭେଦ ଭୁଲି ପରସ୍ପର ମଧରେ ବିବାହ ସମ୍ପର୍କ ସ୍ଥାପନ କରିଛନ୍ତି, ସମ୍ବଲପୁର ବ୍ରାହ୍ମଣମାନେ ତାଙ୍କର ରକ୍ଷଣଶୀଳ ମନୋଭାବ ତ୍ୟାଗକରି ଅନ୍ୟମାନଙ୍କ ପରି ସମ୍ବଲପୁର ବାହାରେ ବୈବାହିକ ସମ୍ପର୍କ କିପରି ସ୍ଥାପନ କରିପାରିବେ, ସେଥିପାଇଁ କେତେକ ସକାରାତ୍ମକ ପଦକ୍ଷେପ ଭାରତଚନ୍ଦ୍ର ଗ୍ରହଣ କରିଥିଲେ ।

ସେତେବେଳେ ବ୍ରାହ୍ମଣ ସମାଜରେ ଝିଅମାନେ ଅଧିକ ପାଠ ପଢ଼ିଲେ ସେମାନଙ୍କର ବିବାହ ପ୍ରସ୍ତାବ ଭାଙ୍ଗି ଯାଉଥିଲା । ଏପରିକି ସ୍ଥିରୀକୃତ ପ୍ରସ୍ତାବ ମଧ୍ୟ ନାକଚ ହୋଇଯାଉଥିଲା । ଲେଖକଙ୍କ ଅନ୍ୟତମ ପ୍ରତିଭାଧାରିଣୀ କନ୍ୟା ସୁଷମାର ବିବାହ ପ୍ରସ୍ତାବ ଏଥିପାଇଁ ଅର୍ଥାତ୍ ତା'ର ପାଠପଢ଼ା ପାଇଁ ନାକଚ ହୋଇଯାଇଥିଲା । ଅନ୍ୟତ୍ର ସୁଷମାର ବିବାହ ପ୍ରାଇଁ ବ୍ୟସ୍ତ ଥିବାବେଳେ ତାଙ୍କ ବନ୍ଧୁ ନାରାୟଣ ନନ୍ଦ ଓ ବନ୍ଧୁପତ୍ନୀ ସୁଷମାକୁ ବୋହୂ କରିବା ନିମିତ୍ତ ପ୍ରସ୍ତାବ ଦେଲେ । ସେମାନେ ଥିଲେ ଓଡ଼ିଆ ବ୍ରାହ୍ମଣ । ଏହି ବିବାହକୁ ଉଭୟ ଓଡ଼ିଆ ବ୍ରାହ୍ମଣ ଓ ଝାଡୁଆ ବ୍ରାହ୍ମଣ ବିରୋଧ କରିବେ ଜାଣି ମଧ୍ୟ ଉଭୟ ଏହି ବିବାହ ନିମିତ୍ତ ରାଜି ହୋଇଥିଲେ । ତାଙ୍କର ଏହି ସଂସ୍କାରମୂଳକ କାର୍ଯ୍ୟକୁ ଧୀରେ ଧୀରେ କିଛି ଲୋକ ସମର୍ଥନ କଲେ ଓ ଆଉ କିଛି ବିରୋଧ କଲେ । ଏହାସତ୍ତ୍ୱେ ସେହି ବିବାହ କାର୍ଯ୍ୟ ଯଥାସମୟରେ ସମାପନ ହୋଇଥିଲା । କଳାହାଣ୍ଡିରେ ଅଷ୍ଟମା କନ୍ୟା ଉମା ସହିତ ଇଞ୍ଜିନିୟର ଭୁବନେଶ୍ୱର ବେହେରାଙ୍କ ବିବାହ ଅନୁଷ୍ଠିତ ହୋଇଥିଲା । କଳାହାଣ୍ଡିରେ ସେ ଯାବତ୍ ଯୁବତୀ ବିବାହ ପ୍ରଚଳିତ ହୋଇନଥିଲା । ଯେଉଁଥିପାଇଁ ସେମାନେ ରକ୍ଷଣଶୀଳ ଗୋଷ୍ଠୀଙ୍କ ପ୍ରତିରୋଧର ସାମ୍ନା କରିଥିଲେ । କିନ୍ତୁ ସେମାନେ ପ୍ରଗତିଶୀଳ ହୋଇଥିବାରୁ ଏହାକୁ ଗୁରୁତ୍ୱ ନ ଦେଇ ବିବାହ କାର୍ଯ୍ୟ କରିଥିଲେ ଓ ସେଠାକାର ଇଂରାଜୀ ଶିକ୍ଷିତ ତାଙ୍କୁ ଏଥିରେ ପୂର୍ଣ୍ଣ ସହଯୋଗ କରିଥିଲେ ।

ସେତେବେଳେ ସୁଷମା ସହିତ ନାରାୟଣ ନନ୍ଦଙ୍କ ପୁତ୍ରର ବିବାହ ଥିଲା ଓଡ଼ିଆ-ଝାଡୁଆ ବ୍ରାହ୍ମଣର ବିବାହ ଏବଂ ଏହାଥିଲା ସମ୍ବଲପୁରରେ ସମ୍ପୂର୍ଣ୍ଣ ନୂତନ ବ୍ୟାପାର । ସୁଷମା ଥିଲା ସମ୍ବଲପୁରର ପ୍ରଥମ ମହିଳା ଡାକ୍ତର । ତା'ର ବିବାହକୁ ଝାଡୁଆ ପଡ଼ାର ବ୍ରାହ୍ମଣମାନେ ସହ୍ୟ କରି ପାରିନଥିଲେ, ଯଦିଓ ଲେଖକ ସମାଜସଂସ୍କାର ଉଦ୍ଦେଶ୍ୟରେ ଏପରି ବିବାହର ଆୟୋଜନ କରିଥିଲେ । ମାତ୍ର ଏହି ବିବାହ ତତ୍‌କାଳୀନ ସମାଜରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଝାଡୁଆ ବ୍ରାହ୍ମଣ ହୋଇ ଓଡ଼ିଆ ବ୍ରାହ୍ମଣ ଘରେ ଝିଅ ଦେଇଥିବାରୁ ତାଙ୍କ ବିରୋଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ନେବା ପାଇଁ ତାଙ୍କ ସମୁଧି ରାମଚନ୍ଦ୍ର ମିଶ୍ର ଅଭିଯୋକ୍ତା ହେଲେ ଏବଂ ତା'ର ସମର୍ଥକ ହେଲେ ଲେଖକଙ୍କ ସହଧର୍ମିଣୀଙ୍କ ମାମୁଙ୍କ କକା ପୁଅ ଭାଇ ଶ୍ରୀ ଶଙ୍କର ପ୍ରସାଦ ମିଶ୍ର । ବ୍ରହ୍ମପୁରା ମନ୍ଦିରରେ ସେଥିପାଇଁ ସଭା ହେଲା । ସେହି ସଭାରେ ଭାରତଚନ୍ଦ୍ରଙ୍କୁ କିଛି କହିବାର ସୁଯୋଗ ନ ଦିଆଯାଇ ତାଙ୍କୁ ସାମାଜିକ ବାସନ୍ଦ କରାଗଲା । ଏପରିକି ତାଙ୍କ ବାରବର୍ଷିଆ କନ୍ୟା ପୂର୍ଣ୍ଣିମା ୩୫ ଦିନ କାଳ ଟାଇଫଏଡରେ ପୀଡ଼ିତା ହୋଇ ତା' ୬/୮/୧୯୪୫ରିଖରେ ଇହଲୀଳା ତ୍ୟାଗ କରିବାରୁ ଯେଉଁ ବନ୍ଧୁମାନେ ତା'ର ଶବ ସଂସ୍କାରରେ ଯୋଗ ଦେଇଥିଲେ, ସେମାନଙ୍କୁ ବାସନ୍ଦ କରାଗଲା । ଯେଉଁଥିପାଇଁ ତାଙ୍କ ଜାମାତା ଶିବନାରାୟଣ ପାଢ଼ୀ ଅଦାଲତରେ ସଭାପତି ରାମଚନ୍ଦ୍ର ମିଶ୍ର, ଶ୍ରୀପତି ମାଝି, ଶଙ୍କର ପ୍ରସାଦ ମିଶ୍ର ଆଦିଙ୍କ ନାମରେ ମାନହାନି ମକଦ୍ଦମା କଲେ ଏବଂ ଶିବନାରାୟଣଙ୍କର

ଅଦାଲତରେ ଡିଗ୍ରୀ ହେଲା । ଏହାସତ୍ତ୍ୱେ ସେହିପରି କିଛିଦିନ ବାସନ୍ଦରେ କଟିଗଲା । ଶେଷରେ ସମ୍ମୁଖିଙ୍କ ପିଲାମାନେ ଧୀରେଧୀରେ ତାଙ୍କ ସହିତ ମିଶିଲେ । ଗୋଟିଏ ଦୌହିତ୍ରର ବ୍ରତୋପନୟନ ସମୟରେ ତାଙ୍କ ଝିଅ ଶ୍ୱଶୁର ବନମାଳୀ ପୂଜାରୀଙ୍କ ଘରେ ମତାନ୍ତର ସୃଷ୍ଟି ହେଲା । ଶ୍ରୀ ପୂଜାରୀ ସଭାରେ ଦରଖାସ୍ତ ଦେଲେ ଲେଖକଙ୍କ ପ୍ରତି ହୋଇଥିବା ବିହିତ ବ୍ୟବସ୍ଥା ରଦ୍ଦ କରି ତାଙ୍କ ପୌତ୍ରର ବ୍ରତୋପନୟନରେ ସମସ୍ତ ବ୍ରାହ୍ମଣସମାଜ ଯୋଗ ଦେବାକୁ । ତାହା ସଭାରେ ଆଲୋଚନା ହେଲା ଓ ଶେଷରେ ତାଙ୍କ ବିରୋଧରେ ଗୃହୀତ ନିର୍ଦ୍ଧାରଣ ରଦ୍ଦ ପ୍ରସ୍ତାବ କଲେ ଶ୍ରୀରାମଚନ୍ଦ୍ର ମିଶ୍ର ଏବଂ ସଭାପତି ଘୋଷଣା କଲେ ଯେ, ଉକ୍ତ ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗୃହୀତ ହେଲା ।

ଲେଖକ ତାଙ୍କ ଆତ୍ମଜୀବନୀରେ ଅନ୍ୟ ଏକ ସାମାଜିକ କୁସଂସ୍କାର ବିଷୟରେ ଆଲୋଚନା କରିଛନ୍ତି । ତାହାହେଲା- ସମ୍ବଲପୁରରେ ବ୍ରାହ୍ମଣମାନେ ସାଧାରଣତଃ ଆରଣ୍ୟକ ଓ ଉତ୍କଳୀ- ଏହିପରି ଦୁଇ ଭାଗରେ ବିଭକ୍ତ । ଏମାନଙ୍କୁ ଝାଡ଼ୁଆ ଓ ଓଡ଼ିଆ ବୋଲି କୁହନ୍ତି । ଝାଡ଼ୁଆପଡ଼ାରେ ଝାଡ଼ୁଆ ବ୍ରାହ୍ମଣ ଓ ନନ୍ଦପଡ଼ାରେ ଓଡ଼ିଆ ବ୍ରାହ୍ମଣ ରହଥାନ୍ତି । ଉଭୟ ସମାଜର ସଭା ଅଛି । ଏଥିରେ ସାମାଜିକ ଦୋଷପାଇଁ ଦଣ୍ଡ ନିର୍ଦ୍ଧାରଣ କରାଯାଇଥାଏ । ଲେଖକ ତାଙ୍କ ପିତୃପକ୍ଷ ଭୋଜିକୁ ହଳଧରା ବ୍ରାହ୍ମଣଙ୍କୁ ଡାକିଥିବାରୁ ବ୍ରହ୍ମପୁରା ମନ୍ଦିରରେ ଝାଡ଼ୁଆ ବ୍ରାହ୍ମଣ ସମାଜର ସଭାପତି ତାଙ୍କୁ ବାରଣ କରାଯିବାର ପ୍ରସ୍ତାବ କଲେ । ବହୁ ଯୁକ୍ତି ପରେ ସେ ହଳଧରାଙ୍କୁ (ଯେଉଁମାନେ ଅଭାବରେ ପଡ଼ି ହଳ ଧରିଛନ୍ତି) ଗାୟତ୍ରୀ ମନ୍ତ୍ର ଜପ କରାଇ ପ୍ରାୟଶ୍ଚିତ କରାଇଥିଲେ ବି ତତ୍କାଳୀନ ସଭାପତି ତାଙ୍କୁ ଗ୍ରହଣ ନକରିବାରୁ ସମାଜ ଦୁଇ ଦଳରେ ବିଭକ୍ତ ହୋଇଗଲା । ହଳଧରାଙ୍କ ପକ୍ଷରେ ଅଧିକ ରହିଲେ । ସଂଖ୍ୟାଧିକ ଦଳ ସଭାପତି ରାମକୃଷ୍ଣ ବେହେରାଙ୍କୁ ପଦଚ୍ୟୁତ କରି ରାମଚନ୍ଦ୍ର ମିଶ୍ରଙ୍କୁ ସଭାପତି କଲେ । ପ୍ରତ୍ୟେକ ସଭାରେ ଭାରତଚନ୍ଦ୍ରଙ୍କୁ ଗୁରୁତ୍ୱ ଦିଆଯିବା ସଙ୍ଗେ ସଙ୍ଗେ ତାଙ୍କଠାରୁ ଉଚିତ୍ ପରାମର୍ଶ ନିଆଯାଉଥିଲା । ଓଡ଼ିଆ ବ୍ରାହ୍ମଣ ଓ ଝାଡ଼ୁଆ ବ୍ରାହ୍ମଣଙ୍କ ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା ପାଇଁ ସେ ଅନେକ ଚେଷ୍ଟା କରିଥିଲେ । ଏଥିପାଇଁ ନିଜ ଝିଅକୁ ମଧ୍ୟ ଓଡ଼ିଆ ବ୍ରାହ୍ମଣ ଘରେ ବିବାହ ଦେଇଥିଲେ । ଶୀତଳ ଷଷ୍ଠୀରେ ସେ ପାର୍ବତୀଙ୍କୁ ଝିଅ କରି ଶିବଙ୍କ ସହିତ ବିବାହ ଦେବାକୁ ଚେଷ୍ଟା କରିବାରୁ ବିଭିନ୍ନ ପକ୍ଷ ବିଶେଷ କରି ନନ୍ଦପଡ଼ା ବ୍ରାହ୍ମଣମାନେ ଆପତ୍ତି କରିଥିଲେ ଓ ଡେପୁଟି କମିଶନର ନୀଳମଣି ସେନାପତିଙ୍କ ନିକଟରେ ଆପତ୍ତି କରିଥିଲେ । ସେ ଯୁକ୍ତି ଦେଇ ଏହାର ଉଦ୍ଦେଶ୍ୟ ବୁଝାଇ ଦେବାରୁ ଶେଷରେ ନନ୍ଦପଡ଼ା ବ୍ରାହ୍ମଣ ତାଙ୍କ ଆପତ୍ତି ଦରଖାସ୍ତ ଉଠାଇ ନେଇଥିଲେ ଓ ପାର୍ବତୀଙ୍କ ବିବାହ ଶୃଙ୍ଖଳାର ସହିତ ସାଧିତ ହୋଇଥିଲା ।

ସାରଦା ଆଇନ୍ ପ୍ରଣୟନ ପରେ ବାଲ୍ୟ ବିବାହ ପ୍ରଥାକୁ ବନ୍ଦ କରି ଦିଆଯାଇଥିଲେ ମଧ୍ୟ ଓଡ଼ିଶାର ଅନେକ ସ୍ଥାନରେ ବାଲ୍ୟ ବିବାହ ଚାଲିଥିଲା । କଠିନ ପଦକ୍ଷେପ ନିଆଯାଉ

ନ ଥିବାରୁ ଏ ପ୍ରଥା ସଂପୂର୍ଣ୍ଣ ବନ୍ଦ ହେବା ସମ୍ଭବ ନଥିଲା । ଭାରତଚନ୍ଦ୍ର ଜଣେ ସଚେତନ ବ୍ୟକ୍ତି ହୋଇଥିବାରୁ ସେ ପ୍ରଥମେ ସାରଦା ଆଇନ୍‌ର ଏହି ଉଚିତ୍ ନ୍ୟାୟ ବ୍ୟବସ୍ଥାକୁ ଗ୍ରହଣ କରି ନେଇଥିଲେ । ପୁରୀରେ ଥିବା ସମୟରେ ୧୯୩୪ ସାଲ ମେ ମାସରେ ଏକମାସ ଛୁଟିନେଇ ସେ ତାଙ୍କ ଚତୁର୍ଥ କନ୍ୟା ନିରୁପମାର ଏବଂ ଜ୍ୟେଷ୍ଠପୁତ୍ର ସତ୍ୟଗୋପାଳର ବିବାହ କାର୍ଯ୍ୟ ସମ୍ପନ୍ନ କରାଇଥିଲେ । ସେତେବେଳେ ନିରୁପମାର ବୟସ ଥିଲା ୧୪ ଏବଂ ସତ୍ୟଗୋପାଳର ୧୯ । ଉଭୟ ବିବାହ ସାରଦା ଆଇନ୍ ଅନୁଯାୟୀ ଅନୁଷ୍ଠିତ ହୋଇଥିଲା ଏବଂ ଏହାଥିଲା ସମ୍ବଲପୁର ବ୍ରାହ୍ମଣସମାଜର ସାରଦା ଆଇନ୍ ଅନୁସାରେ ସର୍ବ ପ୍ରଥମ ବିବାହ । ବାସ୍ତବରେ ତତ୍‌କାଳୀନ ରଢ଼ିବାଦୀ ଓ ରକ୍ଷଣଶୀଳ ସମାଜରେ ପ୍ରଚଳିତ ବିଭିନ୍ନ କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୋଧରେ ଭାରତଚନ୍ଦ୍ର ଯେପରି ଲଢ଼ି ସାହସିକତାର ପରଚୟ ପ୍ରଦାନ କରିଛନ୍ତି ତାହା ବିଶେଷ ଭାବରେ ପ୍ରଶଂସାଯୋଗ୍ୟ । ଭାରତଚନ୍ଦ୍ରଙ୍କ ସମ୍ପର୍କରେ ମତପ୍ରଦାନ କରିବାକୁ ଯାଇ ଅଜିତ୍ ନାୟକ ଯଥାର୍ଥରେ କୁହନ୍ତି- "ସମାଜରେ ପ୍ରଚଳିତ ସଂସ୍କାରର ବିରୋଧରେ ଯାଇ ଭିନ୍ନ ଏକ ଉଦାହରଣ ସୃଷ୍ଟି କରିବା ସମସ୍ତଙ୍କ ପକ୍ଷରେ ସମ୍ଭବପର ହୋଇ ନଥାଏ । କିନ୍ତୁ ଦୃଢ଼ ଇଚ୍ଛାଶକ୍ତି ଓ ସ୍ୱନିର୍ଣ୍ଣୟ ଉପରେ ଭରସା ଥିବା ବିପ୍ଳବୀ ବ୍ୟକ୍ତିହିଁ ଏପରି କରିପାରେ । ପଶ୍ଚିମ ଓଡ଼ିଶାର ଏଭଳି ବୈପ୍ଳବିକ ଚିନ୍ତାସଂପନ୍ନ ବ୍ୟକ୍ତିତ୍ୱ ହେଉଛନ୍ତି ଭାରତଚନ୍ଦ୍ର ନାୟକ । ଯେଉଁ ସମୟରେ ଘରର ପରଦା ଆଢ଼ୁଆଳରେ ନାରୀ ରହିବାର ପରମ୍ପରା ଥିଲା, ସେ ସମୟରେ ସେ ନାରୀଶିକ୍ଷାର ମୂଳଦୁଆ ପକାଇଥିଲେ ଓ ଏଥିପାଇଁ ସେ ସ୍ଥାନୀୟ ଅଞ୍ଚଳର ଲୋକମାନଙ୍କ କଠୋର ବିରୋଧର ସମ୍ମୁଖୀନ ମଧ୍ୟ ହୋଇଥିଲେ । ତେବେ ତାଙ୍କ ଅଙ୍ଗୀକାରବଦ୍ଧତା ପାଖରେ ରକ୍ଷଣଶୀଳ ସମାଜର ବିରୋଧ ହାର ମାନିଥିଲା ।" (ନାରୀ ଶିକ୍ଷାର ଆଲୋକ ବର୍ତ୍ତିକା- ଅଜିତ ନାୟକ, ପୃ- ୩୮; ଦ ସନ୍‌ଡ଼େ ଇଣ୍ଡିଆନ- (Volume-6, Issue-2,) ସମସ୍ତ ପ୍ରତିକୂଳତା ବିରୋଧରେ ସଂଗ୍ରାମ କରି ସେ ପଶ୍ଚିମ ଓଡ଼ିଶାରେ ନାରୀ ଶିକ୍ଷା ପ୍ରସାର କରିବାକୁ ସଂକଳ୍ପ କରିଥିଲେ ଏବଂ ସେ ସମୟରେ ଏପରି ଏକ ଦୁଃସାହସିକ ଅଭିଯାନ ସେ ଆରମ୍ଭ କରିଥିଲେ ନିଜ ଗୃହରୁ କନ୍ୟାମାନଙ୍କୁ ଶିକ୍ଷାଦାନ ମାଧ୍ୟମରେ । ପୁନରାୟ ଓଡ଼ିଆ ଓ ଆରଣ୍ୟକ ବ୍ରାହ୍ମଣଙ୍କ ମଧ୍ୟରେ ପ୍ରଥମେ ନିଜ ପରିବାରରେ ବୈବାହିକ ସମ୍ପର୍କ ସ୍ଥାପନ କରି ଯୁଗ ଯୁଗ ଧରି ଚଳିଆସିଥିବା କୁସଂସ୍କାର ମୂଳରେ କୁଠାରଘାତ କରିଥିଲେ । ଏହି ଦୃଷ୍ଟିରୁ ଭାରତଚନ୍ଦ୍ରଙ୍କୁ ଜଣେ ବିପ୍ଳବୀ ସଂସ୍କାରକ ବୋଲି କୁହାଯାଇପାରେ ।

ତତ୍‌କାଳୀନ ରାଜା ଓ ସେମାନଙ୍କର ମାନସିକତା:- ଭାରତଚନ୍ଦ୍ର ବାଲ୍ୟ ସମୟରୁ ଚାକିରି କାଳ ମଧ୍ୟରେ ଅନେକ ରାଜାଙ୍କ ସମ୍ପର୍କରେ ଆସିଥିଲେ ଓ ସେମାନଙ୍କ ମାନସିକତା ସମ୍ବନ୍ଧରେ ଉତ୍ତମ ରୂପେ ପରିଚିତ ଥିଲେ । ସେ ତାଙ୍କ ଆତ୍ମଜୀବନୀରେ ସେହି ରାଜାମାନଙ୍କ ମାନସିକ ତଥା ବିଚାରଧାରା ସମ୍ପର୍କରେ କେତେକ ସୂଚନା ପ୍ରଦାନ କରିଛନ୍ତି ।

ପ୍ରସଙ୍ଗକ୍ରମେ ସେ ସେହି ରାଜବଂଶର ଇତିହାସ ସମ୍ବନ୍ଧରେ ମଧ୍ୟ ସଂକ୍ଷେପରେ ଅନେକ ବିବରଣୀ ପ୍ରଦାନ କରିଛନ୍ତି । ପ୍ରଥମେ ସେ ପାଟଣାରାଜାଙ୍କ ଖିଆଲି ମନୋବୃତ୍ତି ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ରାଜାବଂଶ ସମ୍ବନ୍ଧରେ ଲେଖିଛନ୍ତି- ସେ କାଳର ଦେଶୀୟ ରାଜ୍ୟ ପାଟଣା, ବର୍ତ୍ତମାନ ବଲାଙ୍ଗିର ପାଟଣା ଜିଲ୍ଲା ୧୯୪୮ ମସିହା ଜାନୁଆରୀ ପ୍ରଥମ ଦିନ ପାଟଣା ବଲାଙ୍ଗୀର ପାଟଣା ଜିଲ୍ଲାରେ ପରିଣତ ହେଲା । ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ପାଟଣାର ଶେଷ ଶାସକ । ପାଟଣା ରାଜବଂଶର ଇତିହାସ ଆଲୋଚନା କରି ପ୍ରଥମ ରାଜା ରମାଇ ଦେଓଙ୍କ ଠାରୁ (୧୧୫୯-୧୨୧୧) ଆରମ୍ଭ କରି ଶୂରପ୍ରତାପ ଦେଓଙ୍କ (୧୬୬୬-୭୧) ପର୍ଯ୍ୟନ୍ତ ୨୭ ଜଣ ରାଜା ରାଜତ୍ୱ କରିଥିବାର ସୂଚନା ଦେଇଛନ୍ତି । ପ୍ରତ୍ୟେକ ପୂର୍ବବର୍ତ୍ତୀ ରାଜାଙ୍କ ପୁତ୍ର ଥିଲେହେଁ ଶେଷ ୪ ଜଣ ରାମଚନ୍ଦ୍ର ସିଂହ, ଦଳଗଞ୍ଜନ ସିଂହ, ପୃଥ୍ୱୀରାଜ ସିଂହ ଓ ରାଜେନ୍ଦ୍ର ନାରାୟଣ ସିଂହ ରଜା ପୁଅ ନଥିଲେ । ଅବଶ୍ୟ ସେ ଏହାର ଇତିହାସ ସଂକ୍ଷେପରେ ଆଲୋଚନା କରିଛନ୍ତି । ତତ୍‌କାଳୀନ ରାଜା ଦଳଗଞ୍ଜନ ସିଂହଙ୍କ ସମ୍ପର୍କରେ ଗୋଟିଏ ରୋଚକ ଘଟଣାର ଅବତାରଣା କରି କୁହନ୍ତି-

ଲେଖକ ୧୮୯୮ ମସିହାରେ ବଲାଙ୍ଗିର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପଢ଼ିବାକୁ ଯିବା ସମୟରେ ମହାରାଜା ଦଳଗଞ୍ଜନ ସିଂହ ପାଟଣାରେ ରାଜତ୍ୱ କରୁଥିଲେ । ସମ୍ବଲପୁରର ଶ୍ରୀବନମାଳୀ ମିଶ୍ର ଥିଲେ ତାଙ୍କର ଦେବାନ୍ । ରାଜା ବେଶ୍ ଅବୁଝା ଥିଲେ । ବର୍ତ୍ତମାନର ରାଜେନ୍ଦ୍ର ପାର୍କ ସେତେବେଳେ ଏକ ବଡ଼ ପଡ଼ିଆ ଥିଲା ଏବଂ ସେଥିରେ ଗୋଟିଏ 'ବାଘ ଘର' ଥିଲା । ଘରଟି ୩/୪ଟି ପିଞ୍ଜରାରେ ବିଭକ୍ତ ହୋଇଥିଲା । ଗୋଟିଏରେ ବାଘ, ଅନ୍ୟଟିରେ ଛେଳି ଓ ଆଉ ଗୋଟିଏରେ ଘୁଷୁରି ରହୁଥିଲେ । ବାଘଘରର ଜଗୁଆଳିକୁ ରାଜା ନିର୍ଦ୍ଦେଶ ଦେଇଥିଲେ ଛେଳିଘର କବାଟ ଖୋଲିବାକୁ । ସେ ଭୁଲ୍‌ରେ ଘୁଷୁରିଘରକବାଟ ଖୋଲି ଦେଇଥିଲା । ରାଜା ଆଦେଶ ଦେଲେ ତା'ର ହାତ ଗୋଡ଼ ବାନ୍ଧି ବାଘ ପିଞ୍ଜରାରେ ପକାଇ ଦେବାକୁ । ଯଥା ସମୟରେ ବନମାଳୀ ମିଶ୍ର ଉପସ୍ଥିତ ହୋଇ ତାକୁ ରକ୍ଷା କରିଥିଲେ ।

ରାଜାଙ୍କ ଅବୁଝାମଣା ନୀତିର ଅନ୍ୟ ଏକ ଉଦାହରଣ ଲେଖକ ଦେଇଛନ୍ତି । ୧୯୦୫ ମସିହାର ଘଟଣା । ଲେଖକ ସେତେବେଳେ ରେଭେନ୍‌ସା କଲେଜର ଛାତ୍ର । ଗ୍ରୀଷ୍ମାବକାଶରେ ଆଗଲପୁର ଆସିଥିବା ବେଳେ ସହାଧ୍ୟାୟୀ ବନ୍ଧୁ ସନାତନ ପୂଜାରୀଙ୍କ ବଲାଙ୍ଗିର ଘରେ ଅତିଥି ହୋଇଥିଲେ । ବନ୍ଧୁଙ୍କ ବାପା କମଳଲୋଚନ ପୂଜାରୀ ଥିଲେ ପାଟଣା ଷ୍ଟେଟ୍‌ର ବନ୍ଦୋବସ୍ତ ଅଧିକାରୀ । ସେଦିନ ସହରର ରଘୁନାଥ ମନ୍ଦିର ସମ୍ମୁଖରେ ରାମଲୀଳା ଦେଖିବାକୁ ଯାଇଥିଲେ । ସେହି ସମୟରେ ରାଜକୁମାର ଯାତ୍ରାସ୍ଥଳକୁ ଆସିଲେ । ମନ୍ଦିର ପିଣ୍ଡାରେ ସଜିତ ଆସନରେ ତାଙ୍କୁ ବସାଇବା ପାଇଁ ବାଟରେ ଠିଆ ହୋଇଥିବା ଲୋକଙ୍କୁ ରାଜାଙ୍କ ଲୋକେ ବେତରେ ମାଡ଼ ଦେଇ ଘଉଡ଼ାଉ ଥିଲେ । ଉପସ୍ଥିତ ଲେଖକ ଭାରତଚନ୍ଦ୍ର ତାଙ୍କ ଅତ୍ୟାଚାର ସମ୍ପର୍କରେ

ସାମାନ୍ୟ ପ୍ରତିକ୍ରିୟା ପ୍ରକାଶ କରିବାରୁ ରାଜକୁମାରଙ୍କ ବିଶ୍ୱାସୀ ଚାକର ଚିରଗୁଣି ତାହା ଶୁଣି ପରଦିନ ରାଜାଙ୍କ ନିକଟରେ କହିଦେଲା । ପରଦିନ ରାଜାଙ୍କ ଆଦେଶରେ ଭାରତଚନ୍ଦ୍ରଙ୍କୁ ବେତପ୍ରହାର ହେବାପୂର୍ବରୁ ଉପସ୍ଥିତ ବୁଦ୍ଧିଦ୍ୱାରା ସେ ନିଜକୁ ରକ୍ଷା କରିଥିଲେ ଓ ବେତପ୍ରହାର ଖାଇଥିଲା ଚିରଗୁଣି ।

ପାଟଣା ଷ୍ଟେଟ୍‌ର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହ ମହାରାଜା ପୃଥ୍ୱୀରାଜ ସିଂହଙ୍କ ପୌଷ୍ୟପୁତ୍ର । ସେ ଥିଲେ ଜଣେ ଯୋଗ୍ୟ ବ୍ୟକ୍ତି । ପୃଥ୍ୱରାଜ ସିଂହଙ୍କ ୧୯୨୪ ମସିହାରେ ମୃତ୍ୟୁପରେ ରାଜେନ୍ଦ୍ର ନାରାୟଣ ପାଟଣା ସିଂହାସନ ଆରୋହଣ କରିଥିଲେ । ବଲାଙ୍ଗିରରେ ରାଜେନ୍ଦ୍ର କଲେଜ ସ୍ଥାପନ ଓ ରାଜନୀତି କ୍ଷେତ୍ରରେ ଗଣତନ୍ତ୍ର ପରିଷଦ ଗଠନ ତାଙ୍କର କୀର୍ତ୍ତି । ସେତେବେଳେ ରାଜାମାନେ ଇଂରେଜ କର୍ମଚାରୀଙ୍କ ହସ୍ତରେ କ୍ରୀଡ଼ାନକ ଥିଲେ ଏବଂ କୌଣସି ଗଡ଼ଜାତ ପ୍ରଜା ଯଦି ପ୍ରଗତିକାମୀ ହୁଅନ୍ତି ଅଥବା ସରକାରଙ୍କୁ ସମାଲୋଚନା କରନ୍ତି, ତେବେ ତାଙ୍କୁ କଠୋର ହସ୍ତରେ ଦମନ କରାଯାଉଥିଲା । ଇଂରେଜମାନେ ଭାରତ ଛାଡ଼ି ଯିବାର କିଛି ଦିନ ପୂର୍ବେ ଇଂରେଜ ସରକାର ରାଜାମାନଙ୍କୁ ନିଜ ନିଜ ଅଧିକୃତ ସ୍ୱତ୍ୱ ପରିତ୍ୟାଗ କରି ସାର୍ବଭୌମତ୍ୱ ପ୍ରଦାନ କଲେ । ଅଖଣ୍ଡିତ ଭାରତ ଦ୍ୱିଖଣ୍ଡିତ ହେଲା ପରେ ସେମାନେ ଯେଉଁ ରାଷ୍ଟ୍ର ସହିତ ସମ୍ମିଳିତ ହୋଇ ରହିବାକୁ ଚାହିଁବେ ତଦନୁସାରେ କାର୍ଯ୍ୟ କରିବାକୁ କ୍ଷମତା ଦେଇଦେଲେ । ଏହି ଅବସରରେ ଓଡ଼ିଶାର ରାଜ୍ୟ ସମୂହର ଶାସକ ଗୋଷ୍ଠୀ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍‌ସି ସୃଷ୍ଟି କଲେ । ଏହି ଅଞ୍ଚଳ ପାଇଁ ହାଇକୋର୍ଟ ସ୍ଥାପିତ ହେଲା । ପାଟଣା ପରି ବଡ଼ ବଡ଼ ରାଜ୍ୟରେ ବ୍ୟବସ୍ଥାପକ ସଭା ଓ ମନ୍ତ୍ରୀମଣ୍ଡଳ ଗଢ଼ାଗଲା । ଏହାପରେ ମଧ ପ୍ରଜାଙ୍କ ମୌଳିକ ଅଧିକାର କ୍ଷୁର୍ଣ୍ଣ ଏବଂ ଶାସକ ବର୍ଗଙ୍କ ଶାସନ ନୀତି ଅକ୍ଷୁର୍ଣ୍ଣ ରହିଥିବା ଅନୁଭୂତ ହେଲା । ପରିଶେଷରେ ଲୌହମାନବ ପଟେଲଙ୍କ ଦ୍ୱାରା ଗଡ଼ଜାତର ସମ୍ମିଶ୍ରଣ ହେବାରୁ ଗଡ଼ଜାତବାସୀ ସ୍ୱାଧୀନତା ଲାଭ କଲେ । ଗଡ଼ଜାତର ମିଶ୍ରଣ ପରେ ରାଜାଙ୍କ କ୍ଷମତା ହ୍ରାସ ପାଇଥିଲା । ଲେଖକ ବଣେଇରେ ଦେୱାନ ଭାବରେ କାର୍ଯ୍ୟ କରୁଥିବା ସମୟରେ, ସେଠାକାର ରାଜା କିପରି ତାଙ୍କୁ ଅସୁବିଧାରେ ପକାଇବାକୁ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ, ତାହା ପୂର୍ବରୁ ଆଲୋଚିତ ହୋଇଛି ।

ଆଗଲପୁର ସମ୍ପର୍କରେ ସୂଚନା ଦେବାବେଳେ ଲେଖକ ସେଠାକାର ରାଜା ଓ ରାଜପୁତ୍ରଙ୍କ ଆଚରଣ ସମ୍ପର୍କରେ କେତେକ ତଥ୍ୟ ପ୍ରଦାନ କରିଛନ୍ତି । ମହାରାଜା ହୀରା ବଜ୍ରଧର ଦେଓଙ୍କ (୧୮୪୮-୬୬) ତୃତୀୟ ରାଣୀଙ୍କ ପୁତ୍ର ବୈଜଲ ସିଂହ ଆଗଲପୁରରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । ବୈଜଲ ସିଂହଙ୍କ ତିନିପୁତ୍ର ମଧ୍ୟରୁ ମଦନ ସିଂହ ଜ୍ୟେଷ୍ଠ, ଧ୍ରୁବରାଜ ସିଂହ ମଧ୍ୟମ ଓ ବଳିୟାର ସିଂହ କନିଷ୍ଠ । ପିତାଙ୍କ ମୃତ୍ୟୁପରେ ମଦନମୋହନ ଜମିଦାର ହେବାର କିଛି ଦିନପରେ ମୃତ୍ୟୁ ବରଣ କଲେ । ଧ୍ରୁବରାଜ ସିଂହଙ୍କ ପାଠପ୍ରତି

ଅନୁରାଗ ଥିଲା । ଭାରତଚନ୍ଦ୍ରଙ୍କୁ ସେ ସ୍ନେହ କରୁଥିଲେ । ଛୁଟିରେ ଘରକୁ ଗଲେ ସେ ପଢୁଥିବା ପାଠ ବିଷୟରେ ତାଙ୍କୁ ଡାକି ଆଲୋଚନା କରୁଥିଲେ । ଅନ୍ୟ ବାଳକଙ୍କୁ ଭାରତଚନ୍ଦ୍ରଙ୍କ ଆଦର୍ଶ ଅନୁକରଣ ପାଇଁ ଉପଦେଶ ଦେଉଥିଲେ । ତାଙ୍କ ଇଚ୍ଛାନୁସାରେ ତାଙ୍କ ପୁତ୍ରକୁ କିଛି ପଢ଼ାଉଥିଲେ ମଧ୍ୟ । ସେମାନେ ନିଜକୁ ରାଜପୁତ୍ର ମନେ କରୁଥିବାରୁ ଦିନେ ଅଶିଷ୍ଟ ଆଚରଣ କଲେ । ତାଙ୍କୁ ଉଚିତ୍ ଶିକ୍ଷା ଦେବାଲାଗି ଏବଂ ସାଧାରଣ ପିଲାଙ୍କ ସହିତ ମିଶିବା ଉଚିତ୍ ଭାବି ରାଜକୁମାର କଲେଜ ପରିବର୍ତ୍ତେ ସାଧାରଣ ପିଲାଙ୍କ ସହିତ ମିଶି ପଢ଼ିବା ପାଇଁ ଧ୍ରୁବରାଜ ସିଂହଙ୍କୁ ବୁଝାଇଲେ ଏବଂ ପଲିଟିକାଲ ଏଜେଣ୍ଟଙ୍କୁ ଖଣ୍ଡିଏ ପତ୍ରର ଚିଠାକରି ପଠାଇଦେଲେ । ଏହି କାରଣରୁ ସେହି ରାଜପୁତ୍ରଙ୍କୁ ସମ୍ବଲପୁର ଜିଲ୍ଲା ସ୍କୁଲରେ ଭର୍ତ୍ତି କରାଗଲା । ୧୯୦୯ ମସିହାରେ ଲେଖକ ସବ୍‌ଡେପୁଟି କଲେକ୍ଟର ପଦରେ ଅବସ୍ଥାପିତ ହେବାପରେ ଜିଲ୍ଲା ସ୍କୁଲରେ ପଢୁଥିବା ଲକ୍ଷ୍ମୀନାରାୟଣ ସିଂହଙ୍କ ଅଭିଭାବକତ୍ୱ ଦାୟିତ୍ୱ ନେଇ ତାଙ୍କୁ ଜଣେ ଉତ୍ତମ ମଣିଷ କରି ଗଢ଼ିବାରେ ସାହାଯ୍ୟ କରିଥିଲେ ।

ସେତେବେଳେ ଗଡ଼ଜାତର ରାଜାମାନେ ପ୍ରଜାମାନଙ୍କୁ ବିଚିତ୍ର ଦଣ୍ଡ ପ୍ରଦାନ କରୁଥିଲେ । କେତେବେଳେ ଦଣ୍ଡ କଠୋର ତ ଅନ୍ୟ କେତେବେଳେ ଦଣ୍ଡ ବିଚିତ୍ର ଧରଣର । ଗଡ଼ଜାତ ରାଜ୍ୟରେ କର୍ତ୍ତୃପକ୍ଷଙ୍କ କୋପ ଦୃଷ୍ଟିରେ ପଡ଼ିଲେ ରାଜ୍ୟରୁ ନିର୍ବାସନ ଥିଲା ଅବଧାରିତ ଦଣ୍ଡ । ସେହି କାରଣରୁ ତାଙ୍କ ପିଲାଦିନର ସାଙ୍ଗ ପରୀକ୍ଷିତ ରାଜାଙ୍କ ଆକ୍ରୋଶର ଶିକାର ହୋଇ ନିର୍ବାସିତ ହେବା ସଙ୍ଗେ ସଙ୍ଗେ ଭିକ୍ଷୁକ ଭାବରେ ବିଭିନ୍ନ ସ୍ଥାନରେ ବୁଲୁଥିଲେ । ଢେଙ୍କାନାଳରେ ଭାରତଚନ୍ଦ୍ର ଚାକିରି କରୁଥିବା ସମୟରେ ଯାଯାବର ପରି ବୁଲୁଥିବା ସାଙ୍ଗ ପରୀକ୍ଷିତଙ୍କୁ ହଠାତ୍ ଦେଖି ତାଙ୍କୁ ପାଖରେ ମାସେ କାଳ ରଖିଲେ । ମୁଣ୍ଡର ଜଟା କାଟି ପଲିଟିକାଲ ଏଜେଣ୍ଟ ପାଖକୁ ତାଙ୍କୁ ନିଜ ରାଜ୍ୟକୁ ଫେରିଯିବାକୁ ଅନୁମତି ମାଗି ଦରଖାସ୍ତ କରିଥିଲେ ଓ ଶେଷରେ ପରୀକ୍ଷିତଙ୍କୁ ନିଜ ରାଜ୍ୟକୁ ଫେରାଇବାରେ ସମର୍ଥ ହୋଇଥିଲେ ।

ଲେଖକ ତାଙ୍କ ଆତ୍ମଜୀବନୀରେ ଆଉ ଏକ ବିଚିତ୍ର ଦଣ୍ଡ ସମ୍ପର୍କରେ ଅବତାରଣା କରିଛନ୍ତି । ଢେଙ୍କାନାଳ ନିକଟରେ ତିଗିରିଆ ଦେଶୀୟ ରାଜ୍ୟ ରହିଛି । ଏହି ରାଜ୍ୟର ଯୁବରାଜ ଶ୍ରୀ ସୁଦର୍ଶନ ରାୟଙ୍କ ସହିତ ଲେଖକଙ୍କର ପରିଚୟ ଥିଲା । ତିଗିରିଆର ଚମ୍ପକ ଦ୍ୱାଦଶୀ (ରୁକ୍ମିଣୀ ବିବାହ) ପର୍ବ ଅବକାଶରେ ଲେଖକଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଦ୍ୱାଦଶୀ ଦିନ ପ୍ରାତଃକାର୍ଯ୍ୟ ଶେଷକରି ରାଜବାଟୀକୁ ଯିବା ବାଟରେ ଗୋଟିଏ ପକ୍‌କା ଘର ଦେଖିଲେ, ଯାହାର ଦ୍ୱାର ଖୋଲାଥିଲା ଏବଂ ଫାଟକ କାନ୍ଥରେ ଇଂରାଜୀରେ ଲେଖାଥିଲା 'ଜେଲ୍' । 'ଜେଲ'ର ଦ୍ୱାର ଖୋଲା । ଗୋଟିଏ ବି କଏଦୀ ନାହାନ୍ତି । ରାଜବାଟୀରେ ପହଞ୍ଚିବା ମାତ୍ରେ ଯୁବରାଜ ତାଙ୍କୁ ପାଛୋଟି ନେଲେ । ରାଜା ନିଜେ ଫୁଲମାଳ ଗୁନ୍ଥୁଥିଲେ ଏବଂ ଲେଖକଙ୍କୁ ମଧ୍ୟ ଫୁଲମାଳ ଗୁନ୍ଥିବାକୁ କହିଲେ । କିଛି ସମୟ ପରେ ସେଠାକୁ ବିଭିନ୍ନ ମୋକଦ୍ଦମାର

ପକ୍ଷମାନେ ଆସି ପହଞ୍ଚିଲେ । ସାକ୍ଷୀମାନଙ୍କ ମାଧ୍ୟମରେ ସେମାନଙ୍କର ବିଚାର ହେଲା । ସବୁ କାର୍ଯ୍ୟ ମୌଖିକରେ ଚାଲୁଥିଲା । ପରେ ଦଣ୍ଡବିଧାନ ହେଲା । ଦୋଷର ଗୁରୁତ୍ୱ ଅନୁଯାୟୀ ଆସାମୀମାନଙ୍କ ଦଣ୍ଡ ବିଧାନରେ କାହା ପ୍ରତି ପନ୍ଦର ଦିନ ବା ଏକମାସ 'ଆଗୁଳା' ଦିଆଗଲା । 'ଆଗୁଳା'ର ଅର୍ଥ ରାଜଦର୍ଶନ ମନା । ଏହାହିଁ ରାଜାଙ୍କ ବିଚାରରେ ଏକମାତ୍ର ଦଣ୍ଡ । ରାଜଦର୍ଶନ ବାସନ୍ଦ ପ୍ରଜାଙ୍କ ପ୍ରତି ଥିଲା କଠୋର ଦଣ୍ଡ । ପ୍ରଜାମାନେ ରାଜାଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଓ ଭକ୍ତି ପରାୟଣ । ଲେଖକ ଜେଲ କାହିଁକି ହୋଇଛି ବୋଲି ପଚାରିବାରୁ ରାଜା କହିଲେ "ପୋଲିଟିକାଲ ଏଜେଣ୍ଟ କହିଲେ, ଜେଲ ଘର ତିଆରି କରି ରଖିବାକୁ । ତାଙ୍କ ଇଚ୍ଛାନୁସାରେ ଜେଲ ତିଆରି ହୋଇଛି । ଏପ୍ରକାର ବିଚାର ଦେଖି ଲେଖକ ସ୍ତମ୍ଭୀଭୂତ ହେବା ସଙ୍ଗେ ସଙ୍ଗେ ରାଜାଙ୍କ ପ୍ରତି ଭକ୍ତିରେ ତାଙ୍କ ମୁଣ୍ଡ ନଇଁଗଲା ।

**ବିଭିନ୍ନ ପ୍ରଶାସନିକ ପଦକ୍ଷେପ ଓ ସଂସ୍କାର:-** ସରକାରୀ ଚାକିରିରେ ଥିବା ସମୟରେ ଲୋକମାନଙ୍କର ମଙ୍ଗଳ ତଥା ପ୍ରଶାସନିକ ଶୃଙ୍ଖଳା ପାଇଁ ସେ ଅନେକ ସଂସ୍କାରମୂଳକ ପଦକ୍ଷେପ ଗ୍ରହଣ କରିଥିଲେ । ଏଥିପାଇଁ ସମୟେ ସମୟେ ସେ ଅପ୍ରୀତିକର ପରିସ୍ଥିତିର ଶିକାର ହୋଇଛନ୍ତି । ୧୯୧୯ ମସିହାରେ ଢେଙ୍କାନାଳରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା । ସବୁଆଡ଼େ ଭିକ୍ଷୁକଙ୍କ ସମାହାର । ଦୁର୍ଭିକ୍ଷ ସହିତ ଚୋରୀ ଡକାୟତି ମଧ୍ୟ ଚାଲିଥିଲା । ପାଣମାନେ ଚୋରୀ ଡକାୟତର ମୁଖ୍ୟଥିଲେ । ଦୁର୍ଭିକ୍ଷ ପରେ ଶସ୍ୟର ଅଭାବ ଦେଖାଗଲା । କେତେକ ପ୍ରଜା ଷ୍ଟେଟ୍ ମାଧ୍ୟମରେ ଆଉ କେତେକ ବନ୍ଧୁବାନ୍ଧବଙ୍କ ସହାୟତାରେ ବିହନ ସଂଗ୍ରହ କରି ବିଲରେ ଚାଷ କରିଥିଲେହେଁ ଫସଲ ପାଚିଲା ବେଳକୁ ପାଣମାନେ ଦଳଦଳ ହୋଇ ବିଲରୁ ଧାନ କାଟି ନେଉଥିଲେ । ଲେଖକ ପ୍ରଶାସନିକ ଅଧିକାରୀ ଭାବେ ଚୋରୀ କାର୍ଯ୍ୟ ନିବାରଣାର୍ଥେ ଦୁଇଟି ଉପାୟ ଅବଲମ୍ବନ କରିଥିଲେ । ପ୍ରଥମରେ ବିଭିନ୍ନ ସ୍ଥାନରେ ପ୍ରଧାନ ସର୍ବରାକାରଙ୍କୁ ବନ୍ଧୁକ ଲାଇସେନ୍‌ସ ଦେଇ ବିଲକୁ ଚୋର ପଶିବା ମାତ୍ରେ ପ୍ରଥମେ ଭୟ ଦେଖାଇବାକୁ ଶୂନ୍ୟରେ ଗୁଳି ଫୁଟାଇବାକୁ କୁହାଯାଇଥିଲା । ଯଦି ସେମାନେ ସେଥିରେ ନମାନନ୍ତି ଏବଂ ଧାନ କାଟନ୍ତି ସେମାନଙ୍କ ଉପରକୁ ଗୁଳିଚଳାଇବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଦ୍ୱିତୀୟରେ ଚୋରମାନେ ଦୋଷୀ ସାବ୍ୟସ୍ତ ହେଲେ କଚେରୀର ପ୍ରକାଶ୍ୟ ସ୍ଥାନରେ ବେତ୍ରାଘାତ ଦଣ୍ଡ ଦେବାର ବ୍ୟବସ୍ଥା ହୋଇଥିଲା । ଏହି ଉପାୟଦ୍ୱାରା ଅଳ୍ପଦିନ ମଧ୍ୟରେ ମଡ଼ି ସବ୍‌ଡିଭିଜନରେ ଚୋରୀ ବନ୍ଦ ହୋଇଗଲା । ଚୋରୀ ଡକାୟତରେ ଲିପ୍ତ ହୋଇ ପରେ ବିଚାରରେ ଖଲାସ ହୋଇଥିବା କେତେଜଣ ପାଣଙ୍କୁ ଗ୍ରାମର ଚୌକିଦାର କରି ସାବଧାନ କରାଇ ଦିଆଯାଇଥିଲା ଯେ ଗ୍ରାମରେ ଯଦି ଚୋରୀ- ଡକାୟତି ହୁଏ, ତେବେ ସେମାନେ ଦାୟୀ ରହିବେ । ଭବିଷ୍ୟତରେ ଏହି ପଦକ୍ଷେପବେଶ୍ ସୁଫଳ ଦେଇଥିଲା ।

ବଣେଇରେ ଥିବାବେଳେ ସେ ଅନୁଭବ କରିଥିଲେ, ସେଠାରେ କେତେକ ଭୁଲ୍ ନିୟମ ପ୍ରଚଳନ ଥିଲା । ଯେପରି ଜୁଆଖେଳ । ଏ ସମ୍ପର୍କରେ ଭାରତଚନ୍ଦ୍ର ଆତ୍ମଜୀବନୀରେ ଲେଖିଛନ୍ତି- "ସେତେବେଳେ ମୁଁ ଦେଖିଲି ଯେ, ଇଂରେଜ ଶାସିତ ଭାରତବର୍ଷରେ ପ୍ରଚଳିତ ଯେଉଁ କେତୋଟି ଆଇନ୍ ବଣେଇ ଷ୍ଟେଟ୍‌ରେ ପ୍ରବର୍ତ୍ତିତ ହୋଇଥିଲା, ତନ୍ମଧ୍ୟରେ ଜୁଆଖେଳ ଆଇନ୍‌ର ନାମ ନଥିଲା । ଏହି ବିଷୟ ଗୋଟିଏ ଗୁପ୍ତ ପତ୍ରରେ ପୋଲିଟିକେଲ ଏଜେଣ୍ଟଙ୍କୁ ଜଣାଇ ଦେବା ସଙ୍ଗେ ଲେଖିଲି ଯେ, ଭୁଲ୍‌ରେ ଆସାମିମାନଙ୍କ ପ୍ରତି ଦଣ୍ଡବିଧାନ ହୋଇଥିଲେ ହେଁ ଯଦି ଆଇନ୍ କାରଣରେ ଆସାମିମାନଙ୍କୁ ଦଣ୍ଡମୁକ୍ତ କରି ଦିଆହୁଏ ତାହାହେଲେ ବଣେଇରେ ଜୁଆଖେଳ ଆହୁରି ପ୍ରବଳ ହେବ । ଶାସନ ଦୃଷ୍ଟିରେ କେବଳ ଇଂରେଜଶାସିତ ଉନ୍ନତ ଅଞ୍ଚଳର ଆଇନ୍ ଧରି ବସିଲେ ଚଳିବ ନାହିଁ । ପୋଲିଟିକେଲ ଏଜେଣ୍ଟ ଅପୀଲ ନାମଞ୍ଜୁର କଲେ । (ପୃ-୧୬୭) ସେତେବେଳେ କୌଣସି ଗଡ଼ଜାତ ରାଜ୍ୟରେ ବିଧିବଦ୍ଧ ଆଇନ୍ ନଥିଲା । ପୁଣି ଫିଲିପ୍ ସାହେବଙ୍କ ନିକଟରେ ତାଙ୍କ ଉଚିତ୍ କାର୍ଯ୍ୟକୁ ସମର୍ଥନ କରୁନଥିବା କିଛି ବ୍ୟକ୍ତି ବିଭିନ୍ନ ଅଭିଯୋଗ କଲେ । ସେ ବାଧ କରି ପିଲାମାନଙ୍କୁ ସ୍କୁଲକୁ ପଠାଉଥିବାରୁ ଏବଂ କୁକୁଡ଼ା ଲଢ଼େଇ ବନ୍ଦ କରିଥିବାରୁ ଅଭିଯୋଗ ଆସିଲା । ପ୍ରଥମେ ତାଙ୍କର ଏହି କାର୍ଯ୍ୟକୁ ଫିଲିପ୍ ସାହେବ ସମର୍ଥନ କରୁଥିଲେହେଁ, ବର୍ତ୍ତମାନ ନାପସନ୍ଦ କଲେ । ନିଜ କାର୍ଯ୍ୟ ସପକ୍ଷରେ ଲେଖକ ଯେତେ ଯୁକ୍ତି କଲେହେଁ ତାଙ୍କ ଦ୍ୱାରା ତାହା ଗ୍ରହଣୀୟ ନ ହେବାରୁ ବାଧ ହୋଇ ତାଙ୍କୁ ପୁଣି ସରକାରୀ କାର୍ଯ୍ୟକୁ ଫେରାଇ ଦେବାକୁ ଅନୁରୋଧ କରି ଚାରିମାସ ଛୁଟି ନେଇଗଲେ । ଉପଯୁକ୍ତ ପ୍ରଶାସନିକ ସହାୟତା ଅଭାବରୁ ସେ ଅନେକ କାର୍ଯ୍ୟ କରିବାକୁ ଇଚ୍ଛା କରିଥିଲେହେଁ କରିପାରିନଥିଲେ ।

**ପ୍ରଶାସନିକ ମତାନ୍ତର, ଈର୍ଷା ଓ ଆକ୍ରୋଶ:-** ଚାକିରି ଜୀବନରେ ଭାରତଚନ୍ଦ୍ର ଯେତିକି ପ୍ରଶଂସା ପାଇଛନ୍ତି, ସେତିକି ମଧ୍ୟ ଈର୍ଷା ଓ ଆକ୍ରୋଶର ଶିକାର ହୋଇଛନ୍ତି । କେତେକ କ୍ଷେତ୍ରରେ ଏପରି ବିରୋଧାତ୍ମକ ପରିସ୍ଥିତିକୁ ସାମ୍ନା କରିଛନ୍ତି ଯେ ସବୁଦିନ ପାଇଁ ଚାକିରି ଛାଡ଼ି ଦେଇ ଚାଲିଯିବାକୁ ନିଷ୍ପତ୍ତି ନେଇଛନ୍ତି । ସେ ତାଙ୍କ ଆତ୍ମଜୀବନୀରେ ଏହିପରି କେତେକ ଘଟଣାର ଅବତାରଣା କରିଛନ୍ତି । ଏଠାରେ ସେହିପରି ଅଳ୍ପ କେତୋଟି ଘଟଣା ସମ୍ପର୍କରେ ଆଲୋକପାତ କରାଯାଉଛି । ଲେଖକଙ୍କ ଅନୁଗୁଳରେ ଚାକିରି କରିବାର ଘଟଣା । ସେତେବେଳେ ଅନୁଗୁଳରେ ଡେପୁଟି କମିଶନର ଥିଲେ ଟେଲର ସାହେବ । ତାଙ୍କ ଛଡ଼ା ସବ୍‌ଡିଭିଜନାଲ ଅଫିସର ଚିନ୍ତାମଣି ଆଚାର୍ଯ୍ୟ, ଖେଦା ଅଫିସର ଭାବେ ଉମାଚରଣ ଦାସ ୧୯୧୨ ମସିହାରେ ଆସିଲେ । ଜଙ୍ଗଲ ବିଭାଗର ଭାରପ୍ରାପ୍ତ ଲଖପତ୍ ରାୟ ସବରଓ୍ୱାଲ, ଏସିଷ୍ଟେଣ୍ଟ ସର୍ଜନ ଡାକ୍ତର ସତୀଶ ଚନ୍ଦ୍ର ମୁଖାର୍ଜୀ; ପରେ ପରେ ଆସିଲେ ସନାତନ ପୂଜାରୀ । ସବ୍ ଡିଭିଜନାଲ ଅଫିସର ଭାବରେ ୧୯୧୧ ମସିହା ଶେଷବେଳକୁ ଆସିଲେ ପ୍ରାଇସ୍

ସାହେବ । ସେ ଜଣେ ଉଗ୍ର, କ୍ରୋଧୀ ଓ ଖାମ୍‌ଖିଆଲୀ ଲୋକ ଥିଲେ । କଚେରୀରେ ବେତ ରଖିଥିଲେ । ମୋକଦ୍ଦମା ବିଚାର ସମୟରେ ସାକ୍ଷୀ ମିଥ୍ୟା କହୁଥିବା ମନେକଲେ ବେତରେ ପିଟୁଥିଲେ । ଥରେ ଲେଖକଙ୍କ ଗାଈ ପ୍ରାଇସ୍ ସାହେବଙ୍କ ବାଡ଼ିରେ ପଶି କିଛି ଫୁଲଗଛ ଓ ପରିବା ନଷ୍ଟ କରିବାରୁ ଗାଈକୁ ତାଙ୍କ ଚାକର ଧରିବାକୁ ଚେଷ୍ଟା କରି ପାରିଲା ନାହିଁ । ସେଥିପାଇଁ ପ୍ରାଇସ୍ ସାହେବ ଭାରତଚନ୍ଦ୍ରଙ୍କ ମାଳୀକୁ ମାରିଲେ ଓ ତାଙ୍କ ପିତାଙ୍କୁ ଅପମାନିତ କରିବାରୁ ସେ ପୂଜାରୀ ସାହେବଙ୍କୁ ପିଟିଲା । ଏହି ଘଟଣା ଭାରତଚନ୍ଦ୍ର ଟେଲର ସାହେବ (ଡେପୁଟି କମିଶନର)ଙ୍କୁ ଜଣାଇଲେ । ଉଭୟଙ୍କ ମଧ୍ୟରେ କଥାବାର୍ତ୍ତା ଚାଲୁଥିବା ବେଳେ ପ୍ରାଇସ୍ ସାହେବ ଲେଖକଙ୍କୁ ଆକ୍ରମଣ କରିବାକୁ ଆସିଲେ ଓ ଭାରତଚନ୍ଦ୍ର ତାଙ୍କୁ ପ୍ରତି ଆକ୍ରମଣ କରି ରକ୍ତାକ୍ତ କରିଦେଲେ । ଶେଷରେ ଟ୍ରେଲର ସାହେବଙ୍କ ଦ୍ୱାରା ଘଟଣାର ସମାଧାନ ହେଲା । ଏହି ଘଟଣା ପରେ ପରେ ଇଂରାଜୀ ସାହେବ ଦ୍ୱୟ ଲେଖକଙ୍କ ସହିତ ସଦ୍‌ଭାବ ରଖିନଥିଲେ । କାରଣ ଜଣେ କଳାଲୋକଙ୍କ ଦ୍ୱାରା ଗୋରାଲୋକ ମାଡ଼ ଖାଇବା ସେମାନଙ୍କ ଦୃଷ୍ଟିରେ ଥିଲା ଅମର୍ଯ୍ୟାଦାକର ଘଟଣା ।

ପ୍ରାଇସ୍ ସାହେବଙ୍କ ସହିତ ଦ୍ୱନ୍ଦ୍ୱ ପରବର୍ତ୍ତୀ ସମୟରେ ତାଙ୍କୁ କିଛି ଘଟଣାରେ ଅଡୁଆରେ ପକାଇଥିଲା । ଗୋଟିଏ ମୋକଦ୍ଦମାରେ ସେ ମିଛ ରିପୋର୍ଟ ଦେଇଛନ୍ତି ବୋଲି ଅଭିଯୋଗ ହେଲା, ଯଦିଓ ସେହି ଅଭିଯୋଗ ସଂପୂର୍ଣ୍ଣ ମିଥ୍ୟା ଥିଲା । ପ୍ରାଇସ୍ ସାହେବ ତାଙ୍କ ନାମରେ ହିଁ ଅଭିଯୋଗ ଆଣିଥିଲେ ପୂର୍ବ ଶତ୍ରୁତା ବଶତଃ । ଡେପୁଟି କମିଶନରଙ୍କୁ ସେ ଯେତେ ଅନୁରୋଧ କରିଥିଲେ ହେଁ, ସେ ସେହି ବିଷୟରେ ଆଦୌ ସରଜମିନ୍ ତଦନ୍ତ କରିନଥିଲେ । ଲେଖକ ପତ୍ନୀଙ୍କ ସ୍ୱାସ୍ଥ୍ୟ ଖରାପ ଥିବାରୁ ୩ ମାସ ଛୁଟି ନେଇ ୧୯୧୪ ସେପ୍ଟେମ୍ବର ୨୩ ତାରିଖରେ ସପରିବାର ଅନୁଗୁଳ ତ୍ୟାଗ କରିଥିଲେ ।

ପରେ ପରେ ସେ ବାଲେଶ୍ୱର, ବିହାର, ସମ୍ବଲପୁର, ଢେଙ୍କାନାଳ, ବଣେଇ ଆଦି ସ୍ଥାନରେ କାର୍ଯ୍ୟ କରିଥିଲେ । ବଣେଇରେ ଏକ ଅପ୍ରୀତିକର ପରିସ୍ଥିତିର ଶିକାର ହୋଇ ସେ ଛୁଟିରେ ଥିବାବେଳେ ପଲିଟିକାଲ ଏଜେଣ୍ଟଙ୍କ ନିକଟରୁ ଚିଠିଟିଏ ପାଇଥିଲେ, ଯେଉଁଥିରେ ବିହାର- ଓଡ଼ିଶା ଗଭର୍ଣ୍ଣରଙ୍କ ହୁକୁମ ଥିଲା ଛୁଟି ଶେଷରେ ପୁଣି ସବ୍-ଡେପୁଟି କଲେକ୍ଟର ପଦକୁ ଖସି କାର୍ଯ୍ୟରେ ଯୋଗ ଦେବେ । ତାଙ୍କର ଦୋଷ ଥିଲା- ୧- ରାଜାଙ୍କ ସହିତ ସଦ୍‌ଭାବ ରକ୍ଷା କରିନଥିଲେ । ୨- ଗୋଟିଏ ମକଦ୍ଦମା ଅପରାଧର ଗୁରୁତ୍ୱ ବିବେଚନାରେ ଲଘୁଦଣ୍ଡ ଦେଇଥିଲେ । ୩- ଅନ୍ୟ ଏକ ମକଦ୍ଦମାରେ ରାଜାଙ୍କ ପକ୍ଷର ଜଣେ ଲୋକ ଉପରେ ସମନ ପରିବର୍ତ୍ତେ ୱାରେଣ୍ଟ ଜାରିକରି ତାଙ୍କୁ ଜେଲ ହାଜତରେ ରଖିଥିଲେ । ୪- କୁକୁଡ଼ା ଲଢ଼େଇ ବନ୍ଦ କରିଥିଲେ । ୫- ବଣେଇ ଷ୍ଟେଟ୍ ଜଙ୍ଗଲ ଶାସନର ନିୟମକୁ ଏପରି କଠୋର ଭାବରେ ପ୍ରୟୋଗ କରିଥିଲେ, ଯାହାଦ୍ୱାରା ପ୍ରଜାଙ୍କର ବିଦ୍ରୋହର ସମ୍ଭାବନା ଥିଲା ।

ସବ୍-ଡେପୁଟି ଇତିହାସରେ ଏହାଥିଲା ସର୍ବପ୍ରଥମ ଦୃଷ୍ଟାନ୍ତ । ପୁଣି ତାଙ୍କ ବିରୋଧରେ ଅଭିଯୋଗ ଥିଲା ସେ ପାଖରେ ବନ୍ଧୁକ ରଖିଥିଲେ ଅଥଚ ଲାଇସେନ୍‌ସ ନଥିଲା । ଯଦିଓ ତାଙ୍କର ଲାଇସେନ୍‌ସ ରଖିବା ଜରୁରୀ ନଥିଲା । ସେତେବେଳେ ତାଙ୍କ ବିରୋଧୀ ଫିଲିପ୍ ସାହେବ (ଯେତେବେଳେ ବନ୍ଧୁକ ରଖିବା ଅପରାଧରେ ମକଦ୍ଦମା ଚାଲୁଥିଲା) ପଲିଟିକାଲ ଏଜେଣ୍ଟ ନଥିଲେ; ଲମ୍ବା ଛୁଟିରେ ସ୍ୱଦେଶ ଯାଇଥିଲେ ଏବଂ ତାଙ୍କ ସ୍ଥାନରେ ଷ୍ଟଟ୍ ସାହେବ ଯୋଗ ଦେଇଥିଲେ । ବଣେଇ ରାଜାଙ୍କ ଦପ୍ତରରେ ଭାରତ ସରକାରଙ୍କ ହୁକୁମ ଅନୁସାରେ ସେ ବଣେଇ ଷ୍ଟେଟ୍‌ର ଦେୱାନ ଥିବା ପର୍ଯ୍ୟନ୍ତ ଲାଇସେନ୍‌ସ ଦାୟରୁ ମୁକ୍ତ ବୋଲି ଆଦେଶ ନାମା ଥିଲା । ଫିଲିପ୍ ସାହେବ ଥିଲେ ସେହି ଆଦେଶନାମା ହୁଏତ ମିଳିନଥାନ୍ତା । ଯାହା ହେଉ ଭାରତଚନ୍ଦ୍ରଙ୍କ ସମ୍ମୁଖ ପଲିଟିକାଲ ଏଜେଣ୍ଟଙ୍କ ସୁପରିଣ୍ଟେଡେଣ୍ଟ ଶ୍ରୀ ଶ୍ୟାମଚରଣ ପାଢ଼ୀ ସେହି ଆଦେଶନାମା ଖୋଜି ବାହାର କରିଥିଲେ । ପରବର୍ତ୍ତୀ ଶୁଣାଣି ପାଇଁ ଜିଲ୍ଲା ମାଜିଷ୍ଟ୍ରେଟଙ୍କ କଚେରୀ ଲୋକାରଣ୍ୟ ହୋଇଥିଲା । ଇତି ମଧ୍ୟରେ ତାଙ୍କୁ ସବ୍‌ଡେପୁଟୀ କଲେକ୍ଟର ପଦରେ ବରଗଡ଼ରେ ଯୋଗ ଦେବାକୁ ସରକାରୀ ହୁକୁମ ପ୍ରକାଶିତ ହୋଇଥିଲା । ପଦବୀରେ ଅବନତି ତାଙ୍କୁ ଅପମାନିତ କରିଥିଲା । ସେ ଚାକିରି ଛାଡ଼ି ଦେବାକୁ ସ୍ଥିର କରିଥିଲେ । ତାଙ୍କ ନାମରେ ହୋଇଥିବା ମିଥ୍ୟା ମକଦ୍ଦମା ଖାରଜ ହୋଇଥିଲା ଏବଂ ତାଙ୍କୁ ପୁନରାୟ ଡେପୁଟି-କଲେକ୍ଟର ରୂପେ ଯୋଗ ଦେବାକୁ ସରକାରଙ୍କ ତରଫରୁ ଟେଲିଗ୍ରାମ୍ ଆସିଥିଲା ।

ଅନ୍ୟ ଏକ ଘଟଣାରୁ ତାଙ୍କ ଉପରେ ରହିଥିବା ଆକ୍ରୋଶର ପ୍ରମାଣ ମିଳିଥାଏ । ୧୯୩୦ ମସିହାରେ ଘଟଣା । ସେ ଶୁଣିଲେ ସମ୍ବଲପୁର ସହରରୁ ପାଞ୍ଚ ମାଇଲ ଦୂରବର୍ତ୍ତୀ ଲରପଙ୍କ ଗ୍ରାମର ଗୌନ୍ତିଆ ସେହି ଗ୍ରାମଟି ବିକ୍ରୟ କରି ଦେଉଛନ୍ତି । ଅଂଶୀଦାରମାନଙ୍କ ସହିତ କଥାବାର୍ତ୍ତା କରି ଧର୍ମପିତାଙ୍କ ସହିତ ଭାରତଚନ୍ଦ୍ର କଥାବାର୍ତ୍ତା କଲେ । ଧର୍ମପିତା ବରଗଡ଼ର ଓକିଲ । ଭାରତଚନ୍ଦ୍ର ସରକାରୀ କର୍ମଚାରୀ ହୋଇଥିବାରୁ କ୍ରୟ ପାଇଁ ସରକାରଙ୍କ ଅନୁମତି ନେବାକୁ ହେବ ଓ ଅନୁମତି ଜିଲ୍ଲା ହାକିମଙ୍କ ସୁପାରିସ୍‌ରେ ହେବ । ସେତେବେଳେ ସମ୍ବଲପୁର ଜିଲ୍ଲା ହାକିମ ଶ୍ରୀ ନୀଳମଣି ସେନାପତି ଆଇ.ସି.ଏସ୍ । ତାଙ୍କର ଲେଖକଙ୍କ ସହିତ ସଦ୍‌ଭାବ ନଥିଲା । ଧର୍ମପିତା ଜମି କ୍ରୟ କରି ପଛରେ ତାଙ୍କ ନାମକୁ ହସ୍ତାନ୍ତର କରିବା ସ୍ଥିର ହେଲା । ଜମି କ୍ରୟ କରାଯାଇ ତା'ର ଚାଷ କାର୍ଯ୍ୟ ଧର୍ମପିତାଙ୍କ ଉପରେ ନ୍ୟସ୍ତ କଲେ । ସେନାପତି ମହାଶୟ ଜଣେ ସବ୍-ଡେପୁଟି କଲେକ୍ଟରଙ୍କୁ ଏହାର ସତ୍ୟତା ଜାଣିବାକୁ ଗୁପ୍ତ ତଦନ୍ତ ଭାର ଅର୍ପଣ କରିଥିଲେ । ସେନାପତି ମହାଶୟ ଗ୍ରାମ କ୍ରୟ କରିବା ବିଷୟରେ କମିଶନରଙ୍କୁ କାର୍ଯ୍ୟାନୁଷ୍ଠାନ ପାଇଁ ଲେଖିଥିଲେ । ଶେଷରେ ସେହି ତଦନ୍ତର କୌଣସି ଫଳାଫଳ ହୋଇନଥିଲା । ବିଭିନ୍ନ ଘଟଣାରେ ଭାରତଚନ୍ଦ୍ରଙ୍କ ପ୍ରତି ସରକାରଙ୍କ ଆକ୍ରୋଶ ଓ ଉପରିସ୍ଥ କର୍ମଚାରୀଙ୍କ ଈର୍ଷାଭାବ ସତ୍ତ୍ୱେ ସେ କେବେ ନିଜ କାର୍ଯ୍ୟରୁ ବିଚ୍ୟୁତ ହୋଇନଥିଲେ କିମ୍ବା ସାଲିସ୍ ମନୋବୃତ୍ତି ପ୍ରକାଶ କରିନଥିଲେ ।

**ଭାଷା ଆନ୍ଦୋଳନ:-** ଭାରତଚନ୍ଦ୍ରଙ୍କ ଆତ୍ମଜୀବନୀ 'ମୋର ପୂର୍ବ ସ୍ମୃତିକଥା' ସମକାଳୀନ ବହୁ ଐତିହାସିକ ଘଟଣା ଓ ଦୁର୍ଘଟଣାରେ ପରିପୂର୍ଣ୍ଣ । ଜଣେ ସଚେତନ ନାଗରିକ ତଥା ପ୍ରଶାସନିକ ଅଧିକାରୀ ଭାବରେ ସାମସମୟିକ ବହୁ ଘଟଣାକୁ ସେ ତାଙ୍କ ଆତ୍ମ ଜୀବନୀରେ ସ୍ଥାନ ଦେଇଛନ୍ତି । ସେହିପରି ଏକ ଘଟଣା ହେଉଛି ସମ୍ବଲପୁରରେ ଓଡ଼ିଆ ଭାଷା ଆନ୍ଦୋଳନ ଓ ବଙ୍ଗଭଙ୍ଗ ଆନ୍ଦୋଳନ । ୧୯୦୨ ମସିହା ବେଳକୁ ମଧ୍ୟପ୍ରଦେଶସ୍ଥ ସମ୍ବଲପୁର ଏକମାତ୍ର ଓଡ଼ିଆ ଭାଷା-ଭାଷୀ ଜିଲ୍ଲା । ସରକାରୀ ଚାକିରିରେ ଏକମାତ୍ର ଓଡ଼ିଆ ବୈକୁଣ୍ଠନାଥ ପୂଜାରୀ ଏକଷ୍ଟ୍ରା ଏସିଷ୍ଟେଣ୍ଟ ପଦରେ ନାଗପୁରରେ ଅବସ୍ଥାପିତ । ସମ୍ବଲପୁର ଡେପୁଟି କମିଶନରଙ୍କ ଦପ୍ତରରେ ମୁଷ୍ଟିମେୟ ଓଡ଼ିଆ କିରାଣି ପଦରେ ରହିଥାନ୍ତି । ସରକାରୀ କାର୍ଯ୍ୟାଳୟମାନଙ୍କରେ ହିନ୍ଦୀ ଭାଷା-ଭାଷୀ କିରାଣୀଙ୍କ ଠାରୁ ଆରମ୍ଭ କରି ହାକିମଙ୍କର ଅତ୍ୟଧିକ ପ୍ରାବଲ୍ୟ । ମଧ୍ୟପ୍ରଦେଶର ତଦାନୀନ୍ତନ ଚିଫ୍ କମିଶନର ସାର୍ ଜନ୍ ଉଡ୍‌ବର୍ଣ୍ଣଙ୍କ ଶାସନ କାଳରେ ସମ୍ବଲପୁର ସ୍କୁଲ କଚେରୀରୁ ଓଡ଼ିଆ ଭାଷା ବିତାଡ଼ିତ ହୋଇ ହିନ୍ଦୀ ଭାଷାର ପ୍ରଚଳନ କରାଯାଇଥିଲା । ଏହାକୁ ସମ୍ବଲପୁର ଶିକ୍ଷିତ ସଂପ୍ରଦାୟ ତୀବ୍ର ପ୍ରତିବାଦ କରିଥିଲେ । ସେତେବେଳେ ଶ୍ରୀପତି ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ମହନ୍ତ ବିହାରୀ ଦାସ, ମଦନ ମୋହନ ମିଶ୍ର, ବଳଭଦ୍ର ସୂପକାର ଆଦି ବଡ଼ଲାଟ୍ ଲର୍ଡ଼ କର୍ଜନଙ୍କୁ ଅଭିଯୋଗ ଜଣାଇବାକୁ ସିମଲା ଯାତ୍ରା କରିଥିଲେ । ଏହି ସମୟରେ ସେଠାରେ ଉପସ୍ଥିତ ଥିଲେ ସମ୍ବଲପୁରର ପୂର୍ବତନ ଡେପୁଟି କମିଶନର, ଛତିଶଗଡ଼ ବିଭାଗର କମିଶନର ଓ ସେ ସମୟର ମଧ୍ୟ ପ୍ରଦେଶର ଚିଫ୍ କମିଶନର ସାର୍ ଏଣ୍ଡ୍ରୁ ଫ୍ରେଜର । ବ୍ରଜମୋହନ ପଟ୍ଟନାୟକ ଆଦି କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ସେ ପୂର୍ବରୁ ଜାଣିଥିଲେ । ଏମାନେ ତାଙ୍କୁ ସାକ୍ଷାତ୍ କରି ନିଜର ଉଦ୍ଦେଶ୍ୟ ଜଣାଇଥିଲେ । ଫ୍ରେଜର ସାହେବ ଏହି ସମସ୍ୟାର ସମାଧାନ କରିଦେବାକୁ ଦୃଢ଼ ପ୍ରତିଶ୍ରୁତି ଦେଲେ । କିଛିଦିନ ପରେ ଫ୍ରେଜର ସାହେବ ସମ୍ବଲପୁର ଆସିବାରୁ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ପ୍ରଦାନ କରାଯାଇଥିଲା । ବିଭିନ୍ନ ସ୍ଥାନରେ ସଭା ସମିତି ଅନୁଷ୍ଠିତ ହେଲା । ସାର୍ ଆଣ୍ଡ୍ରୁ ଫ୍ରେଜରଙ୍କ ଆନୁକୂଲ୍ୟରେ ଓଡ଼ିଶାରୁ ବିଛିନ୍ନ ହୋଇଥିବା ସମ୍ବଲପୁର ୧୯୦୫ ମସିହା ଅକ୍ଟୋବର ୧୬ ତାରିଖରେ ବଙ୍ଗପ୍ରଦେଶ ଅନ୍ତର୍ଗତ ଓଡ଼ିଶା ବିଭାଗ ସହିତ ମିଳିତ ହେଲା । ପୂର୍ବରୁ ବଙ୍ଗ, ବିହାର ଓ ଓଡ଼ିଶା ମିଶି ବଙ୍ଗ ପ୍ରଦେଶ ଗଠିତ ହୋଇଥିଲା । କିନ୍ତୁ ଏଥିରେ ସମଗ୍ର ସମ୍ବଲପୁର ନଆସି ଫୁଲଟର ଜମିଦାରୀ, ପଦ୍ମପୁର ତଥା ଚନ୍ଦ୍ରପୁର ତାଲୁକ ରହିଗଲା । ଓଡ଼ିଆ ଭାଷା-ଭାଷୀ ପାଟଣା, ସୋନପୁର, କଳାହାଣ୍ଡି, ବାମଣ୍ଡା ଓ ରେଢ଼ାଖୋଲ ଷ୍ଟେଟ୍ ଗୁଡ଼ିକ ଛତିଶଗଡ଼ ବିଭାଗୀୟ ପଲିଟିକାଲ ଏଜେଣ୍ଟଙ୍କ ତତ୍ତ୍ୱାବଧାନରୁ ଯାଇ ଓଡ଼ିଶା କମିଶନରଙ୍କ ଅଧୀନସ୍ଥ ଗଡ଼ଜାତ ମାହାଲ ସହିତ ମିଳିତ ହୋଇ ଏକ ସ୍ୱତନ୍ତ୍ର ପଲିଟିକାଲ ଏଜେଣ୍ଟଙ୍କ ଅଧୀନରେ ରହିଲା । ପଲିଟିକାଲ ଏଜେଣ୍ଟ ଦପ୍ତର ମଧ୍ୟପ୍ରଦେଶସ୍ଥ ରାୟପୁରରୁ ସମ୍ବଲପୁର ଉଠିଆସିଲା ।

୧୯୦୫ ମସିହା ଅକ୍ଟୋବର ୧୬ ତାରିଖରେ ବଙ୍ଗପ୍ରଦେଶ ଅନ୍ତର୍ଗତ ପୂର୍ବାଞ୍ଚଳର ଢାକା ପ୍ରଭୃତି କେତେକ ଜିଲ୍ଲା ଅଲଗା କରି ଆସାମ ସହ ପୂର୍ବ ବଙ୍ଗ ଓ ଆସାମ ନାମରେ ଏକ ନୂତନ ପ୍ରଦେଶ ଗଠନ କରାଗଲା । ଆରମ୍ଭ ହେଲା ଆନ୍ଦୋଳନ । ଏହି ନୂତନ ପ୍ରଦେଶର ପ୍ରଥମ ଶାସନ କର୍ତ୍ତା ଗଭର୍ଣ୍ଣର ସାର୍ ବ୍ରୁମଫିଲଡ୍ ଫୁଲର । ଏହାଙ୍କ ସମୟରେ ସଂଖ୍ୟା ଗରିଷ୍ଠ ମୁସଲମାନ ଓ ସଂଖ୍ୟା ଲଘିଷ୍ଠ ହିନ୍ଦୁଙ୍କ ମଧ୍ୟରେ ଯେଉଁ ସଂଘର୍ଷ ହେଲା ତାହା ଭାରତ ବକ୍ଷରେ ଏକ କଳଙ୍କ ଦାଗ ହୋଇ ରହିଗଲା । ବଙ୍ଗ ଭଙ୍ଗ ଯୋଗୁଁ ଭାରତବାସୀଙ୍କ ମନରେ ସ୍ୱାଧୀନତା ଭାବ ଜାଗ୍ରତ ହେଲା । ବିଲାତି ଜିନିଷ ବର୍ଜନ କରାଗଲା । ଇଂରେଜମାନଙ୍କ ଦମନଲୀଳା ଏହି ଆନ୍ଦୋଳନକୁ ଦବାଇ ପାରିଲା ନାହିଁ । କେତେକଙ୍କୁ ଫାଶୀ ଓ ଅନ୍ୟ କେତେକ ବିପ୍ଳବୀଙ୍କୁ ଦୀପାନ୍ତର ଦଣ୍ଡ ହେଲା । ଋଷି ଅରବିନ୍ଦଙ୍କୁ ମଧ୍ୟ ଅଦାଲତରେ ହାଜର କରାଯାଇଥିଲା ଓ ସେ ନିର୍ଦ୍ଦୋଷ ପ୍ରମାଣିତ ହୋଇଥିଲେ । ଭାରତଚନ୍ଦ୍ର ରେଭେନ୍‌ସା କଲେଜରେ ଅଧ୍ୟୟନ ସମୟରେ ବଙ୍ଗଭଙ୍ଗର ପ୍ରଭାବ ଛାତ୍ରାବାସରେ ଅନୁଭବ ହୋଇଥିଲା । ଦଳଦଳ ବଙ୍ଗାଳୀ ଯୁବକ ବିଦେଶୀ ବସ୍ତ୍ର ପରିତ୍ୟାଗ କରି ସ୍ୱଦେଶୀ ବସ୍ତ୍ର ପରିଧାନ କରିବାକୁ ଉତ୍ସାହିତ କରୁଥିଲେ । ଲର୍ଡ଼୍‌କର୍ଜନ ବଙ୍ଗଭଙ୍ଗ କରି ଭାରତୀୟମାନଙ୍କର ଉପକାର କରିଛନ୍ତି ବୋଲି ଲେଖକ ମନେକରିଛନ୍ତି । ତାଙ୍କ ମତରେ- "ବଙ୍ଗର ଅଙ୍ଗଛେଦ ଭାରତବର୍ଷ ପକ୍ଷରେ ପ୍ରକାରାନ୍ତରେ ମଙ୍ଗଳକର ହୋଇଥିଲା । ତାହା ବୋଧହୁଏ ଈଶ୍ୱରପ୍ରେରିତ । ତାହା ହୋଇନଥିଲେ ଇଂରେଜ-ସଭ୍ୟତାନୁରକ୍ତ ବଙ୍ଗାଳିଙ୍କ ମତିଗତି ସ୍ୱଦେଶ ପ୍ରତି ଫେରିନଥାନ୍ତା । ସେହି ସମୟର ବଙ୍ଗଦେଶସ୍ଥ ଶିକ୍ଷିତ ସଂପ୍ରଦାୟର ମତିଗତି ପ୍ରତି ସୂକ୍ଷ୍ମ ଭାବରେ ନିରୀକ୍ଷଣ କଲେ ଅନୁଭବ କରିବାକୁ ହେଉଥିଲା ଯେ ପଳାସି ଯୁଦ୍ଧ ପରେ ପରେ ଇଂରେଜମାନେ କଲିକତା ସହରରେ ରାଜଧାନୀ ସ୍ଥାପନ କରି ଯେପରି ଭାବରେ ନିଜ ଆସ୍ଥାନ ଦୃଢ଼ୀଭୂତ କଲେ ଶିକ୍ଷିତ ବଙ୍ଗାଳି ସେମାନଙ୍କ ହାବଭାବ, ଆଦବ କାଇଦା ଅନୁକରଣ କରି ଏକାବେଳକେ ସାହେବ ପାଲଟିଗଲେ । ଅନେକ ବିଶିଷ୍ଟ ଶିକ୍ଷିତ ବ୍ୟକ୍ତି ମଧ୍ୟ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ । ଶୁଭ ଯୋଗରେ ବଙ୍ଗର ଅଙ୍ଗଛେଦ ସେମାନଙ୍କ ମୋହ ଦୂର କରିବାରେ ସହାୟ ହୋଇଥିଲା । କ୍ରମେ ସେମାନେ ଜାଗ୍ରତ ହେଲେ ଓ ଭାରତରେ ସ୍ୱାଧୀନତାର ମୂଳ ପତ୍ତନ ସ୍ଥାପନ କରି ଭୀଷଣ ସଂଗ୍ରାମରେ ଝାମ୍ପ ପ୍ରଦାନ କଲେ ।" (ପୃ-୫୬-୫୭) ଏହି ବଙ୍ଗ-ଭଙ୍ଗ ଆନ୍ଦୋଳନ ଏପରି ତୀବ୍ର ହୋଇଥିଲା ଯେ, ଇଂରେଜ ସରକାର ବାଧ୍ୟ ହୋଇ ୧୯୧୧ ମସିହାରେ ବଙ୍ଗଭଙ୍ଗ ପ୍ରତ୍ୟାହାର କରି ନେଇଥିଲେ । ସେହି ୧୯୧୧ ମସିହାରେ ବଙ୍ଗ ପ୍ରଦେଶରୁ ବିହାର ଓ ଓଡ଼ିଶା ବିଚ୍ଛିନ୍ନ ହୋଇ ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା । ବଙ୍ଗ ସହିତ ଓଡ଼ିଶା ମିଶି ରହିଥିବା ବେଳେ ୧୯୦୬ ପର୍ଯ୍ୟନ୍ତ କମିଶନର ଓଡ଼ିଶା ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ଥିଲେ ।

ପ୍ରସଙ୍ଗକ୍ରମେ ଲେଖକ ୧୮୬୯ ମସିହାରେ ଓଡ଼ିଶାରୁ ଓଡ଼ିଆ ଭାଷାର ବିଲୋପ ନିମିତ୍ତ ବଙ୍ଗାଳୀମାନେ ଯେଉଁ ଚକ୍ରାନ୍ତ କରିଥିଲେ ଏବଂ ତାହାଦ୍ୱାରା ଓଡ଼ିଶାରେ ଯେଉଁ ଭାଷା

ସୁରକ୍ଷା ଆନ୍ଦୋଳନ ଦେଖା ଦେଇଥିଲା, ସେ ସମ୍ପର୍କରେ ସାମାନ୍ୟ ସୂଚନା ପ୍ରଦାନ କରିଛନ୍ତି । ଏହି ଆନ୍ଦୋଳନରେ ଓଡ଼ିଆଙ୍କ ସହିତ କଟକ ପ୍ରିଣ୍ଟିଂ କମ୍ପାନୀର ପ୍ରତିଷ୍ଠାତା ତଥା 'ଉତ୍କଳ ଦୀପିକା'ର ସମ୍ପାଦକ ଗୌରୀଶଙ୍କର ରାୟ, ରାମଶଙ୍କର ରାୟ, ରାଧାନାଥ ରାୟ ଆଦି ଓଡ଼ିଶାର ସ୍ଥାୟୀ ବଙ୍ଗାଳୀମାନେ କାନ୍ଧ ମିଳାଇ କିପରି ଏହାର ପ୍ରତିରୋଧ କରିଥିଲେ ତା'ର ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଇଛି ମୋର 'ପୂର୍ବ ସ୍ମୃତି କଥା'ରେ । ଯୋଗେଶଚନ୍ଦ୍ର ରାୟ ବଙ୍ଗାଳୀ ହୋଇବି ସାମନ୍ତଚନ୍ଦ୍ର ଶେଖରଙ୍କୁ ଆବିଷ୍କାର କରିବା ସହିତ 'ସିଦ୍ଧାନ୍ତ ଦର୍ପଣ'ର ଦୀର୍ଘ ଇଂରେଜୀ ମୁଖବନ୍ଧ ରଚନା କରି ତାଙ୍କୁ ବିଶ୍ୱ ଦରବାରରେ ପରିଚିତ କରାଇଥିଲେ । ଯେଉଁ ବଙ୍ଗାଳୀମାନେ ଓଡ଼ିଶାର ହିତପାଇଁ କାର୍ଯ୍ୟ କରିଛନ୍ତି, ଲେଖକ ସେମାନଙ୍କୁ ପ୍ରଶଂସା କରିଛନ୍ତି ଏବଂ ଓଡ଼ିଆ ବିରୋଧୀମାନଙ୍କୁ ସମାଲୋଚନା କରିଛନ୍ତି ତାଙ୍କ ଆତ୍ମଜୀବନୀ ଗ୍ରନ୍ଥରେ ।

**ଉତ୍କଳ ସମ୍ମିଳନୀ ଓ ଜାତୀୟ ଭାବନା:-** ମଧୁସୂଦନ କଲିକତାରୁ ସମସ୍ତ ସମ୍ପର୍କ ଛିନ୍ନ କରି କଟକ ଆସିବା ପରେ ଓଡ଼ିଶାର ସାମଗ୍ରିକ ଉନ୍ନତି ସକାଶେ ଚିନ୍ତା କରିଥିଲେ । ଗୌରୀଶଙ୍କର ରାୟଙ୍କ ପରାମର୍ଶ କ୍ରମେ ଜନ୍ମ ନେଇଥିଲା ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ । ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସଭାପତିତ୍ୱରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ୧୯୦୪ ଡିସେମ୍ବର ମାସରେ ଅନୁଷ୍ଠିତ ଦ୍ୱିତୀୟ ଅଧିବେଶନରେ ଧରାକୋଟ ରାଜା ମଦନମୋହନ ସିଂହ ସଭାପତି ହୋଇଥିଲେ । ଏହି ଅଧିବେଶନରେ ବହୁ କଲେଜ ଛାତ୍ରଙ୍କ ସହ ଭାରତଚନ୍ଦ୍ର ମଧ୍ୟ ଯୋଗ ଦେଇଥିଲେ । ସ୍ୱେଚ୍ଛାସେବକମାନଙ୍କର ନେତ୍ରୀଥିଲେ ମଧୁସୂଦନଙ୍କ ପାଳିତା କନ୍ୟା ଶ୍ରୀମତୀ ଶୈଳବାଳା । ସେ ସେତେବେଳେ କଟକରେ ବି.ଏ. ପର୍ଯ୍ୟନ୍ତ ପଢ଼ିଥିଲେ । ତାଙ୍କ ପ୍ରତି ସମସ୍ତଙ୍କର ସମ୍ମାନ ରହିଥିଲା । ମାତ୍ର ସେ ଓଡ଼ିଆ ଭାଷାରେ କଥାବାର୍ତ୍ତା ନକରି ଶୁଦ୍ଧ ବଙ୍ଗଳାରେ କରିଥାନ୍ତି । ମଧୁବାବୁ ଅନ୍ୟ ମାନଙ୍କ ସହ ଓଡ଼ିଆରେ କଥାବାର୍ତ୍ତା କଲାବେଳେ ଶୈଳବାଳାଙ୍କ ସହ ବଙ୍ଗଳାରେ କଥାବାର୍ତ୍ତା କରିଥାନ୍ତି । ସମ୍ମିଳନୀର ଅଧିବେଶନମାନଙ୍କରେ ମଧ୍ୟ ଶୈଳବାଳା ବଙ୍ଗଳା ଭାଷାରେ ଭାଷଣ ଦେଇଥାନ୍ତି । ବ୍ରଜସୁନ୍ଦର ଦାସଙ୍କ ମାହିନ୍ଦାସ ବଜାରସ୍ଥ ବାସଭବନ ସେତେବେଳେ ଏକ ଅତିଥିଶାଳାରେ ପରିଣତ ହୋଇଥିଲା । ପ୍ରତି ସନ୍ଧ୍ୟାରେ ଗୋପବନ୍ଧୁ ଦାସଙ୍କ ଠାରୁ ଆରମ୍ଭ କରି ବହୁ ଦେଶଭକ୍ତ ସେଠାରେ ମିଳିତ ହୋଇ ଦେଶ ସମ୍ପର୍କରେ ଆଲୋଚନା କରିଥାନ୍ତି । ଏତଦ୍ ବ୍ୟତୀତ ଭାରତଚନ୍ଦ୍ରଙ୍କ ଆତ୍ମଜୀବନୀରେ ୧୯୦୭ ମସିହା ବନ୍ୟାରେ କ୍ଷତିଗ୍ରସ୍ତ କେନ୍ଦ୍ରପଡ଼ାକୁ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ କିପରି ଗୋଟିଏ ଛାତ୍ରଦଳଙ୍କ ସହିତ ଲେଖକ ନିଜେ ଚାନ୍ଦା ସଂଗ୍ରହ କରି ବନ୍ୟା ପ୍ରପୀଡ଼ିତଙ୍କୁ ସାହାଯ୍ୟ କରିଥିଲେ ଏବଂ ମଧୁବାବୁ ସାହାଯ୍ୟ ପାଇଁ ସରକାରଙ୍କୁ ଜଣାଇ ଦାବୀ କରିଥିଲେହେଁ ତତ୍କାଳୀନ ବଙ୍ଗଳାର ଛୋଟ ନାଟ ସାର ଏଣ୍ଡ୍ରୁଫ୍ରେଜର କିପରି କୌଣସି ପ୍ରତିକାର କରିନଥିଲେ, ସେ ସମ୍ପର୍କରେ ମଧ୍ୟ ସୂଚନା ପ୍ରଦାନ କରିଛନ୍ତି ।

**କଂଗ୍ରେସ୍ ଆନ୍ଦୋଳନଃ**- ମହାତ୍ମାଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ଭାରତ ଫେରି ଆସିବା ପରେ ସ୍ୱାଧୀନତା ଆନ୍ଦୋଳନ ଭିନ୍ନ ମୋଡ଼ ନେଇଥିଲା । ସେତେବେଳେ ଲେଖକ ବାଲେଶ୍ୱରରେ ଚାକିରି କରୁଥିଲେ । ଏହି ଆନ୍ଦୋଳନର ତୀବ୍ରତା ଜଣେ ସରକାରୀ ଚାକିରିଆ ଭାବରେ ଅଙ୍ଗେ ଯାହା ନିଭେଇ ଥିଲେ, ତାହା ସେ ନିଜର ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି । ବାଲେଶ୍ୱର ଅବସ୍ଥାନ ସମୟରେ କଂଗ୍ରେସ ଆନ୍ଦୋଳନ ତୀବ୍ର ହେବାରୁ ସରକାରଙ୍କ ଦମନଲୀଳା ମଧ୍ୟ ଅନୁରୂପ ହୋଇଥିଲା । ବାଲେଶ୍ୱରର ସମୁଦ୍ର ଉପକୂଳ ଅଞ୍ଚଳରେ ଲୋକଙ୍କର ଲୁଣମରା ବ୍ୟବସାୟ ସରକାର ବନ୍ଦ କରି ଦେଇଥିଲେ । ୧୯୦୩ ମସିହା ମାର୍ଚ୍ଚ ମାସରେ ମହାତ୍ମାଗାନ୍ଧି ସରକାରଙ୍କ ଲୁଣମରା ବନ୍ଦ କାରଣରୁ ଏହା ବିରୋଧରେ ପ୍ରତିବାଦ କରି ବମ୍ବେ ପ୍ରଦେଶସ୍ଥ ଦାଣ୍ଡି ଓ ଧର୍ସାନାରେ ଥିବା କାରଖାନାକୁ ଆକ୍ରମଣ କରିବାକୁ ଯିବା ବାଟରେ ଗିରଫ ହୋଇଥିଲେ । ପରେ ଭାରତର ବଡ଼ଲାଟ୍ ଲର୍ଡ଼ ଇରଉଇନ୍‌ଙ୍କ ସହ ଚୁକ୍ତି ହୋଇଥିଲାଯେ ଯେ କୌଣସି ବ୍ୟକ୍ତି ନିଜ ଘରେ ବ୍ୟବହାର କରିବା ପରିମାଣରେ ଲୁଣମାଟି ସେଠାରୁ ନିଜ ମୁଣ୍ଡରେ ବା ଭାରରେ ବୋହି ଆଣିପାରିବ । ମାତ୍ର ବ୍ୟବସାୟ ଉଦ୍ଦେଶ୍ୟରେ ଅଥବା କୌଣସି ଭାରବାହୀ ପଶୁ ଉପରେ ଲଦି ଆଣିପାରିବେ ନାହିଁ । ଲୁଣ ବୁହାରେ ବ୍ୟବହୃତ ବଳଦ ଗୁଡ଼ିକୁ ଲେଖକ ବାଜ୍ୟାପ୍ତ କରିନଥିବାରୁ ଜିଲ୍ଲା ମାଜିଷ୍ଟ୍ରେଟ୍ ଶ୍ରୀ ସତ୍ୟେନ୍ଦ୍ର ମୋହନ ଧର ଆଇ.ସି.ଏସ ତାଙ୍କୁ ତହିଁର କାରଣ ପଚାରିବାରୁ ଭାରତଚନ୍ଦ୍ର କହିଥିଲେ- "ଆସାମୀମାନେ ସମସ୍ତେ ଚାଷୀ । ଲୁଣମରା ବା ବିକ୍ରି ଏମାନଙ୍କ ବ୍ୟବସାୟ ନୁହେଁ । ଚାଷରେ ବ୍ୟବହୃତ ବଳଦଗୁଡ଼ିକ ବାଜ୍ୟାପ୍ତ କରିଥିଲେ, ସେମାନଙ୍କ ଚାଷରେ ହାନି ହୋଇଥାନ୍ତା ଓ ଏମାନଙ୍କ ଅପରାଧ ଯୋଗୁଁ ସେମାନଙ୍କ ପରିବାରଭୁକ୍ତ ସ୍ତ୍ରୀ ସନ୍ତାନାଦି ସମସ୍ତେ ଦଣ୍ଡିତ ହେଲାପରି ହୋଇଥାନ୍ତେ ।" (ପୃ-୨୧୩-୧୪) ତାଙ୍କ ଉତ୍ତରରେ ସେ ସନ୍ତୁଷ୍ଟ ନହୋଇ ବିଚାରରେ ଦୁର୍ବଳତା ପ୍ରଦର୍ଶନ ଅଭିଯୋଗରେ ତିରସ୍କାର କରି ରାଜନୀତି ସଂକ୍ରାନ୍ତ ମୋକଦ୍ଦମା ଦିଆଯିବ ନାହିଁ କହିବା ସଙ୍ଗେ ସଙ୍ଗେ ତାହା କାର୍ଯ୍ୟକାରୀ କରାଇଥିଲେ ।

ସେହି ସମୟର ଅନ୍ୟ ଏକ ପ୍ରତ୍ୟକ୍ଷ ବିବରଣୀ ଲେଖକ ତାଙ୍କ ଆତ୍ମଜୀବନୀରେ ପ୍ରଦତ୍ତ କରିଛନ୍ତି । ଘଟଣାଟି ହେଉଛି- ମେଦିନୀପୁର ଜିଲ୍ଲା ସୀମାନ୍ତରେ ବାଲେଶ୍ୱର ଜିଲ୍ଲାର ଗୋଟିଏ ଗାଁ 'କାଖଡ଼ା' । ହଠାତ୍ ଏକ ବେନାମୀ ପତ୍ରରେ ସମ୍ବାଦ ଆସିଲା ସେହି ଗ୍ରାମର କେତେକ ଯୁବକ 'ତରୁଣ ସଂଘ' ନାମରେ ସଂଘ ସ୍ଥାପନ କରି ସରକାରଙ୍କ ବିରୋଧରେ ବିଦ୍ରୋହାତ୍ମକ କାର୍ଯ୍ୟ କରୁଛନ୍ତି । ତା'ର ତଦନ୍ତ ଭାର ଲେଖକଙ୍କ ଉପରେ ନ୍ୟସ୍ତ କରାଗଲା । ସେ ଜଲେଶ୍ୱରରେ ପହଞ୍ଚି ସେଠାରୁ ଏକ ଭଡ଼ା ମୋଟରରେ ବାଟଗାଁରେ ପହଞ୍ଚିଲେ । ଆଗକୁ ଗାଡ଼ି ଯିବାର ସୁବିଧା ନଥିଲା । ଦେହୁଡ଼ା ଗ୍ରାମ ପର୍ଯ୍ୟନ୍ତ ତାଙ୍କ ଜିନିଷ ପତ୍ର ବୋହି କରି ନେବାକୁ କେହି ରାଜି ହେଲେ ନାହିଁ । କାରଣ ସେ ଥିଲେ ସରକାରୀ କର୍ମଚାରୀ । ସରକାରୀ

କର୍ମଚାରୀଙ୍କୁ ଅସହଯୋଗ କରିବାର ନିର୍ଦ୍ଦେଶ ରହିଥିଲା । ଲୋକମାନଙ୍କର ଧାରଣା ଥିଲା ସରକାରୀ କର୍ମଚାରୀମାନେ ଇଂରେଜଙ୍କ ଗୋଲାମ, କୁକୁର । ତାଙ୍କ ମାଲ କେହି ବୋହିବେ ନାହିଁ, ଯିଏ ବୋହିବ ସେ ବାସନ୍ଦ ହେବ । ଗ୍ରାମ ଚୌକିଦାର, ପ୍ରେସିଡେଣ୍ଟ ମଧ୍ୟ ସାହାଯ୍ୟ କରିବାକୁ ନାରାଜ । ଲେଖକ ନିଜକୁ ବ୍ରାହ୍ମଣ ବୋଲି ପରିଚୟ ଦେଇ ତାଙ୍କୁ ଭୋକ ସମୟରେ ଯଦି ଖାଦ୍ୟ ଦିଆନଯାଏ, ତେବେ ସେ ଅଭିଶାପ ଦେବେ ବୋଲି ଭୟ ଦେଖାଇଲେ । ଅଭିଶାପ ଭୟରେ ପ୍ରେସିଡେଣ୍ଟ ତାଙ୍କୁ ସାଙ୍ଗରେ ଘରକୁ ନେଲେ ଏବଂ ଘରେ ପରିଚୟ ଆଦାନ-ପ୍ରଦାନ ପରେ ଜାଣିଲେ ଅତୀତର ସେ ତାଙ୍କ ଭାଇକୁ ଗୋଟିଏ ହତ୍ୟା ଘଟଣାରୁ ବଞ୍ଚାଇ ଦେଇଥିଲେ । କୃତଜ୍ଞତାରେ ତାଙ୍କ ଘରର ସମସ୍ତସଦସ୍ୟ ତାଙ୍କ ପାଦ ଧୋଇ ଦେବା ସହିତ ଚମତ୍କାର ଆତିଥ୍ୟ ପ୍ରଦାନ କରିଥିଲେ । ଯେଉଁ ଘଟଣାର ତଦନ୍ତ ପାଇଁ ସେ ଯାଇଥିଲେ, ତଦନ୍ତ ପରେ ଜାଣିଲେ ଯେ ଘଟଣାଟି ସଂପୂର୍ଣ୍ଣ ମିଥ୍ୟା । ବଙ୍ଗାଳୀ ଓ ଓଡ଼ିଆମାନଙ୍କର ମତାନ୍ତର ଏବଂ ମନାନ୍ତର ପାଇଁ ଏପରି ଘଟଣାଟି ସୃଷ୍ଟି ହୋଇଥିଲା । ଲେଖକ ତାଙ୍କ ଚେଷ୍ଟାରେ ଉଭୟ ଦଳଙ୍କ ମଧ୍ୟରେ ରହିଥିବା ମନୋମାଳିନ୍ୟ ଦୂର କରିପାରିଥିଲେ । କଂଗ୍ରେସ ଆନ୍ଦୋଳନ ସମୟରେ କେବଳ ଓଡ଼ିଶା କାହିଁକି, ସମଗ୍ର ଭାରତବର୍ଷରେ ଏହିପରି ଏକ ଜାତୀୟବାଦୀ ଚିନ୍ତାଧାରାର ଉଦ୍ରେକ ହୋଇ ଅସହଯୋଗ ଆନ୍ଦୋଳନର ରୂପ ନେଇଥିଲା ।

**ସ୍ୱତନ୍ତ୍ର ପ୍ରଦେଶ ଗଠନ:-** ଭାରତର ସ୍ୱାଧୀନତା ଆନ୍ଦୋଳନ ଚାଲିଥିବା ସମୟରେ ମଧୁସୂଦନଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଆନ୍ଦୋଳନ ମଧ୍ୟ ତୀବ୍ରରୂପ ଧାରଣ କରିଥିଲା । ଶେଷରେ ମଧୁସୂଦନ ତାଙ୍କ ଜୀବିତାବସ୍ଥାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦେଖି ନପାରିଥିଲେ ହେଁ, ସେ ଯେଉଁ ଉତ୍କଳ ସମ୍ମିଳନୀ ରୂପକ ମାନସ ସନ୍ତାନଟିକୁ ଜନ୍ମ ଦେଇଥିଲେ, ତା'ରି ଆନ୍ଦୋଳନ ଉପରେ ୧୯୩୬ ମସିହା ଏପ୍ରିଲ ପହିଲା ଦିନ ଓଡ଼ିଶା ବିହାର ପ୍ରଦେଶରୁ ଅଲଗା ହୋଇ ସ୍ୱତନ୍ତ୍ର ପ୍ରଦେଶ ହେଲା । ଭାରତଚନ୍ଦ୍ର ତାଙ୍କ ଆତ୍ମ-ଜୀବନୀରେ ଏ ସମ୍ପର୍କରେ ମଧ୍ୟ ସଂକ୍ଷିପ୍ତ ସୂଚନା ପ୍ରଦାନ କରିଛନ୍ତି । ସେତେବେଳେ ନୂତନ ପ୍ରଦେଶର ପ୍ରଥମଲାଟ ହୋଇଥିଲେ ଓଡ଼ିଶାର କମିଶନର ସାର ଜନ୍ ହବେକ୍ । ରେଭେନ୍‌ସା କଲେଜର ବୃହତ୍ କକ୍ଷରେ ନୂତନ ପ୍ରଦେଶର ପ୍ରାଥମିକ ଶୁଭକ୍ରିୟା ସଂପନ୍ନ ହୋଇଥିଲା । ପୂର୍ବରୁ ଓଡ଼ିଶାକୁ ଖଣ୍ଡ-ବିଖଣ୍ଡିତ କରି ବିଭିନ୍ନ ପ୍ରେସିଡେନ୍‌ସୀ ସହିତ ଯୋଡ଼ି ରଖାଯାଇଥିଲା । ଏସମ୍ପର୍କରେ ଭାରତଚନ୍ଦ୍ର ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି- ଓଡ଼ିଶାର ବିଶିଷ୍ଟ ନେତାମାନେ ଇଂରେଜ ସରକାରଙ୍କର ଏହି ନୀତି ବିରୁଦ୍ଧରେ ବହୁକାଳ ଧରି ଲଢ଼େଇ କରି ଆସୁଥିଲେ । ବର୍ତ୍ତମାନ ସେମାନଙ୍କ ଉଦ୍ୟମର ଫଳ ଲାଭ ହୋଇଥିଲେହେଁ ସମସ୍ତ ଓଡ଼ିଆ ଅଞ୍ଚଳ ଏକତ୍ରୀଭୂତ ହେଲାନାହିଁ । ଏତାବତ୍ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନୁଗୁଳ ଏହି ପାଞ୍ଚ ଜିଲ୍ଲା ଦ୍ୱାରା ଓଡ଼ିଶା ଡିଭିଜନ ଗଠିତ ହୋଇଥିଲା । ବର୍ତ୍ତମାନ ମାଡ୍ରାସରୁ ଗଞ୍ଜାମ ଓ କୋରାପୁଟ

ଏହି ଦୁଇ ଜିଲ୍ଲା ମିଶିଲା । ମଧ୍ୟପ୍ରଦେଶରୁ ନୂଆପଡ଼ା ଓ ଖଡ଼ିଆଳ ଆସି ସମ୍ବଲପୁର ଜିଲ୍ଲା ସହିତ ମିଶିଲା, ଅନୁଗୁଳ ଜିଲ୍ଲାକୁ ଭାଙ୍ଗି ଦିଆଗଲା ଓ ଏହା ସହିତ ସମ୍ମିଳିତ ଥିବା କନ୍ଧମାଳ ସବ୍‌ଡିଭିଜନକୁ ଗଞ୍ଜାମ ସହିତ ମିଶାଇ ଦିଆଗଲା ଓ ପ୍ରକୃତ ଅନୁଗୁଳ କେବଳ ଗୋଟିଏ ସବ୍‌ଡିଭିଜନରେ ପରିଣତ ହୋଇ କଟକ ଅଧୀନସ୍ଥ ହୋଇରହିଲା । ଫଳତଃ କଟକ, ପୁରୀ ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ- ଏହି ଛଅଟି ଜିଲ୍ଲା ଦ୍ୱାରା ନୂତନ ଓଡ଼ିଶା ପ୍ରଦେଶ ଗଠିତ ହେଲା । ଅଦ୍ୟାପି ବାଲେଶ୍ୱରର ଉତ୍ତରାଞ୍ଚଳରେ ଅବସ୍ଥିତ ମେଦିନୀପୁର ଜିଲ୍ଲାର କିୟଦଂଶ, ସିଂହଭୂମ ଜିଲ୍ଲାର ସଦର ଡିଭିଜନ ଓ ମୟୂରଭଞ୍ଜ ସୀମା ସଂଲଗ୍ନ କେତେକାଂଶ, ଗଞ୍ଜାମ ସୀମାନ୍ତରେ ଅବସ୍ଥିତ ଇଛାପୁର ପ୍ରଭୃତି ଅଞ୍ଚଳ ଓ ମଧ୍ୟପ୍ରଦେଶରେ ଅବସ୍ଥିତ ଫୁଲଝର ଅଞ୍ଚଳ ଓଡ଼ିଶା ବାହାରେ ରହିଅଛି । ଏ ସମସ୍ତ ଅଞ୍ଚଳର ଅଧିକାରୀ ଓଡ଼ିଆ ଓ ଏହି ଅଞ୍ଚଳ ସବୁକୁ ଓଡ଼ିଶା ସହିତ ସମ୍ମିଳିତ କରିବା ସମସ୍ୟା ଅଦ୍ୟାପି ଜୀବିତ ରହିଅଛି । ଏ ସମସ୍ତ ଅଞ୍ଚଳ ଓଡ଼ିଶା ସହିତ ନ ମିଶିବା ଯାଏ ଓଡ଼ିଶା ବିକଳାଙ୍ଗ ହୋଇରହିଥିବା ।" (ପୃ. ୨୩୫-୩୬) ଅବଶ୍ୟ ଏହି ପୁସ୍ତକ ରଚନା ପରେ ଓଡ଼ିଶାର କେତେକାଞ୍ଚଳରେ ସାମାନ୍ୟ ଏପଟ ସେପଟ ହୋଇଛି ।

**ଭାରତବର୍ଷରେ ପ୍ରଥମ ସାଧାରଣ ନିର୍ବାଚନଃ-** ପରାଧୀନ ଭାରତବର୍ଷରେ ୧୯୩୭ ମସିହା ନଭେମ୍ବର ମାସରେ ପ୍ରଥମ ସାଧାରଣ ନିର୍ବାଚନ ହୁଏ ଏବଂ ଏହି ନିର୍ବାଚନରେ କଂଗ୍ରେସଦଳ ଜୟଯୁକ୍ତ ହୋଇ ମନ୍ତ୍ରୀମଣ୍ଡଳ ଗଠନ କରନ୍ତି । ଲେଖକ ସେତେବେଳେ ସରକାରଙ୍କ ଜଣେ ପ୍ରଶାସନିକ ଅଧିକାରୀ । ଏହି ନିର୍ବାଚନ ପରେ ଯେଉଁ ମତାନୈକ୍ୟ ଘଟିଥିଲା, ସେ ସମ୍ପର୍କରେ ଭାରତଚନ୍ଦ୍ର କୁହନ୍ତି- "କିନ୍ତୁ ପ୍ରଥମରେ ନେତୃବର୍ଗଙ୍କ ମଧ୍ୟରେ ମତାନୈକ୍ୟ ପ୍ରଯୁକ୍ତ ପାରଳାଖେମୁଣ୍ଡି ମହାରାଜା, ମୌଲବି ଲତିଫର ରହମାନ ଓ ଶ୍ରୀ ମାନଧାତା ଗୋରାଚାନ୍ଦ ପଟ୍ଟନାୟକଙ୍କୁ ନେଇ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଏମାନେ ପୁଣି କେତେକ ମାସ ମାତ୍ର ରହି ପଦତ୍ୟାଗ କଲେ ଓ ଗଞ୍ଜାମରୁ ନିର୍ବାଚିତ ଶ୍ରୀ ବିଶ୍ୱନାଥ ଦାସ, କଟକରୁ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ସମ୍ବଲପୁରରୁ ଶ୍ରୀ ବୋଧରାମ ଦୁବେ- ଏହ ତିନିଜଣ କଂଗ୍ରେସ ସଭ୍ୟଙ୍କୁ ନେଇ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଶ୍ରୀ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହେଲେ । ଏହି ପ୍ରକାରେ ଭାରତବର୍ଷରେ ସଂସ୍କୃତ ଶାସନ ପ୍ରଣାଳୀ ପ୍ରତିଷ୍ଠିତ ହେଲା ଏବଂ ଭାରତବାସୀ ଅନ୍ତିମ ସ୍ୱାୟତ୍ତ ଶାସନରେ ଆଶା ପୋଷଣ କରିବାକୁ ଲାଗିଲେ ।" (ପୃ-୨୪୦)

ଭାରତୀୟମାନଙ୍କ ଦ୍ୱାରା ବିଭିନ୍ନ ସ୍ଥାନରେ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲେହେଁ ଇଂରେଜଶାସନର ପ୍ରଭାବ ସଂପୂର୍ଣ୍ଣ ଅକ୍ଷୁର୍ଣ୍ଣ ରହିଥିଲା । ଇଂରେଜଶାସନ ଡାଞ୍ଚାରେ ଗଢ଼ା ଦେଶୀୟ ଗଭର୍ଣ୍ଣର ଓ ଉଚ୍ଚପଦସ୍ଥ କର୍ମଚାରୀ ଯଥାପୂର୍ବ କ୍ଷମତାରେ ରହିଲେ । ପୂର୍ବପରି

ଶାସନରେ ଅମଲାତନ୍ତ୍ର ସଂପୂର୍ଣ୍ଣ ଭାବରେ ପ୍ରତିଷ୍ଠିତ ରହିଲା । ମନ୍ତ୍ରୀମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବା କ୍ଷେତ୍ରରେ ଗଭର୍ଣ୍ଣରଙ୍କ ବାଧା ନଥାଏ । ସେ ଯେତେବେଳେ ଇଚ୍ଛା କରୁଥିଲେ ଆବଶ୍ୟକ ହେଉ ଅଥବା ଅନାବଶ୍ୟକ ହେଉ ନିଜର କ୍ଷମତା ପ୍ରଦର୍ଶନ କରିପାରୁଥିଲେ । ଏହାପରେ ଜନସାଧାରଣ ପ୍ରକାଶ୍ୟ ଭାବରେ ରାଜାମାନଙ୍କର ଗାଦିତ୍ୟାଗ ଓ ପ୍ରଜାମାନଙ୍କ ସ୍ୱାୟତ୍ତ ଶାସନ ଦାବିକଲେ । ରାଜା ଇଂରେଜ ସରକାରଙ୍କ ଶରଣ ପଶିବାରୁ ଲୋକମାନଙ୍କ ଉପରେ ଆରମ୍ଭ ହେଲା ଦମନଲୀଳା । ରଣପୁର ଓ ଢେଙ୍କାନାଳରେ ଏହି ଦମନଲୀଳ ସୀମା ଅତିକ୍ରମ କରିଯାଇଥିଲା ।

କେବଳ ସରକାରଙ୍କ କର୍ମଚାରୀ ନୁହନ୍ତି; କୁଳିନେତାମାନେ ମଧ୍ୟ ସାଧାରଣ ମଣିଷଙ୍କ ଉପରେ ଅତ୍ୟାଚାର କରୁଥିଲେ । ଏପରିକି ରାଜା ବା ଜମିଦାରଙ୍କ ଘରେ ଯେଉଁମାନେ କାର୍ଯ୍ୟ କରୁଥିଲେ, ସେମାନଙ୍କୁ ବାରଣ କରାଯାଉଥିଲା । କାରଣ ନ ମାନିଲେ ଶାରୀରିକ ଯନ୍ତ୍ରଣା ଦିଆଯାଉଥିଲା । ସେ ସମୟରେ ବିଭିନ୍ନ ସାମାଜିକ ବିଶୃଙ୍ଖଳା ଏବଂ ନିର୍ବାଚନ ପରେ ଜନସାଧାରଣଙ୍କ ପ୍ରତିକ୍ରିୟା ତଥା ପ୍ରଶାସନିକ ଅଧିକାରୀମାନଙ୍କ ଦମନଲୀଳା ଆଦି ଘଟଣାକୁ ବେଶ୍ ସମ୍ବେଦନଶୀଳତାର ସହିତ ବର୍ଣ୍ଣନା କରିଛନ୍ତି ତାଙ୍କ ଆତ୍ମଜୀବନୀରେ । ଏହା ବ୍ୟତୀତ ସେ ସମୟରେ ସଂଘଟିତ ବହୁ ଅପ୍ରୀତିକର ପରିସ୍ଥିତିକୁ ଚତୁରତାର ସହିତ ମୁକାବିଲା କରି ତା'ର ସମାଧାନ କରିଥିବାରୁ ପ୍ରଧାନମନ୍ତ୍ରୀଙ୍କଠାରୁ ଢେର୍ ପ୍ରଶଂସା ମଧ୍ୟ ପାଇଛନ୍ତି ।

**ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ଭାରତୀୟ ରାଜନୀତି:-** ଭାରତଚନ୍ଦ୍ର ତାଙ୍କ ଆତ୍ମଜୀବନୀରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମ୍ପର୍କରେ ସଂକ୍ଷେପରେ ଆଲୋଚନା କରିବା ସହିତ ସମକାଳୀନ ଭାରତୀୟ ରାଜନୀତି ସମ୍ବନ୍ଧରେ ମଧ୍ୟ ସଂକ୍ଷେପରେ ସୂଚନା ପ୍ରଦାନ କରିଛନ୍ତି । ୧୯୩୯ ମସିହା ସେପ୍ଟେମ୍ବର ୨ ତାରିଖ । ଏହା ପକ୍ଷରେ ଜର୍ମାନୀ, ଇଟାଲି ଓ ଜାପାନ; ଅପର ପକ୍ଷରେ ଇଂଲଣ୍ଡ, ଆମେରିକା, ଋଷିଆ । ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା । ସେହି ସମୟରେ ପରାଧୀନ ଭାରତୀୟଙ୍କ ଠାରୁ ଇଂରେଜ ସରକାର ସମସ୍ତ ପ୍ରକାର ସାହାଯ୍ୟ ଦାବୀ କରି ବସିଲେ । ସେମାନେ କହିଲେ ପୃଥିବୀରେ ସ୍ୱାଧୀନତା ଓ ଶାନ୍ତି ପାଇଁ ଇଂରେଜ ସରକାରଙ୍କୁ ଭାରତୀୟ ସାହାଯ୍ୟ କରନ୍ତୁ । ଭାରତୀୟ ନେତା କହିଲେ ଯେଉଁ ନୀତି ବଳରେ ସ୍ୱାଧୀନତା ସଂରକ୍ଷଣ ପାଇଁ ଇଂରେଜ ସରକାର ଯୁଦ୍ଧ ଚଳାଇଛନ୍ତି ବୋଲି କହୁଛନ୍ତି, ସେହି ନୀତି ଭାରତବର୍ଷ ପାଇଁ ପ୍ରଯୁଜ୍ୟ ହେଉ । ତାହାହେଲେ କଂଗ୍ରେସର ନେତୃତ୍ୱରେ ଭାରତବର୍ଷ ପୂର୍ଣ୍ଣ ପ୍ରାଣରେ ଯୁଦ୍ଧ କ୍ଷେତ୍ରକୁ ଅବତରଣ କରିବ । ମାତ୍ର ଭାରତୀୟ ନେତାଙ୍କ ଏପରି ପ୍ରସ୍ତାବରେ ଇଂରେଜ ସରକାର ରାଜି ହେଲେ ନାହିଁ । କଂଗ୍ରେସର କାର୍ଯ୍ୟକାରୀ କମିଟିର ୱାର୍ଦ୍ଧା ବୈଠକରେ ସ୍ଥିର ହେଲା, ଭାରତୀୟମାନେ ଯୁଦ୍ଧ ସକାଶେ ସାହାଯ୍ୟ କରିବା ବିରୋଧରେ ପ୍ରଚାର କରିବେ । ଏ ସମ୍ପର୍କରେ ଲେଖକ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି- "ଭାରତ ରକ୍ଷା ଆଇନ୍ ତ

ପୂର୍ବରୁ ଜାରିହୋଇ ସାରିଥିଲା ଓ ଯୁଦ୍ଧକୁ ସାହାଯ୍ୟ ଦେବା ବିରୁଦ୍ଧରେ ମତପ୍ରକାଶ ବା ପ୍ରଚାର କରିବା ଦୋଷାବହ ବୋଲି ପ୍ରଚାର କରା ହୋଇଥିଲା । ଏହି ଆଇନ୍ ଅମାନ୍ୟ କରିବା ପାଇଁ କଂଗ୍ରେସ ସ୍ଥିର କଲେ । କିନ୍ତୁ ଅମାନ୍ୟ କରିବ କିଏ ? ୧୯୩୦ ମସିହାରେ ଆଇନ୍ ଅମାନ୍ୟ ଆନ୍ଦୋଳନରେ ନାନାପ୍ରକାର ଲୋକେ କଂଗ୍ରେସରେ ପଶିଥିଲେ । ଏମାନଙ୍କ ମଧ୍ୟରେ ଅଧିକାଂଶ ବେରୋଜଗାରୀ ଓ ଅସଂଯତ ବ୍ୟକ୍ତି । ଏହି ଆନ୍ଦୋଳନ ସେମାନଙ୍କ ପକ୍ଷରେ ସୁବିଧା ଜନକ ହୋଇଥିଲା । ଘରେ ଖାଇବାକୁ ପାଉନଥିଲେ, ଖାଇବାକୁ ପନ୍ଥା ମିଳିଲା । ପୂର୍ବ କଳଙ୍କ କ୍ଷାଳନ କରିବା ବାଟ ପାଇଲେ । ମହାତ୍ମା ଗାନ୍ଧି ଏହା ଜାଣିଥିଲେ । ତେଣୁ ଉପସ୍ଥିତ ଆନ୍ଦୋଳନରେ ବଛା ବଛା ସୈନିକ ଓ ସେନାପତି ଯାଇ ଏହାକୁ ସାଫଲ୍ୟମଣ୍ଡିତ କରିବେ ବୋଲି ଉପାୟ ସ୍ଥିର କଲେ । ଦେଖାଗଲାଯେ ପ୍ରତ୍ୟେକ ରାଜ୍ୟର ଭୂତପୂର୍ବ ମନ୍ତ୍ରୀମାନେ କାର୍ଯ୍ୟ ଆରମ୍ଭ କରିବେ ଏବଂ ତତ୍ପରେ ପ୍ରାଦେଶିକ ବ୍ୟବସ୍ଥାପକ ସଭାର ସଦସ୍ୟମାନେ ସେମାନଙ୍କୁ ଅନୁସରଣ କରିବେ । ସମ୍ବଲପୁରର ବିଶିଷ୍ଟ ଓକିଲ ଓ ଭୂତପୂର୍ବ ଓଡ଼ିଶାର ମନ୍ତ୍ରୀ ଶ୍ରୀ ବୋଧରାମ ଦୁବେ ଆଇନ୍ ଅମାନ୍ୟ କରିବାକୁ ଅଗ୍ରସର ହେଲେ ।" (ପୃ-୨୬୦-୬୧)

ବୋଧରାମ ଦୁବେ ଘରର ସମସ୍ତ ବ୍ୟକ୍ତିଙ୍କ ଉତ୍ସାହ ଓ ସହଯୋଗ ତଥା ପଡ଼ୋଶୀ ଏବଂ ସମ୍ବଲପୁରର ବହୁଲୋକଙ୍କ ଶୁଭେଚ୍ଛା ନେଇ ମହାତ୍ମାଗାନ୍ଧିଙ୍କ ଅନୁମୋଦିତ ବାକ୍ୟ ଇଂରାଜୀ ଓ ଓଡ଼ିଆରେ ପାଠକଲେ । ସବ୍ ଡ଼ିଭିଜନାଲ ଅଫିସର ତାଙ୍କୁ ବନ୍ଦୀ କରି ଜେଲ୍‌କୁ ନେଲେ ଓ ସେହିଦିନ ତାଙ୍କୁ ଜିଲ୍ଲା ହାକିମ ଅଳଫର୍ ସାହେବ ବିଚାର କରି ନଅମାସ ଅଶ୍ରମ କାରାଦଣ୍ଡାଦେଶ ଦେଲେ । କେବଳ ସମ୍ବଲପୁରରେ ନୁହେଁ, ଭାରତ ବର୍ଷର ସର୍ବତ୍ର ଏହିପରି ଘଟଣା ସମ୍ବାଦପତ୍ର ମାନଙ୍କର ପୃଷ୍ଠାମଣ୍ଡନ କରିଥିଲା ।

**ଭାରତର ମନ୍ତ୍ରୀମଣ୍ଡଳ ପ୍ରେକ୍ଷାପଟରେ ଓଡ଼ିଶା:-** ଯୁଦ୍ଧ ଓ କଂଗ୍ରେସ ସହିତ ବ୍ରିଟିଶ ସରକାରଙ୍କର ଭାରତର ସ୍ୱାଧୀନତା ସମ୍ପର୍କରେ ମତାନ୍ତର ହେବାରୁ କଂଗ୍ରେସ ଶାସନ ଭାର ତ୍ୟାଗକଲା ଏବଂ ଓଡ଼ିଶାଲାଟ୍ ଶାସନଭାର ଗ୍ରହଣ କଲା । ତାଙ୍କ ତଳେ ଓଡ଼ିଶାର ପରାମର୍ଶଦାତା ରୂପେ ଏନ୍‌ସର୍ଜ ସାହେବ ଦାୟିତ୍ୱ ନେଇଥିଲେ । ସେ ସମ୍ବଲପୁର ଆସି ଯୁଦ୍ଧ ସମ୍ବନ୍ଧରେ ସରକାର କ'ଣ କ'ଣ ପଦକ୍ଷେପ ନେଇଛନ୍ତି ସୂଚନା ଦେବା ସହିତ ଅନ୍ୟାନ୍ୟ ଜିଲ୍ଲା ତୁଳନାରେ ସମ୍ବଲପୁରରେ ଅଧିକ ଅର୍ଥ ସଂଗ୍ରହ କରାଯାଇଛି ବୋଲି କହିଲେ । ଏନ୍‌ସର୍ଜ ସାହେବଙ୍କ ପରେ ଗୋଖଲେ ସାହେବ ଆଇ.ସି.ଏସ୍ ପରାମର୍ଶଦାତା ରୂପେ ନିଯୁକ୍ତି ପାଇବାର ଦୁଇମାସ ପରେ ପାରଳା ମହାରାଜାଙ୍କ ନେତୃତ୍ୱରେ ଗୋଦାବରୀଶ- ମିଶ୍ର ଓ ଅବଦୁଲ ଶୋଭନ ଖାଁ ମନ୍ତ୍ରୀମଣ୍ଡଳ ଗଠନ କଲେ । ପୂର୍ବ ମନ୍ତ୍ରୀମାନେ ୧୯୪୫ ମସିହାରେ ଜେଲରୁ ଫେରିଲେ । ୧୯୪୬ ମସିହାରେ ସାଧାରଣ ନିର୍ବାଚନ ହେଲା । କିଛିଦିନ ପାଇଁ କଂଗ୍ରେସ ବିରୋଧୀ ଦଳରେ ରହିଲା । ପରେ ପରେ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କଲା । କୋରାପୁଟ ସଦସ୍ୟ ଶ୍ରୀରାଧାକୃଷ୍ଣ ବିଶ୍ୱାସରାୟ, କଟକର

ସଦସ୍ୟ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ନିତ୍ୟାନନ୍ଦ କାନୁନ୍‌ଗୋ, ପୁରୀର ସଦସ୍ୟ ଲିଙ୍ଗରାଜ ମିଶ୍ର ସ୍ୱାଧୀନତା ପ୍ରାପ୍ତି ଅର୍ଥାତ୍ ୧୯୪୭ ପର୍ଯ୍ୟନ୍ତ ମନ୍ତ୍ରୀମଣ୍ଡଳରେ ରହିଥିଲେ । ଏହି ଦଳ ୧୯୫୧ ମସିହା ପର୍ଯ୍ୟନ୍ତ ଶାସନ କ୍ଷମତାରେ ରହିଲେ । ୧୯୫୨ ମସିହାରେ ସାଧାରଣ ନିର୍ବାଚନ ହେଲା । ଏହା ପୂର୍ବରୁ ଅର୍ଥାତ୍ ୧୯୪୯ ମସିହାରେ ମହତାବ କେନ୍ଦ୍ର ମନ୍ତ୍ରୀମଣ୍ଡଳକୁ ଚାଲିଯିବାରୁ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହେଲେ ।

୧୯୪୭ ମସିହା ନଭେମ୍ବର ୧୩ ତାରିଖରେ କେନ୍ଦ୍ର ଉପ-ପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ କଟକ ଆସି ଓଡ଼ିଶାର ଦେଶୀୟ ରାଜ୍ୟ ସମୂହ (ଗଡ଼ଜାତ ଅଞ୍ଚଳ)ର ରାଜାଙ୍କ ସହିତ ସାକ୍ଷାତ୍ ଓ ଆଲୋଚନା କରି ସେଗୁଡ଼ିକୁ ଭାରତ ସହିତ ଏକୀକରଣ କରିବାକୁ ସ୍ଥିର କଲେ । ରାଜାମାନେ ସେମାନଙ୍କ କ୍ଷମତା ଭାରତ ସରକାରଙ୍କୁ ଅର୍ପଣ କଲେ । ୧୯୪୮ ମସିହା ଜାନୁଆରୀ ୧ ତାରିଖରେ ଏମାନେ ଓଡ଼ିଶା ସହିତ ମିଶିଲେ । ଏହାର ଏକ ବର୍ଷପରେ ମୟୂରଭଞ୍ଜ ଓଡ଼ିଶା ସହିତ ମିଶିଲା । ରାଜାମାନେ ନିଜ ରାଜ୍ୟର ଆୟ ଅନୁସାରେ ଭତ୍ତା ପାଇଲେ ।

**ଅନୈତିକ ରାଜନୀତି:-** ଯେତେବେଳେ ପାରଳାମହାରାଜା କଟକର ଓକିଲ ଅବଦୁଲ ଶୋଭାନ୍ ଖାଁ ଓ ଗୋଦାବରୀଶ ମିଶ୍ରଙ୍କୁ ନେଇ ମନ୍ତ୍ରୀମଣ୍ଡଳ ଗଠନ କଲେ, ସେତେବେଳେ ସେମାନେ ଥିଲେ ସଂଖ୍ୟାନ୍ୟୂନ । କଂଗ୍ରେସଦଳ ଥିଲେ ସଂଖ୍ୟା ଗରିଷ୍ଠ । ସେମାନେ ନୈତିକତା ଦୃଷ୍ଟିରୁ ପଦତ୍ୟାଗ ନ କରି ବରଂ କଂଗ୍ରେସ ଦଳରୁ କିଛି ସଦସ୍ୟ ଆଣି ନିଜ ଦଳକୁ ପୁଷ୍ଟ କରିବାକୁ ଚାହିଁଥିଲେ । ସମ୍ବଲପୁର, ବରଗଡ଼ର ଦୁଇଜଣ ସଦସ୍ୟ ଫକୀର ବେହେରା ଓ ବିଶି ବେଭାରଙ୍କୁ ତାଙ୍କ ଦଳକୁ ନେବାରେ ସହାୟତା କରିବାକୁ ଭାରତଚନ୍ଦ୍ରଙ୍କୁ କହିଥିଲେ । ଏପରି କାର୍ଯ୍ୟ ଲେଖକ (ଭାରତଚନ୍ଦ୍ର)ଙ୍କୁ ଆଦୌ ପସନ୍ଦ ନ଼ଥିଲା । ପୁଣି ଗୋଦାବରୀଶ କଂଗ୍ରେସ ଦଳରେ ଥାଇ ଏବଂ ସେହି ଦଳରୁ ନିର୍ବାଚିତ ହୋଇ ପରେ ସେହିଦଳ ତ୍ୟାଗ କରି ପାରଳାରାଜା ଓ ଶୋଭାନ ଖାଁ ଯିଏ କଂଗ୍ରେସ ଦଳରେ ନଥିଲେ ତାଙ୍କ ସହିତ ମିଶି ମନ୍ତ୍ରୀପଦ ଗ୍ରହଣ କରିବା ମଧ୍ୟ ଭାରତଚନ୍ଦ୍ରଙ୍କର ପସନ୍ଦ ନଥିଲା । ଯେଉଁ ବ୍ରିଟିଶ ସରକାର ଭାରତୀୟଙ୍କୁ ସ୍ୱାଧୀନତା ଦେବାକୁ ପରାଙ୍ମୁଖ ଓ ଯେଉଁଥିପାଇଁ କଂଗ୍ରେସ ଅସହଯୋଗ କରୁଛି, ଗୋଦାବରୀଶଙ୍କ ପରି କିଛି ନେତା ମନ୍ତ୍ରୀ ହୋଇ ତାଙ୍କ କାର୍ଯ୍ୟକୁ ସମର୍ଥନ କରିବା ଭାରତଚନ୍ଦ୍ରଙ୍କୁ ଆଦୌ ପସନ୍ଦ ହୋଇନାହିଁ । ଗୋଦାବରୀଶ ବାବୁ ସମ୍ବଲପୁର ଗସ୍ତ କାଳରେ ଟାଉନ୍ ହଲ୍‌ରେ ଭାଷଣ ଦେବାବେଳେ ଲୋକମାନଙ୍କୁ ଅନୁରୋଧ କରିଥିଲେ ଯୁଦ୍ଧ କାର୍ଯ୍ୟରେ ବ୍ରିଟିଶ ଜାତି ସହିତ ସହଯୋଗ କରିବାପାଇଁ । ଏମାନେ ଚକ୍ରାନ୍ତ କରି ଶାସନ ଗାଦିରେ ରହିଥିଲେ । ବିରୋଧୀ ନେତାଙ୍କୁ ଜେଲ୍‌ରେ ରଖିଥିଲେ, ଯେପରି ସେମାନଙ୍କ ବିରୋଧରେ ଅବିଶ୍ୱାସ ପ୍ରସ୍ତାବ ଆସିନପାରେ ।

ଲେଖକ ଅବସର ପରେ ତା ୧୫-୨-୧୯୪୩ ରୁ ୧୪-୫-୧୯୪୩ ପର୍ଯ୍ୟନ୍ତ ଓଡ଼ିଶାର ଆସିଷ୍ଟାଣ୍ଟ ପବ୍ଲିସିଟି ଅଫିସର ପଦରେ ଥିବା ସମୟରେ ମନ୍ତ୍ରୀ ଗୋଦାବରୀଶ ବାବୁ ଖୋର୍ଦ୍ଧା ଡିଭିଜନର ମେଣ୍ଢାଶାଳ ଗ୍ରାମକୁ ଗସ୍ତରେ ଯାଇ ସଭା କରିଥିଲେ । ସେଠାରେ ସେ ତାଙ୍କ ପକ୍ଷ ସମର୍ଥକଙ୍କ ଉଦ୍ଦେଶ୍ୟରେ ଯେଉଁ ଭାଷଣ ଦେଇଥିଲେ ତା'ର ସଂକ୍ଷିପ୍ତ ସୂଚନା ଲେଖକ ତାଙ୍କର ଆତ୍ମଜୀବନୀରେ ଏହିପରି ଉଲ୍ଲେଖ କରିଛନ୍ତି- "ମନ୍ତ୍ରୀ କହିଲେ- "ମନ୍ତ୍ରୀମାନେ ଶାସନଭାର ଗ୍ରହଣ କରି ଦେଶ ଓ ଲୋକଙ୍କ ସେବା କରୁଅଛନ୍ତି । ଗାନ୍ଧିଙ୍କ ପଦସ୍ଖଳନ ଓ ଭ୍ରାନ୍ତି ଉପସ୍ଥିତ ହୋଇଅଛି । କେଉଁ ପଥରେ ଯିବେ ସେ ଆଉ ସ୍ଥିର କରି ନପାରି ଆଜି ବଡ଼ଲାଟଙ୍କ ପାଖକୁ ପତ୍ର ଲେଖୁଛନ୍ତି; କାଲି ଉପବାସ କରୁଛନ୍ତି ଇତ୍ୟାଦି ଇତ୍ୟାଦି । ସର୍ବଶେଷରେ ଲୋକଙ୍କୁ ଉଦ୍‌ବୋଧନ ଦେଇ କହିଲେ ଯେ ସେହି ଅଞ୍ଚଳର ପ୍ରତିନିଧି ଶ୍ରୀ ପ୍ରାଣନାଥ ପଟ୍ଟନାୟକ, ଯେ କି ସେହି ସମୟରେ ଜେଲ୍‌ରେ ଥିଲେ, ମନ୍ତ୍ରୀ ଦଳରେ ଯୋଗଦେଲେ ତାଙ୍କୁ ଜେଲ୍‌ରୁ ମୁକ୍ତକରି ଦିଆହେବ ଓ ଯଦି ସେ ତାହା ନ କରନ୍ତି, ତାହାହେଲେ ଭୋଟରବୃନ୍ଦ ତାଙ୍କଠାରୁ ଇସ୍ତଫା ଦାବି କରନ୍ତୁ ।"

ଗୋଦାବରୀଶଙ୍କ ଏହି ଅନୈତିକ ରାଜନୀତିକ କାର୍ଯ୍ୟକଳାପକୁ ଭାରତଚନ୍ଦ୍ର ତାଙ୍କ ଆତ୍ମଜୀବନୀରେ ନାପସନ୍ଦ କରି ଉଲ୍ଲେଖ କରିଥିଲେହେଁ ଗୋଟିଏ ଘଟଣାରେ ସେ ତାଙ୍କୁ ବେଶ୍ ପ୍ରଶଂସା କରିଛନ୍ତି । ଯେତେବେଳେ ସରକାର ପାଟଣା ମେଡ଼ିକାଲ କଲେଜକୁ ଚାରିଜଣ ବଡ଼ଲୋକଙ୍କ ନାମ ସୁପାରିଶ କଲେ, ସେତେବେଳେ ଲେଖକଙ୍କ ଝିଅ ନିରୁପମା ସହିତ ପୁରୀର ସେହି ବିଧବାଝିଅ ସୂର୍ଯ୍ୟମଣି ସାକ୍ଷାତ୍ କରି ସେ ଗରିବ ହୋଇଥିବାରୁ ତା'ର ନାମ ମେଡ଼ିକାଲ କଲେଜକୁ ପଠାଯାଉନାହିଁ ବୋଲି ନିରୁପମା ଅଭିଯୋଗ କଲେ; ଗୋଦାବରୀଶ ଫାଇଲ୍ ମଗାଇ ଜଣଙ୍କର ନାମ କାଟି ସୂର୍ଯ୍ୟମଣିଙ୍କ ନାମ ସୁପାରିଶ କଲେ ଓ ସେ ପାଟଣା ମେଡ଼ିକାଲ କଲେଜରେ ପଢ଼ିବାର ସୁଯୋଗ ପାଇଲେ । ଏହାସତ୍ତ୍ୱେ ତତ୍‌କାଳୀନ ରାଜନୀତିରେ ଗୋଦାବରୀଶଙ୍କ ଏହି କାର୍ଯ୍ୟକଳାପ ଅନେକଙ୍କ ଦ୍ୱାରା ଗ୍ରହଣୀୟ ହୋଇନଥିବା ଭାରତଚନ୍ଦ୍ରଙ୍କ ଆତ୍ମଜୀବନୀରୁ ଜଣାଯାଇଥାଏ ।

**ରାଜନୀତିକ ଘନଘଟା:-** ପ୍ରସଙ୍ଗକ୍ରମେ ଭାରତଚନ୍ଦ୍ର ତାଙ୍କ ଆତ୍ମଜୀବନୀରେ ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମ୍ପର୍କରେ ବିସ୍ତାରିତ ଆଲୋଚନା କରିଛନ୍ତି ଏବଂ ଭାରତୀୟ ରାଜନୀତିରେ ସେତେବେଳେ ଯେଉଁ ଘନଘଟା ଓ ହଟଚମଟ ସୃଷ୍ଟି ହୋଇଥିଲା, ସେ ସମ୍ପର୍କରେ ମଧ୍ୟ ସୂଚନା ପ୍ରଦାନ କରିଛନ୍ତି । ସେତେବେଳେ ଭାରତର ଅଙ୍ଗଚ୍ଛେଦ ନିମିତ୍ତ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ନେତୃତ୍ୱରେ ମୁସ୍‌ଲିମ ଲିଗ୍ ଗଠନ ହୋଇ ସେମାନେ ଭାରତଠାରୁ ସ୍ୱତନ୍ତ୍ର ହେବାକୁ ଦାବୀ କରିଥିଲେ ଓ ଏହି ଦାବୀକୁ ଇଂରେଜ ସରକାର ସମର୍ଥନ କରୁଥିଲେ । ଅବଶ୍ୟ ମୁସଲିମ୍ ଲିଗ୍‌ରେ ମୋସିନ୍, ଜମିୟୁତ୍ ଉଲେମା ଓ ଅନ୍ୟାନ୍ୟ କେତେକ ବିଶିଷ୍ଟ ଦଳ ଯୋଗ

ଦେଉନଥିଲେ । ମୁସ୍‌ଲିମ୍ ଲିଗ୍‌ର ନୀତିପ୍ରତି ସେମାନଙ୍କର ସମର୍ଥନ ନ ଥିଲା କିମ୍ବା ଛିନ୍ନ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ କୌଣସି ପ୍ରକାର ସ୍ୱାର୍ଥ ତ୍ୟାଗ କରିନଥିଲେ । ବିଶ୍ୱଯୁଦ୍ଧ ସମୟରେ ଇଂରେଜ ପ୍ରଶାସନ ଭାରତର ସମର୍ଥନ ଚାହୁଁଥିଲେ । ଭାରତବର୍ଷର କଂଗ୍ରେସ ଦଳ ଯୁଦ୍ଧ ପରେ ସ୍ୱାଧୀନତା ପ୍ରାପ୍ତିର ପ୍ରତିଶ୍ରୁତି ଦେଲେ ଯୁଦ୍ଧରେ ସହାୟତା କରାଯିବ ବୋଲି କହିଥିଲେ । ୧୯୪୨ ମାର୍ଚ୍ଚ ମାସରେ ବ୍ରିଟିଶ୍ ପାର୍ଲାମେଣ୍ଟର ସରକାରଙ୍କ ପକ୍ଷରୁ ନେତା ସାର୍ ଷ୍ଟେଫୋର୍ଡ କ୍ରିପ୍‌ସ ଯୁଦ୍ଧପରେ ଭାରତକୁ ସ୍ୱାୟତ୍ତ ଶାସନ ଦେବା ସମ୍ବନ୍ଧରେ କେତେକ ପ୍ରସ୍ତାବ ନେଇ ଭାରତ ଆସିଥିଲେ । ଭାରତର ସମସ୍ତ ସଂପ୍ରଦାୟ ସେହି ପ୍ରସ୍ତାବକୁ ଆଗ୍ରହ୍ୟ କରିଥିଲେ । ଜୁଲାଇ ୧୪ ତାରିଖରେ କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରସ୍ତାବ କରିଥିଲେ- ଯଦି ଇଂରେଜ ସରକାର ସ୍ୱାଧୀନତା ଦାବୀ ପ୍ରସ୍ତାବକୁ ଅଗ୍ରାହ୍ୟ କରନ୍ତି, ତେବେ କଂଗ୍ରେସ ଆଇନ୍ ଅମାନ୍ୟ ଆନ୍ଦୋଳନ କରିବ । ଅଗଷ୍ଟ ୭ ତାରିଖରେ ଏହି ପ୍ରସ୍ତାବ ବମ୍ବେରେ ଆଲୋଚିତ ହୋଇ ୮ ତାରିଖରେ ନିଖିଳ କଂଗ୍ରେସ କମିଟିରେ ଧାର୍ଯ୍ୟ ହେଲା । ସରକାର ମହାତ୍ମାଗାନ୍ଧୀ ଓ ଅନ୍ୟାନ୍ୟ ପ୍ରଧାନ ନେତାଙ୍କୁ ୯ ତାରିଖରେ ଗ୍ରେପ୍ତାର କଲେ । ଅସୁସ୍ଥ ରାଜେନ୍ଦ୍ର ପ୍ରସାଦଙ୍କୁ ମଧ୍ୟ ପାଟଣା ଜିଲ୍ଲା ମାଜିଷ୍ଟ୍ରେଟ୍ ମି. ଆର୍ଚ୍ଚର ଗ୍ରେପ୍ତାର କରିଥିଲେ । ୧୦ ତାରିଖରେ ଅନ୍ୟାନ୍ୟ କଂଗ୍ରେସ ନେତାଙ୍କୁ ଗ୍ରେପ୍ତାର କରିବାରୁ ଜେଲ୍‌ଖାନାଗୁଡ଼ିକ ରାଜନୀତିକ ବନ୍ଦୀମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଯାଇଥିଲା ।

ଏହି ସମୟରେ ଲେଖକଙ୍କ ଝିଅ ଯିଏ ପାଟଣା ମେଡ଼ିକାଲ କଲେଜରେ ଅଧ୍ୟୟନ କରୁଥିଲେ, ସେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ କେତେକ ମେଡ଼ିକାଲ ଛାତ୍ରବନ୍ଧୁଙ୍କ ସହିତ ଛାତ୍ର ଆନ୍ଦୋଳନରେ ସାମିଲ ହୋଇଥିଲେ । କ୍ଲାସକୁ ନଯିବା ପାଇଁ ପିକେଟିଂ କରିଥିଲେ । ମାତ୍ର ୫ ଜଣ ମୁସଲମାନ ଛାତ୍ର କ୍ଲାସ୍‌କୁ ଯିବାକୁ ଜିଦ୍ କରିଥିଲେ । ଛାତ୍ରମାନଙ୍କ ଅନୁରୋଧ ରକ୍ଷା ନ କରିବାରୁ ଆନ୍ଦୋଳନକାରୀ ଛାତ୍ର ସେମାନଙ୍କ ଆଗରେ ଶୋଇ ପଡ଼ିଲେ ଓ ଛାତ୍ରୀମାନେ ପଛରୁ ବାଟ ଓଗାଳିଲେ । ସେମାନେ ଡାକ୍ତର ମର୍ଡକ ସାହେବଙ୍କୁ ଡାକି ଆଣିଲେ । ମର୍ଡକ ସାହେବ କହିଲେ ଯେଉଁମାନେ କ୍ଲାସକୁ ଯିବାକୁ ଚାହାନ୍ତି ସେମାନଙ୍କୁ ଛାଡ଼ିଦେବା ଉଚିତ୍ । ମାତ୍ର ଛାତ୍ରମାନେ ସେମାନଙ୍କ କଥା ଶୁଣିଲେ ନାହିଁ । ବାଧ୍ୟ ହୋଇ ସେମାନେ ଫେରିଗଲେ । କେବଳ ପାଟଣାରେ ନୁହେଁ, ସମଗ୍ର ଭାରତବର୍ଷରେ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଲେଖକ ପତ୍ନୀଙ୍କ ଉଦରପୀଡ଼ା ଓ ଶ୍ୟାମର ଚକ୍ଷୁ ପରୀକ୍ଷା ପାଇଁ ପାଟଣା ଯାଇ ସେଠାରେ ରହିଥିବା ବେଳେ ଏହି ଆନ୍ଦୋଳନ ଘଟଣାର ପ୍ରତ୍ୟକ୍ଷଦର୍ଶୀ ହୋଇଥିଲେ । ପାଟଣାରେ ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନ ଚାଲିଥିବା ସମୟରେ ପରିଚୟ ହୋଇଥିଲା ଇଞ୍ଜିନିୟରିଂ ଛାତ୍ର ଭୁବନେଶ୍ୱର ବେହେରାଙ୍କ ସହିତ । ପାଟଣା ପଢୁଥିବା ବହୁ ଓଡ଼ିଆ ଛାତ୍ର ଘରକୁ ଯିବାକୁ ବ୍ୟସ୍ତ; ମାତ୍ର ଯିବାର ପଥ ବନ୍ଦ ଥିବାରୁ ଯିବା ସମ୍ଭବପର ହୋଇପାରୁନଥିଲା । ଗୋରା

ସୈନ୍ୟମାନେ ବିଭିନ୍ନ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କର ଛାତ୍ରବାସ ଦଖଲ କଲେ । ପାଟଣାର ଯୋଗାଯୋଗ ପ୍ରାୟ ବିଚ୍ଛିନ୍ନ ହୋଇଯାଇଥିଲା । କିନ୍ତୁ ପାଟଣାର ବିଶୃଙ୍ଖଳିତ ଅବସ୍ଥାରେ ସେଠାରେ ରହିବା ସମ୍ଭବ ନଥିଲା । ଲେଖକ ଲରୀ ଅଫିସକୁ ଯାଇ ବୁଝି ଆସିଲେ ବି.ଏନ୍.ଆର ପଥରେ କୌଣସି ଗୋଳମାଳ ନାହିଁ ଓ ରାଞ୍ଚି-ଚକ୍ରଧରପୁର ଦେଇ ସମ୍ବଲପୁର ଯାଇହେବ । ତା. ୪/୯/୧୯୪୨ରେ ସେ ପାଟଣା ତ୍ୟାଗ କରି ସମ୍ବଲପୁର ଆସିଥିଲେ । ସାଙ୍ଗରେ ମଧ ଭୁବନେଶ୍ୱର ବେହେରା ଆସିଥିଲେ, ଯିଏ ପରେ ତାଙ୍କର ଜ୍ୱାଇଁ ହୋଇଥିଲେ ।

**ହୀରାକୁଦ ବନ୍ଧ ଆନ୍ଦୋଳନ:-** ଓଡ଼ିଶାର ହୀରାକୁଦଠାରେ ମହାନଦୀ ଉପରେ ଏକ ବିରାଟ ବନ୍ଧ ନିର୍ମାଣର ଯୋଜନା ଆରମ୍ଭ ହୋଇଥିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ । ଏହାଥିଲା ଯୁଦ୍ଧୋତ୍ତର ପୁନର୍ଗଠନର ଏକ ନୂତନ ଯୋଜନା, ଯାହାଦ୍ୱାରା ବନ୍ୟା ନିୟନ୍ତ୍ରଣ ହେବା ସଙ୍ଗେ ସଙ୍ଗେ ବିପୁଳ କୃଷିକ୍ଷେତ୍ର ଜଳସେଚିତ ହୋଇପାରିବ । କିନ୍ତୁ ଏହାଦ୍ୱାରା ବହୁ ଜନବସତି ବୁଡ଼ି ଯିବା ସହିତ ବହୁ ଲୋକଙ୍କୁ ବିସ୍ଥାପିତ ହେବାକୁ ପଡ଼ିବ । ବିସ୍ଥାପିତ ସମସ୍ୟାକୁ ନେଇ ଏହି ଅଞ୍ଚଳରେ ସୃଷ୍ଟି ହୋଇଥିଲା ଜନ ଆନ୍ଦୋଳନ । ଏହି ଆନ୍ଦୋଳନ ସମ୍ପର୍କରେ ଲେଖକ ଭାରତଚନ୍ଦ୍ରଙ୍କ ଯେଉଁ ପ୍ରତ୍ୟକ୍ଷ ଜ୍ଞାନ ରହିଥିଲା, ତାହାକୁ ସେ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଆତ୍ମଜୀବନୀ ବିବରଣୀ ଅନୁସାରେ ୧୯୪୬ ମସିହା ଫେବୃଆରୀ ମାସ ଶେଷ ବେଳକୁ ଜଣାଗଲା ଯୁଦ୍ଧୋତ୍ତର ପୁନର୍ଗଠନ ସମ୍ପର୍କରେ ସରକାର ଯେଉଁ ବନ୍ଧ ନିର୍ମାଣ ଯୋଜନା କରିଥିଲେ, ଓଡ଼ିଶାର ଗଭର୍ଣ୍ଣର ନିଜେ ସମ୍ବଲପୁର ଆସି ତାହା ଘୋଷଣା କରିବାର ସମସ୍ତ ଆୟୋଜନ ହୋଇଥିଲା । ତା.୧୪/୩/୧୯୪୬ରେ ଓଡ଼ିଶାର ଲାଟ୍ ସାର୍ ହଥର୍ଣ୍ଣ ଲୁଇସ୍ ବନ୍ଧର ଶୁଭ ଦେବାପାଇଁ ସମ୍ବଲପୁର ଆସିଥିଲେ । ତା'ର ପ୍ରତିକ୍ରିୟା ସ୍ୱରୂପ ମ୍ୟୁନିସିପାଲିଟି ଗୃହରେ ବିରୋଧ ପାଇଁ ଗୋଟିଏ ସଭା ହୋଇଥିଲା । ଏହା ସତ୍ତ୍ୱେ ତା.୧୫/୩/୧୯୪୬ରେ ଶୁଭ ଦିଆଗଲା । ଭାରତ ସରକାରଙ୍କ ସେକ୍ରେଟାରୀ ପ୍ରାୟର ସାହେବ, ଇଞ୍ଜିନିୟର ଅଯୋଧ୍ୟାନାଥ ଖୋସଲା (ପରବର୍ତ୍ତୀ ସମୟରେ ଓଡ଼ିଶାର ରାଜ୍ୟପାଳ) ଆସିଥିଲେ । ସରକାରଙ୍କ ପରାମର୍ଶଦାତା ଗୋଖଲେ ସାହେବ I.C.S ବନ୍ଧ ଯୋଜନା ସମ୍ପର୍କରେ କେତେକ ସୂଚନା ପ୍ରଦାନ କରିଥିଲେ । ଏହାପରେ ଏହି ବନ୍ଧ ଯୋଜନାକୁ କେନ୍ଦ୍ରକରି ବିଭିନ୍ନ ସ୍ଥାନରେ ପ୍ରତିବାଦ ସଭା ଅନୁଷ୍ଠିତ ହେଲା । ତତ୍କାଳୀନ ଓଡ଼ିଶା ସରକାରଙ୍କ ମନ୍ତ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ତା.୧୮/୫/୧୯୪୬ରେ ଏଠାକୁ ଆସି କହିଥିଲେ ହୀରାକୁଦ ବନ୍ଧ ପ୍ରଧାନତଃ କଟକ ଓ ପୁରୀ ଜିଲ୍ଲାକୁ ବନ୍ୟା ବିପ୍ଳାତରୁ ରକ୍ଷାପାଇଁ ନିର୍ମିତ । ବନ୍ୟାଦ୍ୱାରା ଏହି ଜନାକୀର୍ଣ୍ଣ ଓ ସମୃଦ୍ଧିଶାଳୀ ଅଞ୍ଚଳ କ୍ରମେ ଦରିଦ୍ର ହୋଇଯାଉଛି, ଇତ୍ୟାଦି । ତାଙ୍କର ଏହି ଭାଷଣ ଆନ୍ଦୋଳନକୁ ଅଧିକ ତୀବ୍ର କରିଥିଲା । କଟକିଆଙ୍କ ପ୍ରତି ଏହି ଅଞ୍ଚଳ ଲୋକଙ୍କ ମନରେ ଅସନ୍ତୋଷ ସୃଷ୍ଟି ହୋଇଥିଲା । ଲେଖକ ଲୋକମାନଙ୍କ ଅବୁଝାପଣର ପ୍ରତିବାଦ କରିଥିଲେ ହେଁ ତାଙ୍କ କଥା

କେହି ଶୁଣିନଥିଲେ । ଅବଶ୍ୟ ଓଡ଼ିଶାର କେନ୍ଦ୍ରସ୍ଥଳ କଟକ ଟାଉନ୍‌ହଲରେ ତା.୧୯/୬/୧୯୪୬ରେ ଯେଉଁ ସଭା ହୋଇଥିଲା, ଲେଖକ ସେଥିରେ ସମ୍ବଲପୁର ଜିଲ୍ଲାର ପ୍ରତିନିଧି ରୂପେ ହୀରାକୁଦ ଯୋଜନା ଫଳରେ ଲୋକଙ୍କର କିପରି ଦୁର୍ଦ୍ଦଶା ହେବ, ସେ ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିଥିଲେ । ତା.୨୫/୬/୧୯୪୬ରେ ସମ୍ବଲପୁରର ଟାଉନ୍ ହଲ୍‌ରେ ଜିଲ୍ଲାବୋର୍ଡ ମେମ୍ବରମାନଙ୍କ ଦ୍ୱାରା ହୀରାକୁଦ ବନ୍ଧ ଯୋଜନା ସମ୍ବନ୍ଧରେ ଯେଉଁ ଆଲୋଚନା ହୋଇଥିଲା, ସେଥିରେ ଲେଖକ କଟକ ଟାଉନ୍ ହଲ୍‌ରେ ଅନୁଷ୍ଠିତ ସଭାରେ ଯେଉଁ ପ୍ରସ୍ତାବ ଦେଇଥିଲେ, ସେ ସମ୍ପର୍କରେ ଆଲୋଚନା କରିଥିଲେ । ଏଠାରେ ହୀରାକୁଦ ବନ୍ଧ ଯୋଜନା ପରିତ୍ୟକ୍ତ ହେବାର ପ୍ରସ୍ତାବ ପେସ୍ ହୋଇଥିଲା । ପରେ ପରେ ଟାଉନ୍ ହଲରେ ସମ୍ବଲପୁର ଜିଲ୍ଲା କୃଷକ ସମ୍ମିଳନୀର ଅଧିବେଶନ ହୋଇଥିଲା । ଏହି ଅଧିବେଶନର ଉଦ୍ଦେଶ୍ୟ ଥିଲା ହୀରାକୁଦ ବନ୍ଧ ଯୋଜନାକୁ ବିରୋଧ କରିବା । ସମ୍ମିଳନୀର ସଭାପତି ଡାକ୍ତର ଜନାର୍ଦ୍ଦନ ପୂଜାରୀ ଓ ଅଭ୍ୟର୍ଥନା ସଭାର ସଭାପତି ଥିଲେ ଶଙ୍କର ପ୍ରସାଦ ମିଶ୍ର । ପ୍ରଥମ ପ୍ରସ୍ତାବ ଥିଲା ହୀରାକୁଦ ଯୋଜନାକୁ କାର୍ଯ୍ୟକାରୀ ନ କରିବା ଏବଂ କଟକିଆଙ୍କ ଉପରେ ଆକ୍ରମଣ । କେହି କେହି କହିଲେ ପାଠ୍ୟପୁସ୍ତକ କଟକିଆଙ୍କ ଭାଷାରେ ଲେଖା ହେଉଥିବାରୁ ପିଲାମାନେ ଲେଖା ଆଦୌ ବୁଝିପାରୁନାହାନ୍ତି । ଶିକ୍ଷାରେ ବ୍ୟାଘାତ ସୃଷ୍ଟି ହେଉଛି । ଏଣୁ ସମ୍ବଲପୁର ପୁଣି ମଧ୍ୟପ୍ରଦେଶକୁ ଫେରିଯିବା ସକାଶେ ଆନ୍ଦୋଳନ ଆରମ୍ଭ ହେବା ଉଚିତ୍ ବୋଲି ଜଣେ ବିଶିଷ୍ଟ ସଭ୍ୟ ମତ ରଖିଥିଲେ । ପୁଣି ସେ କହିଥିଲେ- "ଆମ୍ଭେମାନେ ଓଡ଼ିଆ ନୋହୁଁ, କି ଆମ୍ଭର ଭାଷା ମଧ ଓଡ଼ିଆ ନୁହେଁ ।" ସେତେବେଳେ ଲେଖକ ଏପରି ମତର ପ୍ରତିବାଦ କରିଥିବା ବିଷୟ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଅବଶ୍ୟ ବିସ୍ଥାପନ ସମସ୍ୟାକୁ ଠିକ୍ ଭାବରେ ସମାଧାନ ନ କରି ତଥା ବିସ୍ଥାପିତଙ୍କ ସହିତ ସକାରାତ୍ମକ ଆଲୋଚନା ନକରି ହଠାତ୍ ଏପରି ପ୍ରସ୍ତାବ ନିଶ୍ଚିତ ଭାବରେ ଅଞ୍ଚଳବାସୀଙ୍କ ଭାବପ୍ରବଣତାକୁ ଗଭୀର ଭାବରେ ଆଘାତ କରିବା ସ୍ୱାଭାବିକ । ତେଣୁ ସେତେବେଳେ କ୍ରୋଧ ଓ ଅଭିମାନରେ ସେମାନେ ଯାହା କହିଥିଲେ, ତା'ର ଯାଥାର୍ଥ୍ୟକୁ ଉପଲବ୍ଧି କଲେ ତାହା ସଂପୂର୍ଣ୍ଣ ନିରର୍ଥକ ବୋଲି କୁହାଯାଇ ନପାରେ ।

ପୁନରାୟ ତା.୨୧/୭/୧୯୪୭ରେ ସମ୍ବଲପୁର ଟାଉନ୍ ହଲ୍‌ଠାରେ ଯେଉଁ ସଭାର ଆୟୋଜନ କରାଯାଇଥିଲା, ସେଥିରେ ଯୋଗଦେବାକୁ ଉଦ୍ୟୋକ୍ତାଗଣ ଆହ୍ୱାନ ଦେବାରୁ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ, ଅନ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ଭୂତପୂର୍ବ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ, ଯଦୁମଣି ମଙ୍ଗରାଜ ଆଦି ଯୋଗ ଦେଇଥିଲେ । ବିରାଟ ଶୋଭାଯାତ୍ରାରେ କୃଷକ ସମ୍ମିଳନୀର ସଭାପତି ଜନାର୍ଦ୍ଦନ ପୂଜାରୀଙ୍କୁ ଟାଉନ୍ ହଲ୍‌କୁ ଅଣାଯାଇଥିଲା । ସଭାରେ ବନ୍ଧ ନିର୍ମାଣକୁ ବିରୋଧ ସହିତ କଟକିଆଙ୍କୁ ତୀବ୍ର ବ୍ୟଙ୍ଗୋକ୍ତି କରାଯାଇଥିଲା । ସଭାପତି କହିଲେ, ହୀରାକୁଦ ଆନ୍ଦୋଳନକୁ ସଫଳ କରିବା ସକାଶେ ସେ ତାଙ୍କ ବିନ୍ଦୁ ବିନ୍ଦୁ ରକ୍ତ ଦେବାକୁ

କୁଣ୍ଠିତ ହେବେନାହିଁ । ଆଉ ଜଣେ ସଭ୍ୟ କହିଲେ ତାଙ୍କ ଶବ ଉପରେ ହୀରାକୁଦର ପ୍ରଥମ ମାଟି ପଡ଼ିବ । ମୁଖ୍ୟମନ୍ତ୍ରୀ ମହତାବ କହିଲେ- "ସମ୍ବଲପୁରବାସୀଙ୍କ ଇଚ୍ଛା ବିରୋଧରେ ଏହି ବନ୍ଧ ନିର୍ମିତ ହେବନାହିଁ ଓ ଏହି ସଭାରେ ଉତ୍‌ଥାପିତ ଏଥିସକାଶେ ସମ୍ବଲପୁରବାସୀଙ୍କୁ ବିନ୍ଦୁ ବିନ୍ଦୁ ରକ୍ତ କିମ୍ବା ପ୍ରାଣବଳୀ ଦେବା ଆବଶ୍ୟକ ହେବନାହିଁ । ସମ୍ବଲପୁର-ବାସୀଙ୍କ ଚରମ ମୀମାଂସାକୁ ଛଅ ପଇସିଆ ଖଣ୍ଡେ ଲଫାପାରେ ସରକରଙ୍କୁ ଜଣାଇଦେଲେ ଯଥେଷ୍ଟ ହେବ । କିନ୍ତୁ ସମ୍ବଲପୁରବାସୀଙ୍କୁ ମୀମାଂସା ଆଗରୁ ବୁଝିସୁଝି କରିବାକୁ ହେବ, ଯେପରି ପରେ ପଶ୍ଚାତାପ କରିବାକୁ ହେବନାହିଁ ଓ ଏହି ଯୁଦ୍ଧୋତ୍ତର ପୁନର୍ଗଠନମୂଳକ ବିଶିଷ୍ଟ ହିତକର ଅନୁଷ୍ଠାନଗୁଡ଼ିକର ଅଭାବରେ ଯେପରି ମନ୍ତ୍ରୀମଣ୍ଡଳଙ୍କୁ ଦୋଷ ବହନ କରିବାକୁ ହେବନାହିଁ ।

**ବନ୍ଧ ବିରୋଧୀ କମିଟି:-** ବିଭିନ୍ନ ସ୍ଥାନରେ ଆଲୋଚନା ପରେ ବନ୍ଧ ବିରୋଧୀ ଆନ୍ଦୋଳନକୁ ଚଲାଇ ରଖିବା ନିମିତ୍ତ ଗୋଟିଏ କାର୍ଯ୍ୟକାରୀ କମିଟି ଗଠିତ ହେଲା । ସେଥିରେ ସଭ୍ୟ ସଂଖ୍ୟା ଥିଲେ ୧୧ ଯେଉଁଥିରେ ଲେଖକ ଭାରତଚନ୍ଦ୍ର ମଧ ଜଣେ ସଭ୍ୟ ରହିଥିଲେ । ତା.୭/୮/୧୯୪୬ରେ କମିଟିର ପ୍ରଥମ ବୈଠକ ହୋଇଥିଲା ଯେଉଁଥିରେ କଟକିଆଙ୍କୁ ନିନ୍ଦା, ସରକାରୀ ଚାକିରିଆଙ୍କୁ ଚାକିରି ତ୍ୟାଗ ତଥା ମହତାବଙ୍କ ମତାମତକୁ ବିରୋଧ କରାଯାଇଥିଲା । ଦ୍ୱିତୀୟ ବୈଠକ ତା.୧୭/୮/୧୯୪୬ରେ ଅନୁଷ୍ଠିତ ହୋଇଥିଲା ଏବଂ ଶଙ୍କର ପ୍ରସାଦ ମିଶ୍ରଙ୍କ ସଂପାଦକତ୍ୱରେ "ହୀରାଖଣ୍ଡ ସମାଚାର" ନାମକ ସାପ୍ତାହିକ ସମ୍ବାଦପତ୍ର କମିଟିର ମୁଖପତ୍ର ସ୍ୱରୂପ ବଲାଙ୍ଗିରରୁ ପ୍ରକାଶିତ ହେବାକୁ ସ୍ଥିର ହୋଇଥିଲା । ହୀରାକୁଦ ସମାଚାରରେ ଅନେକ ତ୍ରୁଟିପୂର୍ଣ୍ଣ ସମ୍ବାଦ ସମ୍ବଲପୁର ଓ କୋଶଳ ସମ୍ପର୍କରେ ବାହାରିଥିବା ଲେଖକ ସ୍ୱୀକାର କରିବା ସହିତ ସେ ସମ୍ପର୍କରେ ପ୍ରକୃତ ସତ୍ୟ ଘଟଣା ଐତିହାସିକ ତଥ୍ୟ ମାଧ୍ୟମରେ ପ୍ରଦାନ କରିଛନ୍ତି । କିଛି ବ୍ୟକ୍ତି ସେତେବେଳେ ସମ୍ବଲପୁରକୁ ଓଡ଼ିଶାରୁ ବିଚ୍ଛିନ୍ନ କରିବାକୁ ମତ ଦେଉଥିଲେ । କେତେବେଳେ ସେମାନେ ମଧ୍ୟପ୍ରଦେଶ ଓ କେତେବେଳେ ନିକଟବର୍ତ୍ତୀ ଗଡ଼ଜାତ ଅଞ୍ଚଳ ସହିତ ମିଳିତ ହେବା ସପକ୍ଷରେ ସ୍ୱର ଉତ୍ତୋଳନ କରୁଥିବା ବିଷୟ ଲେଖକ ତାଙ୍କ ଆତ୍ମଜୀବନୀରେ ସୂଚନା ଦେଇଛନ୍ତି । ଲୋକମାନଙ୍କର ଏପରି ମତାମତକୁ ଲକ୍ଷ୍ୟ କରି ଭାରତଚନ୍ଦ୍ର ଇଂରେଜୀ ଓ ଓଡ଼ିଆ ସମ୍ବାଦପତ୍ରମାନଙ୍କରେ ଯେଉଁ ବିବୃତିଟି ଦେଇଥିଲେ ତାହା ଏହିପରି- "ହୀରାକୁଦ ଯୋଜନା ବିରୋଧରେ ଚାଲିଥିବା ଆନ୍ଦୋଳନ ଫଳରେ ସମ୍ବଲପୁରର ନେତାମାନେ ଏ ଜିଲ୍ଲାକୁ ଓଡ଼ିଶାରୁ ଅଲଗା କରିଦେବା ଏବଂ ମଧ୍ୟପ୍ରଦେଶ ଅଥବା କାଳ୍ପନିକ ପୁରାତନ କୋଶଳ ସାମ୍ରାଜ୍ୟ, ଯାହାର କେନ୍ଦ୍ର ପାଟଣା ଷ୍ଟେଟ୍ ହେବ, ତାହା ସହିତ ମିଶିବା ପାଇଁ ପ୍ରଚାର କରୁଛନ୍ତି । ଏ ଆନ୍ଦୋଳନକୁ ଯୁକ୍ତିଯୁକ୍ତ ବୋଲି ଦର୍ଶାଇବା ପାଇଁ ସେମାନେ କହୁଛନ୍ତି ଯେ ସମ୍ବଲପୁର ଲୋକଙ୍କ ଓଡ଼ିଶାର ଉପକୂଳ ଅଞ୍ଚଳର ଓଡ଼ିଆମାନଙ୍କ ସହିତ ସାମାଜିକ ସଂପୃକ୍ତି ବା ଐତିହାସିକ ସାମ୍ୟ କିଛି ନାହିଁ ଏବଂ ଏପରିକି ସେମାନେ ଜାତୀୟତାକୁ ସୁଦ୍ଧା ଅସ୍ୱୀକାର କରୁଅଛନ୍ତି । ଏତେ ଦୂରକୁ ଯାଉଛନ୍ତି

ଯେ ସମ୍ବଲପୁର ଜିଲ୍ଲାରେ ବାସ କରୁଥିବା ଲୋକେ ଓଡ଼ିଶାର ଗୋଟିଏ ସଂଖ୍ୟାନ୍ୟୂନ ଗୋଷ୍ଠୀ ବୋଲି ଦାବୀ କଲେଣି । ଏସବୁ ଦାବୀ ଯେ ନିତାନ୍ତ ଅସଙ୍ଗତ ଏଥିରେ ସନ୍ଦେହ ନାହିଁ । ଇତିହାସ ଦୃଷ୍ଟିରୁ ଏହା ମୁହୂର୍ତ୍ତକ ମଧ୍ୟରେ ଅମୂଳକ ବୋଲି ଜଣାପଡ଼ିବ । ସମ୍ବଲପୁରର ଲୋକେ ଓଡ଼ିଶା ପ୍ରଦେଶର ଅନ୍ୟାନ୍ୟ ଭାଗମାନଙ୍କ ପରି ସବୁବେଳେ ଓଡ଼ିଆ ଏବଂ ଚିରକାଳ ଓଡ଼ିଆ ରହିଥିବେ । କୌଣସି ପ୍ରକାର ଆନ୍ଦୋଳନ ବା ଓଡ଼ିଆଙ୍କୁ ଭାଗ କରିବା ଫଳରେ ସେମାନଙ୍କ ଜାତୀୟତାକୁ ଅପହରଣ କରିପାରିବ ନାହିଁ । ସମ୍ବଲପୁର ନେତାମାନଙ୍କ ଦୁରଭିସନ୍ଧିମୂଳକ କାର୍ଯ୍ୟ ଅଜ୍ଞ ଜନସାଧାରଣଙ୍କୁ ଅନ୍ଧ ଭାବରେ ପରିଚାଳିତ କରୁଅଛି ଏବଂ ସେମାନଙ୍କ ଭାଗ୍ୟକୁ ଗଡ଼ଜାତର ଏକଛତ୍ର ଶାସନର ଅଧୀନରେ ନେଇ ନେବାର ଫିକର କରୁଛି । କିନ୍ତୁ ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ସେମାନେ ତାହାଠାରୁ ଯେଉଁ ଭିନ୍ନ ପ୍ରକାର ଶାସନରେ ରହି ଆସିଲେଣି ତହିଁରୁ ଜାଣିବାକୁ ହେବ ଯେ, ଏହି ଉଦ୍ୟମ ଯେ ଅଚିରେ ବିଫଳ ହେବ ଏଥିରେ ସନ୍ଦେହ ନାହିଁ । ତେଣୁ ଏମାନେ ଆନ୍ଦୋଳନ ବନ୍ଦ କରନ୍ତୁ । ଏହା ଏମାନଙ୍କ ଆତ୍ମଘାତୀ ନୀତି । ଦୁଃଖର କଥା, ଯେତେବେଳେ ବିଭିନ୍ନ ଅଣ ଓଡ଼ିଆ ପ୍ରଦେଶମାନଙ୍କରେ ଯେଉଁସବୁ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳ ରହିଯାଇ ଅଛି ସେ ସବୁକୁ ଫେରାଇ ଆଣିବା ବର୍ତ୍ତମାନର ବିଶେଷ ଆବଶ୍ୟକୀୟ ସମସ୍ୟା । ସେତେବେଳେ ଯେଉଁ ହୀରାକୁଦ ଯୋଜନା ପାଇଁ ସ୍ୱତନ୍ତ୍ର ଭାବରେ ଲଢ଼େଇ କରି ହୁଅନ୍ତା ତାକୁ ଏବେ ମଧ୍ୟ ବିଚ୍ଛିନ୍ନ ହୋଇ ରହିଥିବା ଓଡ଼ିଶା ପ୍ରଦେଶର ଅଧିକତର ବ୍ୟବଚ୍ଛେଦ ପାଇଁ ଆଶ୍ରୟ କରା ହେଉଅଛି ।" (ପୃ-୪୦୬-୦୭) ଭାରତଚନ୍ଦ୍ରଙ୍କ ଏପରି ମତାମତ ବନ୍ଧ ବିରୋଧୀଙ୍କୁ ଉତ୍ୟକ୍ତ କରିଥିଲା ଓ ପରିଣାମସ୍ୱରୂପ ସେ ସେମାନଙ୍କଠାରୁ ଖୁବ୍ ଗାଳି ମଧ୍ୟ ଖାଇଥିଲେ ।

ତା.୨୦/୪/୧୯୪୬ ଦିନ ମହାନଦୀ ବାଲିରେ ବନ୍ଧ ବିରୋଧୀ କମିଟିର ସଭାରେ ପ୍ରସ୍ତାବ ଗ୍ରହଣ କରାଯାଇଥିଲା- ଓଡ଼ିଶା ସରକାର ଏକମାସ ମଧ୍ୟରେ ହୀରାକୁଦ ବନ୍ଧ ଯୋଜନା ବର୍ଜିତ ହେଲା ଓ ସମ୍ବଲପୁର ଯେଉଁ ପ୍ରଦେଶ ବା ଗଡ଼ଜାତ ସହିତ ମିଳିତ ହେବାକୁ ଚାହିଁବ ସେହି ଅଞ୍ଚଳ ସହିତ ମିଳିତ ହେବାକୁ ସ୍ୱାଧୀନ ବୋଲି ଘୋଷଣା କରିବେ ଏବଂ ତାହା ନକଲେ ୨୦/୫/୪୭ ଦିନ ସତ୍ୟାଗ୍ରହ ଆରମ୍ଭ ହେବ ଓ ତାହା ସଫଳ ହେବା ପର୍ଯ୍ୟନ୍ତ ସମ୍ବଲପୁରବାସୀ ତାହା ଚଳାଇବେ । ୨୧/୫/୪୭ ସକାଳେ ସତ୍ୟାଗ୍ରହ ଆରମ୍ଭ ହେଲା । ଡାକ୍ତର ଜନାର୍ଦ୍ଦନ ପୂଜାରୀ ତାଙ୍କ ପତ୍ନୀ କମଳା ଦେବୀଙ୍କ ନେତୃତ୍ୱରେ କିଛି ଯୁବକ-ଯୁବତୀ କଚେରୀ ଯାଇ ହୀରାକୁଦ ବନ୍ଦ କର, ଓଡ଼ିଶା ସରକାର ସମ୍ବଲପୁର ଛାଡ଼ ଧ୍ୱନି ଦେଲେ । ଏମାନଙ୍କୁ ଗ୍ରେପ୍ତାର କରାଗଲା । ଏହାପରେ କଟକିଆଙ୍କ ଉପରେ ଆକ୍ରମଣ । ସରକାର କିଛି ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ହାତେଇ ନେଇ ଆନ୍ଦୋଳନକୁ ବନ୍ଦ କରିଦେଲେ । ଏହାପରେ ଏହି ବନ୍ଧ ବିରୋଧୀ ଆନ୍ଦୋଳନ କିପରି ଚାଲିଥିଲା, ତା'ର ଏକ ବିସ୍ତୃତ ବିବରଣୀ ଭାରତଚନ୍ଦ୍ର ତାଙ୍କ ଆତ୍ମଜୀବନୀରେ ପ୍ରଦାନ କରିଛନ୍ତି ।

**ହୀରାକୁଦ ବନ୍ଧ ନିର୍ମାଣ:-** ବନ୍ଧ ବିରୋଧୀ ଆନ୍ଦୋଳନ ସତ୍ତ୍ୱେ ୧୯୪୭ ମସିହାର ବର୍ଷାଋତୁ ଶେଷରେ ବନ୍ଧ କାର୍ଯ୍ୟ ଆରମ୍ଭ ହେଲା । ବିସ୍ଥାପିତଙ୍କ ପାଇଁ ଗୃହ ନିର୍ମାଣ ହେବାର ଯୋଜନା ହେଲା । କିଛି ଗୃହ ନିର୍ମାଣ ହୋଇଥିଲେହେଁ ଜମଡ଼ା ଗ୍ରାମବାସୀମାନେ ସେମାନଙ୍କ ନିଜ ଘରୁ ଚାଲିଗଲେ, ସରକାରଙ୍କ ନିର୍ମିତ ଘରେ ରହିଲେ ନାହିଁ । ଏହି ସମୟରେ ଜମି ଜମା ଗ୍ରହଣ, ଜମିର ମୂଲ୍ୟାଙ୍କନ, ସରକାରଙ୍କ ପ୍ରତିଶ୍ରୁତି ପାଳନରେ ବ୍ୟତିକ୍ରମ, ସାଧାରଣ ମଣିଷଙ୍କ ଅସହାୟତା, ସରକାରୀ କଳର ମନୋମୁଖୀ କାର୍ଯ୍ୟ, ବିସ୍ଥାପିତଙ୍କ ସମସ୍ୟା, କୋର୍ଟ କଚେରୀ, ମାଲି ମକଦ୍ଦମା ଆଦି ବହୁ ଘଟଣାକୁ ଲେଖକ ବିଭିନ୍ନ ତଥ୍ୟ ମାଧ୍ୟମରେ ତାଙ୍କ ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି । ବନ୍ଧ ନିର୍ମାଣ ହେବା ସମୟରେ ବନ୍ଧ ବିରୋଧୀ ଆନ୍ଦୋଳନର ନେତାମାନେ ଦୁଇ ଗୋଷ୍ଠୀରେ ବିଭକ୍ତ ହୋଇଥିଲେ । ସେତେବେଳେ ଯେଉଁମାନେ ବନ୍ଧ ବିରୋଧରେ ଏକତ୍ର ହୋଇଥିଲେ, ସେମାନଙ୍କ ମଧ୍ୟରୁ କିଛି ସରକାରୀ ଓକିଲ ହୋଇ ବିସ୍ଥାପିତଙ୍କ ବିରୋଧରେ କୋର୍ଟରେ ଓକିଲାତି କରିଥିଲେ । ଏହିପରି ଏକ ଅପ୍ରୀତିକର ପରିସ୍ଥିତିରେ ହୀରାକୁଦ ବନ୍ଧ ନିର୍ମାଣ ସମାପ୍ତ ହୋଇଥିଲା, ଯାହା ଓଡ଼ିଶାକୁ ସମଗ୍ର ଏସିଆରେ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିପାରିଛି ।

**ଉପସଂହାର:-** ଭାରତଚନ୍ଦ୍ରଙ୍କ ଆତ୍ମଜୀବନୀ ସମକାଳୀନ ଓଡ଼ିଶାର ବହୁ ଘଟଣାକୁ ବେଶ୍ ସ୍ୱଚ୍ଛନ୍ଦତାର ସହ ପ୍ରକାଶ କରି ଏକ ଐତିହାସିକ ଡକ୍ୟୁମେଣ୍ଟରେ ପରିଣତ ହୋଇପାରିଛି । ପ୍ରଶାସନିକ ଅଧିକାରୀ ଭାବରେ ପ୍ରଶାସନ କଳ ସହିତ ସେ ଓତପ୍ରୋତ ଜଡ଼ିତ ଥିଲେ । ତେଣୁ ସ୍ୱାଧୀନତା ପୂର୍ବ ଅର୍ଥାତ୍ ଇଂରେଜ ଶାସନ ନୀତି ଏବଂ ସ୍ୱାଧୀନତା ପର ଅର୍ଥାତ୍ ଦେଶୀୟ ରାଜନୀତି ନେତାଙ୍କ ଶାସନନୀତିର ଏକ ତୁଳନାତ୍ମକ ଚିତ୍ର ପାଠକ ସହଜରେ ଅବଗତ ହୋଇପାରେ ତାଙ୍କ ଆତ୍ମଜୀବନୀରୁ । ଏତଦ୍ ବ୍ୟତୀତ ଜଣେ ଶୃଙ୍ଖଳିତ ସରକାରୀ କର୍ମଚାରୀ ଭାବରେ, ଜଣେ ସମାଜସେବୀ ଭାବରେ ତଥା ସଂସ୍କାରକ ଭାବରେ ତାଙ୍କ ଜୀବନର ଯେଉଁ ଘଟଣାଗୁଡ଼ିକୁ ସେ ପ୍ରକାଶ କରିଛନ୍ତି, ତାହା କେବଳ ମାତ୍ର ଘଟଣା ନୁହେଁ; ବରଂ ସାମସମୟିକ ସମାଜର ବାସ୍ତବ ଚିତ୍ରକୁ ଉପସ୍ଥାପନ କରିଥାଏ । ଊନବିଂଶ ଏବଂ ବିଂଶ ଶତକର ବହୁ ଆଞ୍ଚଳିକ, ଜାତୀୟ ତଥା ଆନ୍ତର୍ଜାତୀୟ ଘଟଣାବଳୀରେ ତାଙ୍କ ଆତ୍ମଜୀବନୀ ଭରପୂର । ଯଦିଓ ଏହି ଜୀବନୀଟି ସଂପୂର୍ଣ୍ଣ ହୋଇପାରିନାହିଁ; ବହୁ ଘଟଣା ଲିପିବଦ୍ଧ ରହିଥିଲେ ହେଁ ତାହା ଆତ୍ମଜୀବନୀର କଳେବର ମଣ୍ଡିତ କରିପାରିନାହିଁ, ଏହାସତ୍ତ୍ୱେ ଯେତିକି ତଥ୍ୟ ଓ ଘଟଣା ଆତ୍ମଜୀବନୀଟିରେ ପ୍ରକାଶ ପାଇଛି, ସେଥିରୁ ସମକାଳୀନ ଓଡ଼ିଶା, ଭାରତ ତଥା ବିଶ୍ୱ ସମ୍ପର୍କରେ ବହୁ ଘଟଣା ସମ୍ପର୍କରେ ପାଠକ ବେଶ୍ ଅବଗତ ହୋଇପାରିବେ, ସନ୍ଦେହ ନାହିଁ ।



## ତୃତୀୟ ପରିଚ୍ଛେଦ

# ଅନୁବାଦ ଗ୍ରନ୍ଥ 'ହୁଏନ୍ ସାଂ ଓ ତାହାଙ୍କ ଭାରତ-ଭ୍ରମଣ' : ଭାରତ ଭ୍ରମଣର ଅନୁପମ ଆଲେଖ୍ୟ

**ଉପକ୍ରମ :** ଭାରତଚନ୍ଦ୍ରଙ୍କ ଅନୁବାଦ ଗ୍ରନ୍ଥ 'ହୁଏନ୍ ସାଂ ଓ ତାହାଙ୍କ-ଭ୍ରମଣ' ବାସ୍ତବରେ ଏକ ଚମତ୍କାର ସୃଷ୍ଟି । ଅନୁବାଦକଙ୍କ ବଳିଷ୍ଠ ଅନୁବାଦ ପ୍ରତିଭାର ଏହା ଚରମ ନିଦର୍ଶନ । ହୁଏନ୍‌ସାଂଙ୍କ ଦୀର୍ଘ ଦିନର ଭାରତରେ ଅବସ୍ଥାନ ଓ ଏହି ଅବସ୍ଥାନ ସମୟରେ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ କାଳରେ ସେ ଯେଉଁ ଚମତ୍କାର ଅନୁଭୂତି ଲାଭ କରିଥିଲେ ତାହାକୁ ସେ ତାଙ୍କ ଭ୍ରମଣ ଗ୍ରନ୍ଥରେ ପରିପ୍ରକାଶ କରିଛନ୍ତି । ଭାରତର ସାମଗ୍ରିକ ଭୌଗୋଳିକ ବିବରଣୀ ଏଥିରେ ଉପଲବ୍ଧ । ସମକାଳୀନ ଭାରତର ସାମାଜିକ, ସାଂସ୍କୃତିକ ଓ ଧାର୍ମିକ ଜୀବନର ଏକ ତୁଳନାତ୍ମକ ଚିତ୍ର ମଧ୍ୟ ଏହି ଗ୍ରନ୍ଥରେ ପ୍ରକାଶ ଲାଭ କରିଛି । ଏପରି ଏକ ଉପାଦେୟ ଗ୍ରନ୍ଥର ଅନୁବାଦ ନିଶ୍ଚିତ ଭାବରେ ଅନୁବାଦକଙ୍କର ଏକ ମହାନ୍ କାର୍ଯ୍ୟ । ଏହି ଗ୍ରନ୍ଥରେ ପ୍ରଦତ୍ତ ବହୁ ବିବରଣୀ ପ୍ରତ୍ୟେକ ବ୍ୟକ୍ତିର ଜାଣିବା ଆବଶ୍ୟକ । ମୁଖ୍ୟତଃ ଏଥିରେ ସମକାଳୀନ ଭାରତର ସାମାଜିକ, ରାଜନୀତିକ ଓ ଧାର୍ମିକ ଅବସ୍ଥା; ଦୂରତା ନିର୍ଣ୍ଣୟ ସମ୍ପର୍କୀୟ ବିଭିନ୍ନ ସୂଚନା ତଥା ଭାରତର ବିଭିନ୍ନ ନଗରର ନାମ ଓ ତା'ର ବିଶେଷତ୍ୱ ସମ୍ବନ୍ଧରେ ବିସ୍ତୃତ ବିବରଣୀ ରହିଛି । ପର୍ଯ୍ୟାୟକ୍ରମେ ଏହି ପରିଚ୍ଛେଦରେ ସେଗୁଡ଼ିକର ସଂକ୍ଷିପ୍ତ ଆଲୋଚନା କରାଯାଉଛି ।

**ଗ୍ରନ୍ଥ ସମ୍ପର୍କରେ ସୂଚନା:-** 'ହୁଏନ୍ ସାଂ ଓ ତାହାଙ୍କ ଭାରତ- ଭ୍ରମଣ' ଅନୁବାଦ ଗ୍ରନ୍ଥଟିର ପ୍ରଥମ ସଂସ୍କରଣ ହୁଏ ୧୯୪୦ ମସିହା ମାର୍ଚ୍ଚ ମାସରେ । ଏହାର ମୁଦ୍ରାକର ଶ୍ରୀ ବାଳକୃଷ୍ଣ କର ବି.ଏ । ପ୍ରକାଶ ପାଏ ସାରସ୍ୱତ ପ୍ରେସ୍ କଟକରୁ । ସୂଚନା ପର୍ଯ୍ୟାୟରେ ଲେଖକ କହିଛନ୍ତି- କଟକରେ ଅବସ୍ଥାନ ସମୟରେ ୧୯୩୭ ସାଲ ଜୁଲାଇ ମାସରେ ରେଭେନ୍‌ସା କଲେଜର ଇତିହାସ ଅଧ୍ୟାପକ ଶ୍ରୀଯୁକ୍ତ ଘନଶ୍ୟାମ ଦାଶଙ୍କ ଠାରୁ ଏସ୍. ବିଲ୍‌ଙ୍କ ଲିଖିତ The life of Hiuen- Tsiang (ହୁଏନ୍ ସାଂଙ୍କ ଜୀବନ ଚରିତ) ପୁସ୍ତକଟି ପଢ଼ିବାକୁ

ଆଣିଥିଲେ । ସେହି ବର୍ଷ ତାଙ୍କର ସ୍ୱାସ୍ଥ୍ୟହାନି ଘଟିବାରୁ ଆଠ ଦିନ ଶଯ୍ୟାଶାୟୀ ଥିବା ସମୟରେ ସେହି ପୁସ୍ତକ ଖଣ୍ଡିତ ଆମୂଳଚୂଳ ପାଠକରି ଏପରି ଶାନ୍ତି ଅନୁଭବ କରିଥିଲେ ଯେ, ଏହାକୁ ମାତୃଭାଷାରେ ଅନୁବାଦ କରିବାକୁ ଲାଗିଲେ ଓ ଡିସେମ୍ବର ମାସ ଶେଷ ଭାଗରେ ଅନୁବାଦ କାର୍ଯ୍ୟ ଶେଷ ହୋଇଥିଲା । ଗ୍ରନ୍ଥଟି ଓଡ଼ିଶା ସରକାରଙ୍କ ଆର୍ଥିକ ସହାୟତାରେ 'ଉତ୍କଳ ସାହିତ୍ୟ ସମାଜ' ଦ୍ୱାରା ପ୍ରକାଶିତ ହୋଇଥିଲା ।

ଶୁଣାଯାଏ ଚୀନ- ପରିବ୍ରାଜକ ହୁଏନ୍ ସାଂ ଦୀର୍ଘ ୧୪ ବର୍ଷ କାଳ ଭାରତବର୍ଷ ଭ୍ରମଣ କରି ଯେଉଁ ଅନୁଭୂତି ଲାଭ କରିଥିଲେ, ତାହାକୁ ସେ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଲିପିବଦ୍ଧ କରି ଏକ ଗୁମ୍ଫାରେ ଗୋପନ ଭାବରେ ରଖିଥିଲେ । ପରେ ହୁଇ-ଲି ଏବଂ ୟେନ୍-ସଂ ନାମକ ତାଙ୍କର ଦୁଇଜଣ ଶିଷ୍ୟ ତାହା ଉଦ୍ଧାର କରିଥିଲେ । ହୁଏନ୍-ସାଂ ୬୨୯ ଖ୍ରୀ:ରେ ଭାରତ ଆସି ୬୪୫ ଖ୍ରୀ:ରେ ତାଙ୍କର ପର୍ଯ୍ୟଟନ ସମାପ୍ତ କରିଥିଲେ । ୬୩୦ ସାଲରୁ ୬୪୩ ସାଲ ପର୍ଯ୍ୟନ୍ତ ସେ ଭାରତର ବିଭିନ୍ନ ସ୍ଥାନ ଭ୍ରମଣ କରି ଯେଉଁ ଅନୁଭୂତି ପ୍ରାପ୍ତ ହୋଇଥିଲେ ତାହା ସେ ତାଙ୍କ ଗ୍ରନ୍ଥରେ ଲିପିବଦ୍ଧ କରିଛନ୍ତି । ମୁଖବନ୍ଧରେ ଅନୁବାଦକ କୁହନ୍ତି- "ତାହାଙ୍କ ଭ୍ରମଣ ବୃତ୍ତାନ୍ତ ଭାରତବର୍ଷର ପ୍ରସିଦ୍ଧ ସ୍ଥାନମାନଙ୍କର ଶୁଷ୍କ ଭୌଗୋଳିକ ବା ରାଜ୍ୟମାନଙ୍କର ଐତିହାସିକ ବର୍ଣ୍ଣନା ନୁହେଁ । ଜ୍ଞାନ ପିପାସୁ ଚୈନିକ ଶ୍ରମଣଙ୍କର ପରିସ୍ଫୁଟ ବ୍ୟକ୍ତିତ୍ୱ, ପରିବ୍ରାଜକ ସୁଲଭ ଅନୁସନ୍ଧିତ୍ସା ଓ ତତ୍‌କାଳୀନ ବିଶ୍ୱାସ ପ୍ରବଣତା ଦ୍ୱାରା ଭ୍ରମଣ ବୃତ୍ତାନ୍ତଟି ଉପନ୍ୟାସ ତୁଲ୍ୟ ଚିତ୍ତାକର୍ଷକ ହୋଇଅଛି ।"

ଗ୍ରନ୍ଥର ମୁଖବନ୍ଧ- 'ହୁଏନ୍ ସାଂ ଓ ତାହାଙ୍କ ଭାରତ- ଭ୍ରମଣ' ଗ୍ରନ୍ଥଟି ଏକ ଅନୁବାଦ ଗ୍ରନ୍ଥ ହେଲେହେଁ, ଏଥିରେ ପ୍ରଦତ୍ତ ମୁଖବନ୍ଧ ବେଶ୍ ବୌଦ୍ଧିକ ଓ ପାଣ୍ଡିତ୍ୟପୂର୍ଣ୍ଣ । ହୁଏନ୍ ସାଂ ଭାରତବର୍ଷ ଭ୍ରମଣରେ ଆସିଥିବା ସମୟରେ ଭାରତର ସାମାଜିକ, ସାଂସ୍କୃତିକ, ଆର୍ଥନୀତିକ ଅବସ୍ଥା କିପରି ରହିଥିଲା, ତା'ର ଏକ ବିସ୍ତାରିତ ଆଲୋଚନା ଏଥିରେ ଦେଖିବାକୁ ମିଳିଥାଏ । ଏତଦ୍‌ବ୍ୟତୀତ ହୁଏନ୍ ସାଂ କେଉଁ କେଉଁ ସ୍ଥାନ ପରିଭ୍ରମଣ କରିଥିଲେ ତା' ମଧ୍ୟ ଭୌଗୋଳିକ ବିବରଣୀ ଏଥିରେ ପରଦୃଷ୍ଟ ହୋଇଥାଏ । ହୁଏନ୍ ସାଂଙ୍କ ଭାରତ ପରିଭ୍ରମଣ ସମୟକୁ ବୌଦ୍ଧଧର୍ମ ଭାରତ ବାହାରେ ମଧ୍ୟ ପ୍ରସିଦ୍ଧି ଲାଭ କରିସାରିଥିଲା । ବିଶେଷ କରି ଜାପାନ, ଚୀନ, ପାରସ୍ୟ, ଗାନ୍ଧାର, ଜାଭା, ସୁମାତ୍ରା, ଶ୍ୟାମ ପ୍ରଭୃତି ଏସିଆ ମହାଦେଶଗୁଡ଼ିକରେ ଏହା ପ୍ରଚାରିତ ଓ ପ୍ରସାରିତ ହୋଇ ବେଶ୍ ଜନପ୍ରିୟତା ଅର୍ଜନ କରି ପାରିଥିଲା । ମାତ୍ର ଆମ ଇତିହାସରେ ଏହି ତଥ୍ୟ ବହୁ ପରିବର୍ତ୍ତୀ ସମୟରେ ଉପଲବ୍ଧ ହୋଇଥିଲା । ଏ ସମ୍ପର୍କରେ ଅନୁବାଦକ କୁହନ୍ତି- "ପ୍ରାଚୀନ ଭାରତବାସୀମାନେ ସ୍ୱଦେଶର ଧାରାବାହିକ ଇତିହାସ ରଚନା ସମ୍ବନ୍ଧରେ ଏକାନ୍ତ ଉଦାସୀନ ଥିଲେ । ଆମ୍ଭେମାନେ ଯାହା କିଛି ତଥ୍ୟ ପାଉଁ, ସେ ସମସ୍ତ ବିଦେଶୀୟମାନଙ୍କର ଲେଖନୀ-ପ୍ରସୂତ । ସାମରିକ ଅଭିଯାନ, ଦେଶ ଜିଗୀଷା, ବାଣିଜ୍ୟ

ପ୍ରସାର, ଧର୍ମ ସମ୍ବନ୍ଧୀୟ ଆଲୋଚନା ଓ ପରବର୍ତ୍ତୀ କାଳରେ ବୈଜ୍ଞାନିକ ଗବେଷଣା ସଙ୍ଗେ ଇତିହାସ ଲେଖାର ଆବଶ୍ୟକତା ଉପଲବ୍ଧ ହେବାକୁ ଲାଗିଲା । ଗ୍ରୀକ୍‌ମାନେ ଆଲେକ୍‌ଜାଣ୍ଡାରଙ୍କ ନେତୃତ୍ୱରେ ଭାରତବର୍ଷ ଆକ୍ରମଣ କରି କେତେକ ବର୍ଷକାଳ ଦେଶରେ ସ୍ୱାଧିକାର ବିସ୍ତାର କରି ରହିଲେ । ଆରବୀୟମାନେ ବାଣିଜ୍ୟ ଓ ବ୍ୟବସାୟ ଉଦ୍ଦେଶ୍ୟରେ ଆସିଥିଲେ; ସୁତରାଂ ସେମାନଙ୍କ ରଚିତ ଇତିହାସ ନିରପେକ୍ଷ ହୋଇନପାରେ; କିନ୍ତୁ ଚୈନିକ ପରିବ୍ରାଜକଗଣ ଭାରତୀୟ ଭାବରେ ଅନୁପ୍ରାଣିତ ହୋଇ ଭାରତର ପବିତ୍ର ସ୍ଥାନସମୂହ ପରିଦର୍ଶନ କରି ଉକ୍ତ ସ୍ଥାନସମୂହର ବିଶଦ ବିବରଣ ଓ ଦେଶର ଧର୍ମଭାବ, ରୀତିନୀତି, ଆଚାର ବ୍ୟବହାର ସମ୍ବନ୍ଧରେ ଲେଖିଯାଇଛନ୍ତି; ସୁତରାଂ ସେମାନଙ୍କ ଲିଖିତ ବିବରଣର ନିରପେକ୍ଷତା ଏହାର ବିଶେଷତ୍ୱ" (ପୃ-୪୯) ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ମାଧ୍ୟମରେ ଅନୁବାଦକ ବିଭିନ୍ନ ବୌଦ୍ଧଶ୍ରମଣ, ଐତିହାସିକ ସ୍ଥାନ ଓ ତା'ର ବିବରଣୀ, ସମକାଳୀନ ସାମାଜିକ ଇତିହାସକୁ ଆଲୋଚନା କରିଛନ୍ତି ।

ଭାରତ ବାହାରେ ବିଭିନ୍ନ ଦେଶ ଓ ଦ୍ୱୀପରେ କେତେକ ବୌଦ୍ଧସ୍ତୂପ ଏବଂ ମଠ ଦେଖାଯାଇଥାଏ । ସେହିସବୁ ଦେଶ ମଧ୍ୟରେ ମୁଖ୍ୟ ହେଉଛି ମାଳୟ, ବୋର୍ଣ୍ଣିଓ, ଜାଭା, ସୁମାତ୍ରା ଇତ୍ୟାଦି । ଜନଶ୍ରୁତି ରହିଛି ଅଶୋକ ସିରିଆ, ମିଶର ଓ ମେସିଡୋନିଆ (ଗ୍ରୀସ୍)କୁ ଧର୍ମପ୍ରଚାର କରିବାପାଇଁ କେତେକ ବୌଦ୍ଧଶ୍ରମଣ ପଠାଇଥିଲେ । ଚୀନ୍, ଜାପାନ, ମାଞ୍ଚୁରିଆ ଆଦି ଦେଶରେ ଏହାର ପ୍ରଭାବ ବଳବତ୍ତର ରହିଥିଲା । ଇତିହାସ ଅନୁଯାୟୀ ପ୍ରାୟ ୬୭ ଖ୍ରୀ:ରେ ଚୀନ୍ ଦେଶରେ ବୌଦ୍ଧଧର୍ମ ପ୍ରସାରିତ ହେବା ପରେ ପରେ ସେଠାରୁ ବହୁ ପରିବ୍ରାଜକ ବୁଦ୍ଧଙ୍କ ଜନ୍ମସ୍ଥାନ ଭାରତକୁ ଆସିଥିଲେ ଏବଂ ଏହି ସମୟରେ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ ସମୟରେ ବିଭିନ୍ନ ବୌଦ୍ଧ ତୀର୍ଥ ସ୍ଥଳୀ ତଥା ଅନ୍ୟାନ୍ୟ ଧାର୍ମିକ ପର୍ଯ୍ୟଟନ ସ୍ଥଳୀର ବିବରଣୀ ପ୍ରଦାନ କରିଛନ୍ତି । ବିଶେଷ ଭାବରେ ଫାହିଆନ ଓ ହୁଏନ୍ ସାଂଙ୍କ ବିବରଣୀ ଏ କ୍ଷେତ୍ରରେ ଅତ୍ୟନ୍ତ ଉପାଦେୟ ମନେହୋଇଥାଏ ।

ହୁଏନ୍ ସାଂ ଚଉଦ ବର୍ଷକାଳ ଭାରତରେ ଅବସ୍ଥାନ କାଳରେ ବହୁ ସ୍ଥାନର ପ୍ରାମାଣିକ ବିବରଣୀ ପ୍ରଦାନ କରିଛନ୍ତି । ସେ ସଂସ୍କୃତ ଓ ପାଲି ଭାଷାରେ ଗଭୀର ପାଣ୍ଡିତ୍ୟ ଅର୍ଜନ କରିଥିବାରୁ ଭାରତୀୟ ସାମାଜିକ ଜୀବନ ଓ ସଂସ୍କୃତିର ଅନ୍ତଃରୂପକୁ ଉପଲବ୍ଧି କରିପାରିଥିଲେ । ତେଣୁ ତାଙ୍କ ବିବରଣୀରେ ଭାରତୀୟ ଜୀବନ ଭୂମିକୁ ସ୍ପଷ୍ଟରୂପେ ଚିହ୍ନି ହୋଇଥାଏ । କେବଳ ସେତିକି ନୁହେଁ ସେ କାଶ୍ମୀରରେ ଦୁଇବର୍ଷ କାଳ ଅତିବାହିତ କରିବା ସମୟରେ ବିଭିନ୍ନ ଧର୍ମଶାସ୍ତ୍ର ଓ ସୂତ୍ର ଅଧ୍ୟୟନ କରିଥିଲେ । ପୁନରାୟ ଆଧୁନିକ ଜଳନ୍ଧର ସନ୍ନିକଟ ଚିନାପତିରେ ଚଉଦମାସ ଓ ଜଳନ୍ଧରରେ ଚାରିମାସ ରହି ବୌଦ୍ଧ ଶାସ୍ତ୍ରଗୁଡ଼ିକର ପୁଙ୍ଖାନୁପୁଙ୍ଖ ଅନୁଶୀଳନ କରିଥିଲେ ।

ପର୍ଯ୍ୟାୟକ୍ରମେ ହୁଏନ୍ ସାଂ ମଥୁରା, ଥାନେଶ୍ୱର, ଶ୍ରୁଘ୍ନ ଦେଶ, ଉତ୍ତର ପାଞ୍ଚାଳ ରାଜଧାନୀ ଅହିଚ୍ଛତ୍ର ପରେ ପରେ କାନ୍ୟକୁବ୍ଜ, କୌଶାମ୍ବୀ, ଅଯୋଧ୍ୟା, ଶ୍ରାବସ୍ତୀ, କପିଳବାସ୍ତୁ, କୁଶୀନଗର, ବାରାଣାସୀ, ବୈଶାଳୀ, ପାଟଳିପୁତ୍ର, ମଗଧର କୁଶାଗାରପୁର, ରାଜଗୃହ, ନାଳନ୍ଦା ଆଦି ସ୍ଥାନକୁ ଯାଇ ଭାରତ ସମ୍ପର୍କରେ ଅନେକ ତଥ୍ୟ ସଂଗ୍ରହ କରିଥିଲେ । ନାଳନ୍ଦାରେ ପ୍ରାୟ ପନ୍ଦର ମାସ କାଳ ରହି ସଂସ୍କୃତ ଭାଷା ଶିକ୍ଷାପୂର୍ବକ ବହୁଗ୍ରନ୍ଥ ଅଧ୍ୟୟନ କରିଥିଲେ । ସେ ମଧ୍ୟ ପୌଣ୍ଡ ବର୍ଦ୍ଧନ, କାମରୂପ, ତାମ୍ରଲିପ୍ତି, ଉଡ୍ରଦେଶ ବା ବର୍ତ୍ତମାନର ଓଡ଼ିଶାକୁ ଆସିଥିଲେ ।

ଶୁଣାଯାଏ କାନ୍ୟକୁବ୍ଜରୁ ସେ ଜଳନ୍ଧର ରାଜା ଉଧିତିଙ୍କ ସହିତ ଆସି ତାଙ୍କ ରାଜଧାନୀରେ ଏକମାସ ଅତିବାହିତ କରିଥିଲେ । ତାଙ୍କର ବିଭିନ୍ନ ସ୍ଥାନକୁ ଯାତ୍ରା ସମୟରେ ସେ ଯେଉଁ ବହୁ ସଂଖ୍ୟକ ମୂର୍ତ୍ତି ଓ ଧର୍ମଗ୍ରନ୍ଥ ସଂଗ୍ରହ କରିଥିଲେ, ସିନ୍ଧୁ ନଦୀ ପାରହେବା ବେଳେ କେତେକ ମୂଲ୍ୟବାନ୍ ଗ୍ରନ୍ଥ ଜଳସ୍ରୋତରେ ଭାସିଯାଇଥିଲା । ଚଉଦ ବର୍ଷ କାଳ ଭାରତ ରହଣି ସମୟରେ ହୁଏନ୍ ସାଂ ଯେଉଁ ବିବିଧ ଅନୁଭୂତି ଲାଭ କରିଥିଲେ, ତା'ର ବୃତ୍ତାନ୍ତ ତାଙ୍କର ସି-ୟୁ-କି ନାମକ ଗ୍ରନ୍ଥରେ ଲିପିବଦ୍ଧ କରିଥିଲେ । ହୁଏନ୍ ସାଂ ଚୀନ୍‌ରେ ପହଞ୍ଚିବା ପରେ ତାଙ୍କଠାରୁ ଭାରତ ସମ୍ପର୍କରେ ବହୁ ରୋଚକ ଘଟଣା ଶ୍ରବଣ କରି ଅନେକ ଚୀନ ଅଧିବାସୀ ବୌଦ୍ଧଧର୍ମ ଗ୍ରହଣପୂର୍ବକ ଭାରତର ଧର୍ମପୀଠମାନ ଦର୍ଶନ ସହିତ କିଛି ବ୍ୟକ୍ତି ଏଠାରେ ଶେଷ ପର୍ଯ୍ୟନ୍ତ ଅବସ୍ଥାନ କରି ରହି ଯାଇଥିଲେ । କେତେକ ଚୀନ ଅଧିବାସୀ ଭାରତର ସଂସ୍କୃତି ପ୍ରତି ଏତେଦୂର ଆକୃଷ୍ଟ ହୋଇଯାଇଥିଲେ ଯେ ସେମାନେ ସେମାନଙ୍କ ନାମ ପରିବର୍ତ୍ତନ କରି ଚିନ୍ତାଦେବ, ପ୍ରାଜ୍ଞକର୍ମ, ଚିତ୍ରବର୍ମା, ଚନ୍ଦ୍ରଦେବ ଆଦି ନାମ ଗ୍ରହଣ କରିଥିଲେ । ହୁଏନ୍ ସାଂଙ୍କ ଶିଷ୍ୟ ଇ-ସିଂ ଯେଉଁ ୪୩ ଜଣ ବିଶିଷ୍ଟ ଚୀନ ସନ୍ନ୍ୟାସୀଙ୍କ ନାମ ଉଲ୍ଲେଖ କରିଛନ୍ତି, ସେମାନେ ହେଲେ ହୁଏନ୍-ଚୁ, ପାଉ-ହିଁ, ଶାଂ-ତି, ସଂଘବର୍ମା, ହ୍ୟୁ-ଲୁନ୍ । ଉ-ହିଂ, ହୁଏନ୍- ତା, ଇ-ସିଂ ଇତ୍ୟାଦି । ଅନୁବାଦକ ଭାରତଚନ୍ଦ୍ର ଏହି ସନ୍ନ୍ୟାସୀମାନଙ୍କ ସୃଷ୍ଟି ଓ ଦୃଷ୍ଟି ସମ୍ପର୍କରେ ବିଶଦ ଭାବରେ ମୁଖବନ୍ଧରେ ଆଲୋଚନା କରିଛନ୍ତି । ଖ୍ରୀଷ୍ଟାୟ ୬୭ ସାଲରେ ଚୀନ୍ ଦେଶରେ ବୌଦ୍ଧଧର୍ମର ପ୍ରଚାର ଯୋଗୁଁ ଭାରତ ଓ ଚୀନ୍ ମଧ୍ୟରେ ଧର୍ମ ପ୍ରଚାର ଏବଂ ବିଦ୍ୟା ଶିକ୍ଷା ମଧ୍ୟରେ ଉଭୟ ଦେଶବାସୀଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ସ୍ଥାପନ ହୋଇଥିଲା । ଏହି ସମ୍ପର୍କ ୮ମ ଓ ୯ମ ଶତକ ପର୍ଯ୍ୟନ୍ତ ବଳବତ୍ତର ରହିଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଏଥିରେ କ୍ଷୟିଷ୍ଣୁ ଲକ୍ଷ୍ୟ କରାଯାଇଥିଲା । ଏ ସମ୍ପର୍କରେ ଲେଖକ କୁହନ୍ତି- "ବୋଧହୁଏ ଯେଉଁ ସମୟରେ ବୌଦ୍ଧଧର୍ମର ପତନ ହୋଇ ମହାପୁରୁଷ ଶଙ୍କରାଚାର୍ଯ୍ୟ ପ୍ରଭୃତିଙ୍କ ପ୍ରଚାରରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍‌ଥାନ ହେଲା, ସେହି ସମୟରେ କପିଳବାସ୍ତୁ, ନାଳନ୍ଦା ଓ ବୋଧିଗୟା ପ୍ରଭୃତି ବୌଦ୍ଧ ତୀର୍ଥମାନଙ୍କ ମହତ୍ତ୍ୱ ଊଣା ପଡ଼ିଗଲା ଏବଂ ସେହି

ସମୟରୁ ଉଭୟ ଦେଶ ମଧ୍ୟରେ ଧର୍ମର ଅସାମଞ୍ଜସ୍ୟ ହେତୁରୁ ଲୋକମାନଙ୍କର ଗମନାଗମନ ଓ ଭାବର ଆଦାନ- ପ୍ରଦାନ ଜଣା ହୋଇ ପଡ଼ିଲା । ଏହି କେତେ ଶତାବ୍ଦୀ ମଧ୍ୟରେ ଭାରତବର୍ଷରୁ ମଧ୍ୟ ଅନେକ ବୌଦ୍ଧ ସନ୍ନ୍ୟାସୀ ଓ ଧର୍ମ ପ୍ରଚାରକ ନିଶ୍ଚୟ ଚୀନ୍ ଦେଶକୁ ଯାଇଥିବେ; କିନ୍ତୁ ଦୁଃଖର କଥା, ହୁଏନ୍ ସାଂଙ୍କ ଭାରତ ଭ୍ରମଣ ବୃତ୍ତାନ୍ତ ପରି କୌଣସି ଭାରତୀୟ ପରିବ୍ରାଜକଙ୍କର ଚୀନ୍ ଭ୍ରମଣ ବୃତ୍ତାନ୍ତ ଦୃଷ୍ଟିଗୋଚର ହୋଇନାହିଁ ।" (ପୃ-୧୫)

ବ୍ରାହ୍ମଣ୍ୟଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ସେତେବେଳେ କିପରି ପ୍ରତିଦ୍ୱନ୍ଦିତା ଚାଲିଥିଲା ତା'ର ଭୂରିଭୂରି ନିଦର୍ଶନ ହୁଏନ୍ ସାଂଙ୍କ ଭ୍ରମଣ ବୃତ୍ତାନ୍ତରେ ପରିଲକ୍ଷିତ ହୋଇଥାଏ । ନିଜେ ବୌଦ୍ଧ ସନ୍ନ୍ୟାସୀ ହୋଇଥିବାରୁ ସେ ବ୍ରାହ୍ମଣ୍ୟ-ଧର୍ମାବଲମ୍ବୀମାନଙ୍କୁ ବିଧର୍ମୀ ଆଖ୍ୟା ଦେଇଛନ୍ତି । ଅବଶ୍ୟ ବ୍ରାହ୍ମଣ ଶାସ୍ତ୍ରମାନଙ୍କରେ ମଧ୍ୟ ବୌଦ୍ଧମାନଙ୍କୁ ନାସ୍ତିକ ଭାବରେ ଅଭିହିତ କରାଯାଇଛି । ମୁଖବନ୍ଧରେ ଏ ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରାଯାଇଛି ।

**ଶବ୍ଦଗତ ବିଶେଷତ୍ୱ:-** ହୁଏନ୍ ସାଂଙ୍କ ଗ୍ରନ୍ଥରେ ଦୂରତା ମାପ ପାଇଁ 'ଲି' ଶବ୍ଦ ବ୍ୟବହାର କରାଯାଇଛି । କୌଣସି ସଂସ୍କୃତ ଗ୍ରନ୍ଥରେ ଏହି 'ଲି' ଶବ୍ଦ ନ ଥିଲେହେଁ ଏହା ଚୀନ ଦେଶର ଶବ୍ଦ ଓ ଏହାକୁ ୧/୨ ମାଇଲ୍ ଧରାଯାଇଥାଏ । ସେହିପରି ଚାଂ ଶବ୍ଦ ଦ୍ୱାରା ଉଚ୍ଚତା ନିର୍ଣ୍ଣୟ ହୋଇଥିବାର ଦେଖିବାକୁ ମିଳେ । ୧ ଚାଂ ୧୦ ଫୁଟ । ଭାରତବର୍ଷରେ ଯୋଜନ ଓ କ୍ରୋଶ ଶବ୍ଦ ଦୂରତା ମାପ ପାଇଁ ବ୍ୟବହୃତ । ସଂସ୍କୃତ ଗ୍ରନ୍ଥମାନଙ୍କରେ ମଧ୍ୟ ଏହାର ବ୍ୟବହାର ରହିଛି । ସେହିପରି ହୁଏନ୍ ସାଂ ଗ୍ରନ୍ଥରେ ଭାରତର ବିଭିନ୍ନ ନଗରର ନାମ ଚୀନ ଦେଶୀୟ ଉଚ୍ଚାରଣ ଅନୁଯାୟୀ ଲେଖା ହୋଇଥିବାରୁ ନାମଗୁଡ଼ିକ ବିକୃତ ରୂପ ଧାରଣ କରିଛି । ଯେପରି ବ୍ରହ୍ମପୁରକୁ ପୁ-ଲୋ-ହି-ମୋ-ପୁ-ଲୋ, କନ୍ୟାକୁବ୍ଜକୁ କି- ଯୋ-କିଓ-ଶି-ଲୋ, ସ୍ଥାନେଶ୍ୱରକୁ ସ-ତ-ନି-ଶି-ଫୋ-ଲୋ, ମଥୁରାକୁ ମୋ-ତୁ-ଲୋ, ପୁଷ୍ପଗିରିକୁ ପୁ-ଷି-ପୋ-କି-ଲି ଇତ୍ୟାଦି ଭାବରେ ଲେଖାଯାଇଛି । ଭାରତର ବିଭିନ୍ନ ନଗର ଓ ସ୍ଥାନର ନାମ ଚୀନ ଉଚ୍ଚାରଣ ଅନୁଯାୟୀ ଲେଖାଯାଇଛି ଏବଂ ବିଭିନ୍ନ ସ୍ଥାନର ବିବରଣୀ ମଧ୍ୟ ସେହି ଚୀନ ଭାଷାରେ ସୂଚିତ କରାଯାଇଛି । ହୁଏନ୍ ସାଂଙ୍କ 'ଭାରତ- ଭ୍ରମଣ' ଗ୍ରନ୍ଥରେ ପ୍ରଦତ୍ତ ଶବ୍ଦଗୁଡ଼ିକର ଆଲୋଚନା ସ୍ୱତନ୍ତ୍ର ଭାବରେ ପରବର୍ତ୍ତୀ ସମୟରେ କରାଯିବାକୁ ଥିବାରୁ ଏଠାରେ ସେ ସମ୍ପର୍କରେ ବିଶେଷ ବିଶ୍ଳେଷଣ କରାଯାଉନାହିଁ ।

**ଗ୍ରନ୍ଥ ବିଭାଜନ କୌଶଳ:-** 'ହୁଏନ୍ ସାଂ ଓ ତାହାଙ୍କ ଭାରତ ଭ୍ରମଣ" ଗ୍ରନ୍ଥଟି ସମୁଦାୟ ପାଞ୍ଚୋଟି ପରିଚ୍ଛେଦରେ ବିଭକ୍ତ । ପ୍ରଥମ ଖଣ୍ଡ (ପରିଚ୍ଛେଦ)ରେ ହୁଏନ୍ ସାଙ୍କ ବାଲ୍ୟଜୀବନ ଓ ତୀର୍ଥଯାତ୍ରା ସମ୍ପର୍କରେ ଉଲ୍ଲେଖ ରହିଛି । ଏଥିରେ ତାଙ୍କର ଜନ୍ମ, ପରିବାର ପରିଚୟ, ଚୀନ ସମ୍ପର୍କରେ ବିଶଦ ବିବରଣୀ, ତୀର୍ଥ ପର୍ଯ୍ୟଟନ ଆଦି ଠାରୁ ପଶ୍ଚିମ ପଥରେ ଯାତ୍ରା ପର୍ଯ୍ୟନ୍ତ ଅନେକ ବିବରଣୀ ସ୍ଥାନ ପାଇଛି । ଦ୍ୱିତୀୟ ଖଣ୍ଡରେ ଓ-କି-ନି (ଯେଙ୍କି)ରୁ

କି- ଯୋ-କ୍ୟୋ-ଶି (କନୌଜ) ଯାତ୍ରା ପର୍ଯ୍ୟନ୍ତ ଗନ୍ତବ୍ୟସ୍ଥଳ ତଥା ଘଟଣାଗୁଡ଼ିକର ସବିଶେଷ ବିବରଣୀ ସ୍ଥାନ ପାଇଥିବା ସମୟରେ ତୃତୀୟ ଖଣ୍ଡରେ ଅଯୋଧାରୁ ହିରଣ୍ୟ ପର୍ବତ ଯାତ୍ରା; ଚତୁର୍ଥ ଖଣ୍ଡରେ ଚମ୍ପା ଦର୍ଶନ ଠାରୁ କାମରୂପ ନରପତିଙ୍କ ନିମନ୍ତ୍ରଣ ପର୍ଯ୍ୟନ୍ତ ବିଷୟବସ୍ତୁ ସ୍ଥାନ ପାଇଛି । ପଞ୍ଚମ ଖଣ୍ଡରେ ହୁଏନ୍ ସାଂଙ୍କ ସ୍ୱଦେଶ ପ୍ରତ୍ୟାଗମନ ସମ୍ବନ୍ଧରେ ନିର୍ଗ୍ରନ୍ଥଙ୍କର ଭବିଷ୍ୟଦ୍‌ବାଣୀଠାରୁ ଚୀନ୍‌ରେ ପ୍ରବେଶ ପର୍ଯ୍ୟନ୍ତ ଘଟଣାକୁ ସ୍ଥାନ ଦିଆଯାଇଥିବା ସମୟରେ 'ଉପସଂହାର' ପର୍ଯ୍ୟାୟରେ ତାଙ୍କର ରାଜଧାନୀରେ ପ୍ରବେଶଠାରୁ ମହାପ୍ରୟାଣ ଏବଂ ହୁଏନ୍ ସାଂଙ୍କ ଦେହାବଶେଷର ସ୍ଥାନାନ୍ତର ପର୍ଯ୍ୟନ୍ତ ଘଟଣାକୁ ଆଲୋଚନା କରାଯାଇଛି । ପରିଶିଷ୍ଟ ପର୍ଯ୍ୟାୟରେ ହୁଏନ୍ ସାଂ ତାଙ୍କ ଭାରତ ଭ୍ରମଣ ଗ୍ରନ୍ଥରେ ଆଫଗାନିସ୍ଥାନରୁ ଭାରତବର୍ଷ ପର୍ଯ୍ୟନ୍ତ ଭ୍ରମଣ ସମୟରେ ଯେଉଁ ସ୍ଥାନଗୁଡ଼ିକ ସମ୍ପର୍କରେ ସୂଚନା ଦେଇଛନ୍ତି ତା'ର ବିବରଣୀ ଭୌଗୋଳିକ ଅବସ୍ଥିତି ସହିତ ସୂଚାଇ ଦିଆଯାଇଛି । ଏହାଦ୍ୱାରା ପାଠକ ଚୀନା ଭାଷାରେ ବ୍ୟବହୃତ ସେହି ସେହି ସ୍ଥାନଗୁଡ଼ିକର ନାମକୁ ସହଜରେ ବୁଝିପାରିବାକୁ ସମର୍ଥ ହୋଇପାରିବେ ।

**୧ମ ଖଣ୍ଡ ଜନ୍ମ- ଜୀବନୀ :-** ଏହି ପର୍ଯ୍ୟାୟରେ ଗ୍ରନ୍ଥରେ ସୂଚନା ଦିଆଯାଇ କୁହାଯାଇଛି ଯେ, ହୁଏନ୍ ସାଂ ଚୀନ୍ ଦେଶର ଚୀନ୍-ଲୁ ନାମକ ପ୍ରଦେଶରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ହୁଇ । ସେ ବିଭିନ୍ନ ବିଦ୍ୟାରେ ନିପୁଣ ଥିଲେ ଏବଂ ଅତ୍ୟନ୍ତ ଶାନ୍ତ ସ୍ୱଭାବର ଥିଲେ । ତତ୍‌କାଳୀନ ଚୀନ ସମ୍ରାଟ୍ ତାଙ୍କୁ ଉଚ୍ଚ ପଦରେ ଅଧିଷ୍ଠିତ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ ହେଁ ଶାରୀରିକ ଅସୁସ୍ଥତାବଶତଃ ସେ ତାହା ବିନୟର ସହିତ ପ୍ରତ୍ୟାଖ୍ୟାନ କରିଥିଲେ । ତାଙ୍କର ଚାରି ପୁତ୍ର ମଧ୍ୟରୁ ହୁଏନ୍ ସାଂ ଥିଲେ ସର୍ବ କନିଷ୍ଠ । ବାଲ୍ୟକାଳରୁ ହୁଏନ୍ ସାଂଙ୍କ ପ୍ରତିଭା ଓ ଗମ୍ଭୀର ପ୍ରକୃତି ବେଶ୍ ବାରି ହୋଇପଡୁଥିଲା । ହୁଏନ୍ ସାଂଙ୍କ ବ୍ୟବହାରରୁ ପିତା ହୁଇ ଜାଣି ପାରିଥିଲେ ତାଙ୍କ ପୁତ୍ର ଭବିଷ୍ୟତରେ ଜଣେ ମହାନ୍ ବ୍ୟକ୍ତି ହେବେ । ବାଲ୍ୟକାଳରୁ ବିଭିନ୍ନ ଧର୍ମଗ୍ରନ୍ଥ ଅଧ୍ୟୟନରେ ସେ ମନୋନିବେଶ କରିଥିଲେ । ରୁଚିପୂର୍ଣ୍ଣ ଗ୍ରନ୍ଥ ଅଧ୍ୟୟନ ପ୍ରତି ତାଙ୍କର ବିଶେଷ ଆଗ୍ରହ ରହିଥିଲା । ଖଳ ଓ ଚରିତ୍ରହୀନ ବ୍ୟକ୍ତିଙ୍କ ଠାରୁ ସେ ନିଜକୁ ସର୍ବଦା ଦୂରେଇ ରଖୁଥିଲେ । ଅଯଥାରେ କୌଣସି ସମୟ ନଷ୍ଟ ନକରି ଘରେ ବସି ଉଚ୍ଚମାନର ଗ୍ରନ୍ଥ ଅଧ୍ୟୟନ କରିବାକୁ ସେ ଉଚିତ୍ ମନେ କରୁଥିଲେ ।

**ଲୟାଂରେ ଅବସ୍ଥାନ :-** ହୁଏନ୍ ସାଂଙ୍କ ପରିବାର ଏକ ଧାର୍ମିକ ପରିବାର ଥିଲେ । ତାଙ୍କର ଦ୍ୱିତୀୟ ଭାଇ ଚ୍ୟାଂସି ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣ କରି ପୂର୍ବାଞ୍ଚଳର ରାଜଧାନୀ ଲୟାଂସ୍ଥିତ ସିଂଟୁ ମଠରେ ଅବସ୍ଥାନ କରୁଥିଲେ । ଧର୍ମଶାସ୍ତ୍ର ପ୍ରତି ହୁଏନ୍ ସାଂଙ୍କର ଶ୍ରଦ୍ଧାଭାବ ଲକ୍ଷ୍ୟ କରି ସେ ତାଙ୍କୁ ସେଠାକୁ ନେଇ ବୌଦ୍ଧଧର୍ମର ଗୂଢ଼ ତତ୍ତ୍ୱ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରିଥିଲେ । ଲୟାଂ ମଠରେ ଅବସ୍ଥାନ କାଳରେ ତତ୍‌କାଳୀନ ରାଜାଙ୍କ ଆଦେଶରେ ସେଠାରେ ଚଉଦ

ଜଣ ଆଚାର୍ଯ୍ୟ ନିଯୁକ୍ତ ହେବାର ସ୍ଥିର ହୋଇଥିଲା ଓ ଏଥିପାଇଁ ବହୁ ପ୍ରାର୍ଥୀ ରହିଥିଲେ । ହୁଏନ୍ ସାଂ ଅଳ୍ପ ବୟସ୍କ ହୋଇଥିବାରୁ ପ୍ରାର୍ଥୀ ହୋଇନଥିଲେ । ନିର୍ବାଚନ ଦିନ ଭାରପ୍ରାପ୍ତ ଉଚ୍ଚ କର୍ମଚାରୀ ଚିଂ-ସ୍ୟାନ୍-କୋ ସେଠାରେ ହୁଏନ୍ ସାଂଙ୍କୁ ଦେଖି ତାଙ୍କ ପ୍ରତିଭା ବିଷୟରେ ଜାଣିପାରିଥିଲେ ଏବଂ ସେ କାହିଁକି ଶିଷ୍ୟ ହେବାକୁ ଚାହିଁଛନ୍ତିର ଉତ୍ତର ଦେଇ ହୁଏନ୍ ସାଂ କହିଥିଲେ- "ମୋର ଏକମାତ୍ର ଉଦ୍ଦେଶ୍ୟ ଯେ, ଆମ୍ଭେମାନେ ଯେଉଁ ଧର୍ମ ଗ୍ରହଣ କରିଅଛୁଁ ତାହାର ଆଲୋକ ଚତୁର୍ଦ୍ଦିଗରେ ବିସ୍ତାର କରିବା ।" (ପୃ-୪) ତାଙ୍କର ଏହି ଉତ୍ତରରେ ସ୍ୟାନ୍- କୋ ବିଶେଷ ଖୁସି ହୋଇ ଅଳ୍ପ ବୟସ୍କ ହୋଇଥିଲେ ମଧ୍ୟ ତାଙ୍କୁ ଆଚାର୍ଯ୍ୟ ପଦରେ ବରଣ କରିଥିଲେ । ତତ୍ପରେ ଅନ୍ୟ କର୍ମଚାରୀମାନଙ୍କ ନିକଟକୁ ନେଇ କହିଥିଲେ- "କୌଣସି ଲୋକ ନିଜ କଥା କହିବା ସହଜ; କିନ୍ତୁ ସର୍ବଗୁଣସଂପନ୍ନତା ଓ ସାହସ ସମସ୍ତଙ୍କ ପକ୍ଷରେ ସୁଲଭ ନୁହେଁ । ଆପଣମାନେ ଯଦି ଏହି ଯୁବକକୁ ଆଚାର୍ଯ୍ୟ ପଦରେ ବରଣ କରନ୍ତି, ତାହାହେଲେ ସେ ନିଃସନ୍ଦେହରେ ଶାକ୍ୟମୁନିଙ୍କ ଧର୍ମ ପ୍ରଚାର କରିବାରେ ପ୍ରସିଦ୍ଧି ଲାଭ କରିବେ । ମୋର କେବଳ ଭୟ ହେଉଛି, ଆପଣମାନଙ୍କ ମଧ୍ୟରୁ କେହି ବା ମୁଁ ନିଜେ ସେଦିନ ଦେଖିବା ପାଇଁ ବଞ୍ଚି ନଥିବା- ଯେଉଁଦିନ ଆକାଶରେ ଭାସମାନ ମେଘମାଳା ବୁଦ୍ଧ ଦେବଙ୍କ ଗୂଢ଼ନୀତିର ସୁମଧୁର ଶିଶିର ବିନ୍ଦୁ ବର୍ଷଣ କରିବ; କିନ୍ତୁ ତଥାପି ମୁଁ ମନେ କରେ ଏହି ସମ୍ମାନାସ୍ପଦ ଯୁବକର ଉନ୍ନତ ଚରିତ୍ର ସର୍ବସମକ୍ଷରେ ପ୍ରତିଭାତ ହୋଇଉଠିବ ।" (ପୃ-୫) ଏହାପରେ ହୁଏନ୍ ସାଂ ସନ୍ନ୍ୟାସ ଧର୍ମ ଗ୍ରହଣ କରି ସେଠାରେ ଅବସ୍ଥାନ କରିଥିଲେ । ସେହି ମଠରେ ରହୁଥିବା କିଂ ନାମକ ଧର୍ମାଧ୍ୟକ୍ଷଙ୍କ ମୁଖରୁ ନିର୍ବାଣ ସୂତ୍ର ଶୁଣି ତାହା ଅଧ୍ୟୟନ କରିଥିଲେ ଏବଂ ଆଚାର୍ଯ୍ୟ ଶ୍ରେଷ୍ଠ ୟେନ୍‌ଙ୍କ ମହାଯାନ ସୂତ୍ର ନାମକ ଗ୍ରନ୍ଥ ଅଧ୍ୟୟନ କରିଥିଲେ । କୌଣସି ଗ୍ରନ୍ଥ ଥରେ ଅଧ୍ୟୟନ ବା ଶ୍ରବଣରେ ତାହା ସେ ବୁଝି ପାରୁଥିଲେ । ସେ ଅସମ୍ଭବ ସ୍ମରଣ ଶକ୍ତିର ଅଧିକାରୀ ଥିଲେ । ବିଦ୍ୱାନମଣ୍ଡଳୀଙ୍କ ଆଦେଶ କ୍ରମେ ବେଦିକା ଉପରେ ଉପବେଶନପୂର୍ବକ ଧର୍ମର ଗୂଢ଼ ନୀତିସମୂହର ଅତ୍ୟନ୍ତ ସୂକ୍ଷ୍ମ ଓ ବିଶଦ ବ୍ୟାଖ୍ୟା କରୁଥିଲେ ।

ଚୀନରେ ଅରାଜକତାଃ- ସୁଇ ବଂଶର ଉଚ୍ଛେଦ ପରେ ଚୀନ ସଂପୂର୍ଣ୍ଣ ଅରାଜକ ହୋଇପଡ଼ିଲା । କିଛି ରାଜ କର୍ମଚାରୀ ଓ ଧର୍ମଯାଜକଙ୍କର ମୃତ୍ୟୁ ହେବା ଯୋଗୁଁ ହୁଏନ୍ ସାଂ ଜ୍ୟେଷ୍ଠଭ୍ରାତାଙ୍କୁ ସେହି ସ୍ଥାନ ତ୍ୟାଗ କରି ଟ୍ୟାଂର ରାଜପୁତ୍ର ସନ୍-ୟାଂର ଲୋକଙ୍କୁ ଯୁଦ୍ଧରେ ପରାସ୍ତ କରି ଚାଂ ଘାନରେ ସ୍ୱାଧୀକାର ସ୍ଥାପନ କରିଥିବାରୁ ସେଠାକୁ ଯିବାକୁ କହିଲେ ଏବଂ ଭାଇ ତାଙ୍କ ପ୍ରସ୍ତାବରେ ଏକମତ ହେବାରୁ ସେଠାକୁ ସାଙ୍ଗ ହୋଇଗଲେ । ଏହା ୬୧୮ ଖ୍ରୀଃ ସମୟର ଘଟଣା । ସେଠାରେ ସେ ଅନୁଭବ କଲେ ଲୋକେ କନଫୁସିଅସ୍ ଓ ବୁଦ୍ଧଙ୍କ ଧର୍ମନୀତିମାନ ଭୁଲିଯାଇଛନ୍ତି । ସୈନ୍ୟମାନେ ଅସ୍ତ୍ରଶସ୍ତ୍ରରେ ଭୂଷିତ ହୋଇ ପ୍ରହରା ଦେଉଥିଲେ ।

ଧର୍ମ ସମ୍ମିଳନୀର ଅଧିବେଶନ ହେଉନଥିଲା । ଏପରି ଅବସ୍ଥାରେ ସେଠାରେ ଧର୍ମକାର୍ଯ୍ୟ ସଂପାଦାନ କରିବା ଅସମ୍ଭବ ମନେକରି ଜ୍ୟେଷ୍ଠ ଭ୍ରାତାଙ୍କ ସହିତ ଶୁ- ପ୍ରଦେଶର ହାଂ-ଚୁ ନାମକ ସ୍ଥାନକୁ ପଳାଇଲେ । ସେଠାରେ କଂ ଓ କିଂ ନାମକ ଦୁଇଜଣ ପ୍ରସିଦ୍ଧ ପଣ୍ଡିତଙ୍କ ସହିତ ସାକ୍ଷାତ୍ ହେବାରୁ ମାସାଧିକ କାଳ ରହି ଧର୍ମୋପଦେଶ ପ୍ରାପ୍ତପୂର୍ବକ ସେଠାରୁ ସିଂ-ଟୁ ନଗରକୁ ଗଲେ । ସେଠାରେ ବହୁ ପଣ୍ଡିତ ବାସ କରୁଥିବାରୁ ଏକ ସମ୍ମିଳନୀ ସ୍ଥାପନ କଲେ । କିଂ-ଟୁ ଓ ସାଇସିନ୍ ସେଠାରେ ଅବସ୍ଥାନ କରୁଥିଲେ । ସେମାନେ ସାଇସିନ୍‌ଙ୍କ ନିକଟରୁ ମହାଯାନ ସଂପରିଗ୍ରହ ଶାସ୍ତ୍ର (ଶି-ଲୁନ୍), ଅଭିଧର୍ମ ଶାସ୍ତ୍ର (ପି.ଟ୍ୟାନ୍) ଏବଂ ଧର୍ମାଚାର୍ଯ୍ୟ ଚିନ୍‌ଙ୍କ ଠାରୁ କାତ୍ୟାୟନଙ୍କ ଗ୍ରନ୍ଥର ବ୍ୟାଖ୍ୟା ଶୁଣିଲେ । ମାତ୍ର ୨/୩ ବର୍ଷ ମଧ୍ୟରେ ହୁଏନ୍ ସାଂ ବିଭିନ୍ନ ଶାସ୍ତ୍ରରେ ଧୂରୀଣ ହୋଇ ଉଠିଥିଲେ ।

**ଚୀନରେ ଦୁର୍ଭିକ୍ଷ ଓ ଜ୍ଞାନାର୍ଜନ ପାଇଁ ଯାତ୍ରା:-** ଏହି ସମୟରେ ଚୀନ୍‌ରେ ଦୁର୍ଭିକ୍ଷ ସହିତ ଅରାଜକତା ଦେଶକୁ ବିଶୃଙ୍ଖଳିତ କରିଦେଲା । ସେତେବେଳେ ଦୁଇ ଭାଇ ଶିଂ-ଟୁର ହୁଂ-ହୁଇ ମଠରେ ଅବସ୍ଥାନ କରୁଥିଲେ । ହୁଏନ୍ ସାଂଙ୍କ ଶାସ୍ତ୍ର ବ୍ୟାଖ୍ୟାନ ଶୁଣିବା ନିମିତ୍ତ ବହୁ ଦୂରରୁ ପଣ୍ଡିତମାନେ ଆସୁଥିଲେ । ଶୁ ପ୍ରଦେଶର ଅଧିବାସୀ ଓ ସାନ୍-କୁଂ ପ୍ରଦେଶର ଶାସନକର୍ତ୍ତା ତାଙ୍କୁ ସମ୍ମାନ କରୁଥିଲେ । ଲୁପ୍ତ ରତ୍ନୋଦ୍ଧାର ଓ ଧର୍ମନୀତିର ପୁନଃପ୍ରତିଷ୍ଠା ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ହୁଏନ୍ ସାଂଙ୍କୁ କୋଡ଼ିଏ ବର୍ଷ ବୟସ ପର୍ଯ୍ୟନ୍ତ ଶିଂ-ଟୁ ମଠରେ ରହିଥିଲେ । ଏହି ସମୟରେ ସେ 'ବିନୟ' ନାମକ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ନିଜର କିଛି ସନ୍ଦେହ ମୋଚନ ଉଦ୍ଦେଶ୍ୟରେ ସେ ଏକ ବାଣିଜ୍ୟ ପୋତରେ ଯାତ୍ରା କରି ହ୍ୟାଂ-ଚୋ ସ୍ଥିତ ଟିନ୍-ହାଂ ନାମକ ମଠରେ ପହଞ୍ଚିଥିଲେ । ମଠର ଅଧକ୍ଷମାନେ ତାଙ୍କ ନାମ ପୂର୍ବରୁ ଶୁଣିଥିବାରୁ ତାଙ୍କୁ ସ୍ୱାଗତ କରିଥିଲେ । ସେଠାରେ ସେ ସେମାନଙ୍କ ସମ୍ମୁଖରେ ମହାଯାନ ସଂପରିଗ୍ରହ ଓ ଅଭିଧର୍ମ୍ମ ଶାସ୍ତ୍ରର ବ୍ୟାଖ୍ୟାକରି ସମସ୍ତଙ୍କୁ ଚମତ୍କୃତ କରି ଦେଇଥିଲେ । ଏପରିକି ହନ୍‌ୟାଂର ରାଜା, ପାରିଷଦ, ବହୁ ଆଚାର୍ଯ୍ୟ ଓ ଶ୍ରୋତା ତାଙ୍କ ଶାସ୍ତ୍ର ବ୍ୟାଖ୍ୟାନରେ ସଂପୂର୍ଣ୍ଣ ଅଭିଭୂତ ହୋଇ ପଡ଼ିଥିଲେ । ରାଜା ତାଙ୍କୁ ଅନେକ ଉପହାର ଦେଇଥିଲେ ହେଁ ସେ ବିନୟର ସହିତ ତାହା ପ୍ରତ୍ୟାଖ୍ୟାନ କରିଥିଲେ । ଅଧିକ ଜ୍ଞାନାର୍ଜନ ନିମିତ୍ତ ସେ ଉତ୍ତରାଞ୍ଚଳ ଯାତ୍ରା କରି ସାଂ-ଚୋ ନାମକ ସ୍ଥାନରେ ହିଉ ନାମକ ଧର୍ମାଧକ୍ଷଙ୍କ ନିକଟରୁ ନିଜ ମନରେ ଥିବା କିଛି ସନ୍ଦେହ ମୋଚନ କରିବା ପରେ ଚୁ- ଚୋ ନାମକ ସ୍ଥାନକୁ ଯାଇ ସେଠାର ଧର୍ମାଧକ୍ଷ ଶିନ୍‌ଙ୍କ ଠାରୁ ସତ୍ୟସିଦ୍ଧ ବ୍ୟାକରଣ ଶାସ୍ତ୍ର ଅଧ୍ୟୟନ କରିଥିଲେ । ତତ୍ପରେ ଚାଂ- ଆନ୍ ପ୍ରଦେଶର ମହାବୋଧି (ଟା-ହିଓ) ମଠରେ ଅବସ୍ଥାନ କରି ୟୋ ନାମକ ଆଚାର୍ଯ୍ୟଙ୍କ ଠାରୁ କୋଷଶାସ୍ତ୍ର ଅଧ୍ୟୟନ କରିଥିଲେ ।

ଏହି ସମୟରେ ଚାଂ- ଆନ୍‌ରେ ଶାଂ ଓ ପିନ୍ ନାମରେ ଦୁଇଜଣ ପ୍ରସିଦ୍ଧ ବୌଦ୍ଧାଚାର୍ଯ୍ୟ ଅତ୍ୟନ୍ତ ବିଖ୍ୟାତ ଥିଲେ । ସେମାନଙ୍କର ଅନେକ ଶିଷ୍ୟ ଥିଲେ । ସେମାନେ ବୌଦ୍ଧଧର୍ମର ଉଭୟ ଯାନ ଓ ତିନି ପ୍ରକରଣର ଗବେଷଣା ଅନୁଶୀଳନ କରିଥିଲେ । ହୁଏନ୍ ସାଂ ତାଙ୍କ ନିକଟରୁ ଶାସ୍ତ୍ର ବ୍ୟାଖ୍ୟାନ ଶୁଣି ନିଜ ମନରେ ରହିଥିବା କିଛି ସନ୍ଦେହ ମୋଚନ କରିଥିଲେ । ହୁଏନ୍ ସାଂଙ୍କ ବୁଦ୍ଧି, ପାଣ୍ଡିତ୍ୟ ଓ ବ୍ୟବହାରରେ ମୁଗ୍ଧ ହୋଇ ସେହି ଦୁଇଜଣ ଆଚାର୍ଯ୍ୟ ଗଦ୍ ଗଦ କଣ୍ଠରେ କହିଥିଲେ- "ବତ୍ସ, ତୁମ୍ଭେ ଦିନକରେ ବହୁ ଦୂରଗାମୀ ଶାକ୍ୟ-ଧର୍ମ-ଦୂତ ପଦବାଚ୍ୟ ହୋଇଅଛ ଏବଂ ପୃଥିବୀରେ ଜ୍ଞାନ-ସୂର୍ଯ୍ୟର ବିମଳ କିରଣ ବିକିରଣ କରିବା ସକାଶେ ଅବତୀର୍ଣ୍ଣ ହୋଇଅଛ । ଆମ୍ଭେମାନେ ବର୍ତ୍ତମାନ ବାର୍ଦ୍ଧକ୍ୟରେ ଉପସ୍ଥିତ ହୋଇଅଛୁଁ । ଦୁଃଖର ବିଷୟ, ସେଦିନ ଦେଖିବା ଆମ୍ଭମାନଙ୍କ ଭାଗ୍ୟରେ ନାହିଁ ।" (ପୃ-୧୩) ହୁଏନ୍ ସାଂ ଯୁଆଡ଼େ ଯାଉଥିଲେ ତାଙ୍କର ସୁନ୍ଦର ଓ ସଚ୍ଚୋଟ ବ୍ୟବହାର ନିମିତ୍ତ ସମସ୍ତେ ଆଦର କରୁଥିଲେ ଏବଂ ତାଙ୍କ ଅଗାଧଜ୍ଞାନର ପ୍ରଶଂସା କରୁଥିଲେ ।

**ପଶ୍ଚିମ ଯାତ୍ରାଃ-** ହୁଏନ୍ ସାଂ ଯେଉଁଠାରେ ପ୍ରସିଦ୍ଧ ଧର୍ମାଚାର୍ଯ୍ୟଙ୍କ ସମ୍ପର୍କରେ ଶୁଣୁଥିଲେ, ସେଠାକୁ ଯାଇ ସେମାନଙ୍କର ବ୍ୟାଖ୍ୟା ମନୋଯୋଗ ପୂର୍ବକ ଶ୍ରବଣ କରୁଥିଲେ । ତାଙ୍କର ଧାରଣା ହେଲା ଆଚାର୍ଯ୍ୟ ଓ ତାଙ୍କର ଶିଷ୍ୟଗଣ ନିଜ ନିଜ ସଂପ୍ରଦାୟ ପ୍ରତିପାଦିତ ନୀତି କେବଳ ଅନୁସରଣ କରୁଅଛନ୍ତି । ଭିନ୍ନ ସଂପ୍ରଦାୟର ନୀତି ଓ ଧର୍ମ ଗ୍ରନ୍ଥରେ ସେ ଅନ୍ୟ ପ୍ରକାର ପାର୍ଥକ୍ୟ ଅନୁଭବ କରିବାରୁ କେଉଁ ଗ୍ରନ୍ଥ ପ୍ରକୃତରେ ଭ୍ରମ-ପ୍ରମାଦ ଶୂନ୍ୟ ତାହା ଜାଣିବାକୁ ପଶ୍ଚିମ ଭୂଖଣ୍ଡ ଯାତ୍ରା କରିବାକୁ ମନସ୍ଥ କଲେ । ଶି-ସି-ତି-ଲୁନ୍ (ସପ୍ତଦଶ ଭୂମିଶାସ୍ତ୍ର) ଗ୍ରନ୍ଥର ଅନେକ ଅଂଶ ତାଙ୍କର ସନ୍ଦେହ ଥିବାରୁ ତାହାକୁ ସେ ସବୁସ୍ଥାନକୁ ସଙ୍ଗରେ ନେଉଥିଲେ । ଏହି ଗ୍ରନ୍ଥ ବର୍ତ୍ତମାନ ୟୁ-କ୍ୟା-ସେ-ତି-ଲୁନ୍ (ଯୋଗାଚାର୍ଯ୍ୟ ଭୂମିଶାସ୍ତ୍ର) ନାମରେ ଅଭିହିତ । ପଶ୍ଚିମ ଭୂଖଣ୍ଡ ଯାତ୍ରା ନିମିତ୍ତ ସମ୍ରାଟଙ୍କ ଅନୁମତି ଲୋଡ଼ିଥିଲେ ହେଁ, ତାଙ୍କ ଦେଶରେ ବିଦେଶ ଯାତ୍ରା ନିଷେଧାଜ୍ଞା ଥିବାରୁ ସେ ପ୍ରସ୍ତାବରେ ରାଜି ହୋଇନଥିଲେ । ପୁଣି ପଶ୍ଚିମ ଭୂଖଣ୍ଡ ଗତିପଥ ଅତ୍ୟନ୍ତ ଦୁର୍ଗମ ଓ ବିପଦସଙ୍କୁଳ । ଏହା ସତ୍ତ୍ୱେ ସେ ନିଜ ସଙ୍କଳ୍ପରେ ଦୃଢ଼ଥିବାରୁ ପଶ୍ଚିମ ଭୂଖଣ୍ଡକୁ ଯାତ୍ରା ନିମିତ୍ତ ପ୍ରସ୍ତୁତ ହୋଇଥିଲେ ।

**ମାତାଙ୍କ ସ୍ୱପ୍ନଃ-** ଅଧିକାଂଶ ମହାପୁରୁଷଙ୍କ ଜନ୍ମ ସମୟରେ ଯେପରି ସ୍ୱପ୍ନ ବୃତ୍ତାନ୍ତର ଅବତାରଣା କରଯାଇଥାଏ, ହୁଏନ୍ ସାଂଙ୍କ ଜନ୍ମ ପ୍ରସଙ୍ଗରେ ସେହିପରି ଏକ ଜନଶ୍ରୁତି ପ୍ରଚଳିତ ରହିଛି । ବୁଦ୍ଧଦେବଙ୍କ ଜନ୍ମ ପୂର୍ବରୁ ତାଙ୍କ ମାତା ମଧ ସେହିପରି ସ୍ୱପ୍ନଟିଏ ଦେଖିଥିଲେ । ହୁଏନ୍‌ସାଂଙ୍କ ଜନ୍ମ ଦିବସରେ ତାଙ୍କ ଜନନୀ ଗୋଟିଏ ସ୍ୱପ୍ନ ଦେଖିଥିଲେ ଯେ, ପୁତ୍ର ଶୁକ୍ଳାମ୍ବର ଧାରଣ କରି ପଶ୍ଚିମ ଭୂଖଣ୍ଡକୁ ଚାଲିଯାଉଛି । ୬୩୦ ଖ୍ରୀ:ରେ ସେ ଯାତ୍ରା ପାଇଁ ପ୍ରସ୍ତୁତ ହେଲେ । ଦିନେ ରାତିରେ ସେ ଅଦ୍ଭୁତ ସ୍ୱପ୍ନ ଦେଖିଲେ, ସମୁଦ୍ର ମଧ୍ୟସ୍ଥ ସୁମେରୁ ପର୍ବତାରୋହଣ

ପାଇଁ ପ୍ରସ୍ତୁତ ହେବା ସମୟରେ ଉତ୍ତାଳ ତରଙ୍ଗମାଳା ଭୟଙ୍କର ଗର୍ଜନରେ ପର୍ବତକୁ ବେଷ୍ଟନ କରିବାରୁ ସେ ଭୟଭୀତ ନହୋଇ ତରଙ୍ଗମାଳାରେ ପ୍ରବେଶ ମାତ୍ରେ ସମୁଦ୍ର ମଧ୍ୟରୁ ଏକ ପ୍ରସ୍ତର କମଳ ଉଦ୍ଭୁତ ହେଲା । ତା' ଉପରେ ପାଦ ଥୋଇବା ମାତ୍ରେ ତାହା ସଙ୍ଗେ ସଙ୍ଗେ ଅପସୃତ ହୋଇଗଲା । ପର ମୁହୂର୍ତ୍ତରେ ସେ ନିଜକୁ ପର୍ବତର ଶୀର୍ଷ ଦେଶରେ ଆବିଷ୍କାର କଲେ । ଚତୁର୍ଦ୍ଦିଗରେ ଦିଗ୍‌ବଳୟ ଭିନ୍ନ ଅନ୍ୟ କିଛି ଦେଖିପାରିଲେ ନାହିଁ । ତତ୍ପରେ ତାଙ୍କର ନିଦ୍ରାଭଙ୍ଗ ହେଲା । ସେହି ସ୍ୱପ୍ନ ତାଙ୍କୁ ପ୍ରେରଣା ଦେଇଥିଲା ପଶ୍ଚିମ ଭୂଖଣ୍ଡକୁ ଯାତ୍ରା ପାଇଁ ।

**ପରିବ୍ରାଜକ ଜୀବନ-** ୨୬ ବର୍ଷ ବୟସରେ ଯାତ୍ରା ଉଦ୍ଦେଶ୍ୟରେ ସେ ବହିର୍ଗତ ହେଲେ । ଏହିଠାରୁ ଆରମ୍ଭ ହେଲା ହୁଏନ୍ ସାଂଙ୍କର ପରିବ୍ରାଜକ ଜୀବନ । ହିଓ- ଟା ନାମକ ଜଣେ ଆଚାର୍ଯ୍ୟଙ୍କ ସହିତ ସେ ଶିଂ-ଚୋ ପର୍ଯ୍ୟନ୍ତ ଆସିଲେ । ତତ୍ପରେ ଅନ୍ୟ ଜଣେ ଆଚାର୍ଯ୍ୟଙ୍କ ସହିତ ଲାଂ-ଚୋ ପର୍ଯ୍ୟନ୍ତ ଯାଇଥିଲେ । ସେଠାରୁ ଜଣେ ଅଶ୍ୱାରୋହୀଙ୍କ ସହିତ ଲିୟାଂ-ଚୋକୁ ଗଲେ । ସେଠାରେ ମାସାଧିକ କାଳ ଅବସ୍ଥାନ କରିଥିବା ସମୟରେ ଧର୍ମଯାଜକମାନଙ୍କର ଅନୁରୋଧ କ୍ରମେ ନିର୍ବାଣ ସୂତ୍ର, ମହାଯାନ, ସଂପରିଗ୍ରହ ଆଦି ବ୍ୟାଖ୍ୟା କରିଥିଲେ । ତାଙ୍କର ବ୍ୟାଖ୍ୟା ଶୁଣିବା ନିମିତ୍ତ ବହୁ ସଂଖ୍ୟାରେ ଶ୍ରୋତା ଉପସ୍ଥିତ ହେଉଥିଲେ । ସେ ପଶ୍ଚିମ ଦିଗକୁ ଯାତ୍ରା କରିବାକୁ ନିଷ୍ପତ୍ତି ନେଇଥିବା ଜାଣି ଲିୟାଂ-ଚୋର ଶାସନ କର୍ତ୍ତା ଲିଂ ତାଙ୍କୁ ରାଜାଙ୍କ ନିଷେଧାଜ୍ଞା ବିଷୟ ସ୍ମରଣ କରାଇଦେବା ସଙ୍ଗେ ସଙ୍ଗେ ସେପରି କାର୍ଯ୍ୟରୁ ନିବୃତ୍ତ ରହିବାକୁ କହିଲେ । ସେଠାରେ ହୁଇ-ଉଇ ନାମରେ ଜଣେ ପ୍ରସିଦ୍ଧ ଧର୍ମାଚାର୍ଯ୍ୟ ବାସ କରୁଥିଲେ ଓ ସେ ତାଙ୍କର ଦୁଇଜଣ ଶିଷ୍ୟଙ୍କ ସମଭିବ୍ୟାହାରରେ ତାଙ୍କ ଗନ୍ତବ୍ୟ ପଥରେ ଗୋପନରେ ତାଙ୍କୁ ଛାଡ଼ି ଦେଇ ଆସିଲେ । ହୁଏନ୍ ସାଂ ଦିବସ କାଳରେ ଲୁଚି ରହି କେବଳ ରାତ୍ର ସମୟରେ ଯାତ୍ରା କରୁଥିଲେ ।

କିଛିଦିନ ଯାତ୍ରାପରେ ସେ କ୍ୱା-ଚୋରେ ପହଞ୍ଚିଲେ । ତାଙ୍କ ଆଗମନ ବିଷୟ ଶୁଣି ସେଠାକାର ଶାସନକର୍ତ୍ତା ଓ-ଟା-କି-ଉ ଖୁସି ହୋଇ ପ୍ରଚୁର ପରିମାଣରେ ଖାଦ୍ୟ ପଠାଇଲେ । ହୁଏନ୍ ସାଂ ଏଠାରୁ ପଶ୍ଚିମ ଦିଗକୁ ଯାତ୍ରା ଅତ୍ୟନ୍ତ କଠିନ ବୋଲି ଲୋକମାନଙ୍କ ଠାରୁ ଶୁଣିବାକୁ ପାଇଲେ । ପୁଣି ଗୁପ୍ତଚରମାନଙ୍କଠାରୁ ଜାଣିବାକୁ ପାଇଲେ ଯେ ସେ ସି-ଫାନ (ତିବ୍ବତ) ରାଜ୍ୟ ମଧ୍ୟକୁ ପ୍ରବେଶ କରୁଥିବା ଶୁଣି ସମସ୍ତ ପ୍ରଦେଶର ଶାସନକର୍ତ୍ତାମାନେ ତାଙ୍କୁ ଅବରୁଦ୍ଧ କରିବାକୁ ଆଦିଷ୍ଟ ହୋଇଛନ୍ତି । ଲି-ଚାଂ ପ୍ରଦେଶର ଶାସନକର୍ତ୍ତା ଜଣେ ଧର୍ମପରାୟଣ ବ୍ୟକ୍ତି ଥିଲେ । ସେ ହୁଏନ୍ ସାଂଙ୍କର ପ୍ରକୃତ ସାଧୁ ଉଦ୍ଦେଶ୍ୟ ସମ୍ପର୍କରେ ଅବହିତ ହେବାପରେ ତାଙ୍କ ନିକଟକୁ ରାଜାଙ୍କ ଦ୍ୱାରା ପଠାଯାଇଥିବା ଆଦେଶ ପତ୍ର ନଷ୍ଟ କରି ତାଙ୍କୁ ଯିବାକୁ ଅନୁମତି ଦେଇଥିଲେ । ତାଙ୍କ ସହିତ ଯେଉଁ ଦୁଇଜଣ ଶିଷ୍ୟ ଯାଇଥିଲେ ତନ୍ମଧ୍ୟରୁ ଟାଉ-ଚିଂ ଅଧାବାଟରୁ ଫେରିଥିଲେ ଓ ହୁଇ-ଲିନ୍ ନାମକ ଶିଷ୍ୟର ସୁଦୀର୍ଘ ପଥ ଅତିକ୍ରମ କରିବାର

ଅସାମର୍ଥତା ଦେଖି ସେଠାରୁ ତାଙ୍କୁ ଗୃହକୁ ଫେରିବାର ଅନୁମତି ଦେଇଥିଲେ । ଗୋଟିଏ ଅଶ୍ୱ ସଂଗ୍ରହ କରି ସେ ନିଜର ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ଯେଉଁ ମନ୍ଦିରରେ ସେ ଅବସ୍ଥାନ କରୁଥିଲେ ଧର୍ମ ନାମରେ ଜଣେ ବିଦେଶୀ ଆଚାର୍ଯ୍ୟ ମଧ୍ୟ ସେଠାରେ ଅବସ୍ଥାନ କରୁଥିଲେ । ସେ ସ୍ୱପ୍ନରେ ଦେଖିଲେ ହୁଏନ୍ ସାଂ ପଶ୍ଚିମ ଭୂଖଣ୍ଡକୁ ଯାଉଛନ୍ତି । ସ୍ୱପ୍ନ ବିଷୟ ହୁଏନ୍ ସାଂଙ୍କୁ କହିବାରୁ ସେ ଆନନ୍ଦିତ ହେଲେ । ପୁଣି ଜଣେ ବିଦେଶୀ ବ୍ୟକ୍ତି ବନ୍ଧ ସେଠାରେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେ ପଶ୍ଚିମାଞ୍ଚଳ ଯାତ୍ରା ନିମିତ୍ତ ପଥ ଜାଣିଥିବା ଜଣେ ବୃଦ୍ଧଙ୍କୁ ସେଠାରେ ଉପସ୍ଥିତ କରାଇଲେ । ବୃଦ୍ଧ ଜଣଙ୍କ ପଶ୍ଚିମାଞ୍ଚଳ ଯାତ୍ରା ଅତ୍ୟନ୍ତ କଷ୍ଟ, ଦୁର୍ଗମ ଓ ବିପଦପୂର୍ଣ୍ଣ ବୋଲି କହିଲେ । ଏହା ସତ୍ତ୍ୱେ ତାଙ୍କର ସଂକଳ୍ପ ଅଟଳ ଜାଣି ବୃଦ୍ଧ କହିଲେ, ମୋର ଏହି ଅଶ୍ୱଟି ସଙ୍ଗରେ ନିଅନ୍ତୁ, ଯିଏ ଏହି ପଥରେ ପଚାଶଥର ଯାତାୟାତ କରିଛି । ହୁଏନ୍ ସାଂଙ୍କୁ ଅତୀତରେ ଜଣେ ଗଣକ କହିଥିଲେ ତୁମ ଯାତ୍ରା ପଥକୁ ଗୋଟିଏ ଜୀର୍ଣ୍ଣକାୟ ଅଶ୍ୱ ସୁଗମ କରିବ । ଗଣକଙ୍କ ବର୍ଣ୍ଣିତ ଅଶ୍ୱ ସହିତ ବୃଦ୍ଧଙ୍କ ପ୍ରଦତ୍ତ ଅଶ୍ୱର ସାମଞ୍ଜସ୍ୟ ଥିବାରୁ ସେ ତାଙ୍କୁ ସାଙ୍ଗରେ ନେଲେ ଓ ନିଜର ଅଶ୍ୱ ତାଙ୍କୁ ଦେଇଦେଲେ ।

ହୁଏନ୍ ସାଂ ପଶ୍ଚିମ ସୀମାନ୍ତରେ ଇଉମେନ୍ ନଦୀକୂଳରେ ଉପସ୍ଥିତ ହେବା ମାତ୍ରେ ସେଠାରୁ ପ୍ରହରୀ ଗୃହ ଦୃଷ୍ଟିଗୋଚର ହୁଅନ୍ତେ ସେ ଆତ୍ମଗୋପନ କରି ରହିଲେ । ତାଙ୍କ ସହିତ ଥିବା ଯୁବକ ନଦୀକୂଳର କେତେଗୁଡ଼ିଏ ବୃକ୍ଷ-ଲତା କାଟି ସ୍ରୋତ ଉପରେ ସେତୁ ନିର୍ମାଣ କଲେ ଓ ସହଜରେ ନଦୀ ଅତିକ୍ରମ କରିବା ପରେ ସେହି ଯୁବକ ମଧ୍ୟ ତାଙ୍କୁ ପଶ୍ଚିମାଞ୍ଚଳ ଯାତ୍ରା କରିବାକୁ ବାରଣ କଲେ । ମାତ୍ର ତାଙ୍କର ସଂକଳ୍ପ ଅଟଳ ଥିବା ଜାଣି ନିଜର ପାରିବାରିକ ଅସୁବିଧା କାରଣରୁ ତାଙ୍କ ସହିତ ଆଗକୁ ଯିବା ସମ୍ଭବ ନୁହେଁ ବୋଲି କହିଲେ । ଏଠାରୁ ହୁଏନ୍ ସାଂ ଅଶ୍ୱଟିକୁ ଯୁବକଙ୍କୁ ପ୍ରଦାନ କରି ଏକୁଟିଆ ଚାଲିବାକୁ ଲାଗିଲେ ।

ବାଲୁକାମୟ ମରୁଭୂମି ଅତିକ୍ରମ କରିବା ସମୟରେ ହଠାତ୍ ସେ ଶତ ସଂଖ୍ୟକ ସୈନ୍ୟ ଦେଖିବାକୁ ପାଇଲେ । କେତେବେଳେ ସେହି ସୈନ୍ୟଗୁଡ଼ିକ ଗତି କରୁଥାନ୍ତି ଓ ଅନ୍ୟ କେତେବେଳେ ପଥରେ ବସିରହୁଥାନ୍ତି । ପ୍ରତ୍ୟେକଙ୍କ ଶରୀର ପଶୁଲୋମରେ ଆଚ୍ଛାଦିତ । ପୁଣି କେତେବେଳେ ଅଶ୍ୱ, ପତାକା ଓ ବଲ୍ଲମ ଦୃଷ୍ଟି ପଥାରୂଢ଼ ହେଉଥାଏ । କେତେବେଳେ ତାହା ଦୂରରେ ତ ଅନ୍ୟ କେତେବେଳେ ତାହା ପାଖରେ ପୁଣି କେତେବେଳେ ସଂପୂର୍ଣ୍ଣ ଅଦୃଶ୍ୟ ହୋଇଯାଉଥାନ୍ତି । ଏହି ଦୃଶ୍ୟ ତାଙ୍କୁ ବିଚିତ୍ର ମନେ ହେଉଥିବା ସମୟରେ ଶୂନ୍ୟଶବ୍ଦ ହେଲା- "ଭୟ ନାହିଁ, ଭୟ ନାହିଁ ।" ପ୍ରାୟ ୮୦ଲି ଅତିକ୍ରମ ଉତ୍ତାରେ ରକ୍ଷୀ ସ୍ତମ୍ଭ ଦେଖି ଗୋଟିଏ ଗୁମ୍ଫାରେ ରାତ୍ରି ପର୍ଯ୍ୟନ୍ତ ଆତ୍ମଗୋପନ କଲେ । ସ୍ତମ୍ଭର ପଶ୍ଚିମ ପାର୍ଶ୍ୱକୁ ଯାଇ ଜଳ ପାନ କରୁଥିବା ସମୟରେ ଗୋଟିଏ ତୀର ତୀବ୍ର ବେଗରେ ତାଙ୍କର ଆଣ୍ଠୁ ନିକଟ ଦେଇ ଚାଲିଗଲା ଏବଂ ସେ ଧରା ପଡ଼ିଛନ୍ତି ଜାଣି ଚିତ୍କାର କଲେ "ମୁଁ ରାଜଧାନୀର ଜଣେ ନିରୀହ

ସନ୍ନ୍ୟାସୀ, ମୋତେ ମାର ନାହିଁ ।” ପ୍ରହରୀମାନେ ଦୁର୍ଗପତି ଉଆଂସିୟାଂଙ୍କ ନିକଟକୁ ତାଙ୍କୁ ନେଲେ ଓ ସେ ନିଜର ପରିଚୟ ଦେବାପରେ ଦୁର୍ଗପତି କହିଲେ- ପଶ୍ଚିମକୁ ଯାଇଥିବା ପଥ ଦୀର୍ଘ ଓ ବିପଦସଙ୍କୁଳ, ତେଣୁ ଫେରିଯିବା ଉଚିତ୍ । ମାତ୍ର ହୁଏନ୍ ସାଂଙ୍କ ସଂକଳ୍ପ ଦେଖି ସେ ଅଭିଭୂତ ହୋଇପଡ଼ିଲେ । ରାତ୍ରରେ ତାଙ୍କୁ ବିଶ୍ରାମ କରାଇ ପରଦିନ ପଶ୍ଚିମ ଦିଗକୁ ଯାଇଥିବା ପଥ ଦେଖାଇ ଦେଲେ । ସେ ତାଙ୍କୁ କହିଲେ ଏହି ପଥ ସଳଖ ଚତୁର୍ଥ ଦୁର୍ଗକୁ ଯାଇଛି । ସେଠାରେ ଦୁର୍ଗପତି ପି-ଲୁଂ ଓ ଗୋତ୍ର ୟୋଂ ଜଣେ ସଦାଶୟ ବ୍ୟକ୍ତି ଏବଂ ମୋର ଜ୍ଞାତି । ସେଠାରେ ତାଙ୍କୁ ମୋର ପରିଚୟ ଦେଲେ ସେ ସାହାଯ୍ୟ କରିବେ କହି ପ୍ରଣିପାତପୂର୍ବକ ସେଠାରୁ ବିଦାୟ ନେଲେ । ଚତୁର୍ଥ ଦୁର୍ଗ ସନ୍ନିକଟ ହେବାମାତ୍ରେ ପ୍ରହରୀଗଣ ତାଙ୍କୁ ଦୁର୍ଗାଧିପତିଙ୍କ ନିକଟକୁ ନେଇଗଲେ । ସେଠାରେ ସେ ତାଙ୍କର ପରିଚୟ ଦେବା ସହିତ ଉଆଂସିୟାଂ ତାଙ୍କୁ ପଠାଇଛନ୍ତି କହିବାରୁ ଦୁର୍ଗାଧିପତି ତାଙ୍କୁ ସମ୍ମାନସହ ରାତ୍ରରେ ରଖି ପରଦିନ ପଞ୍ଚମ ଦୁର୍ଗ ଆଡ଼କୁ ଯିବାକୁ ବାରଣ କରି ସେଠାରୁ ଏକଶହ ଲି ଦୂରରେ ୟେମା ନଦୀରୁ ଜଳ ସଂଗ୍ରହ କରି ଚାଲିଯିବାକୁ କହିଲେ । ତତ୍ପରେ ହୁଏନ୍ ସାଂ ମୋ-କ୍ୟା-ୟେନ୍ ନାମକ ମରୁଭୂମିରେ ପ୍ରବେଶ କଲେ । ମରୁଭୂମି ଥିଲା ସଂପୂର୍ଣ୍ଣ ଜନ-ମାନବ ଶୂନ୍ୟ । ମରୁଭୂମି ବିପଦଗ୍ରସ୍ତ ସମୟରେ ପ୍ରାଜ୍ଞପାରମିତ ହୃଦୟ ସୂତ୍ର ଆବୃତ୍ତି କରି ବିପଦମୁକ୍ତ ହେଉଥିଲେ । ଏକଶତ ଲି ପଥ ଅତିକ୍ରମ କରିବା ପରେ ସେ ପଥଭ୍ରଷ୍ଟ ହୋଇଗଲେ । ତାଙ୍କ ନିକଟରେ ଜଳ ନଥିବାରୁ ସେ ଚାରି ରାତି ଓ ପାଞ୍ଚ ଦିନ ପର୍ଯ୍ୟନ୍ତ ଜଳପାନ କରିନଥିଲେ । ପାକସ୍ଥଳୀରେ ଯନ୍ତ୍ରଣା ହେବାରୁ ବାଲୁକା ଶଯ୍ୟା ଉପରେ ଶୟନ କରି ବୋଧିସତ୍ତ୍ୱଙ୍କୁ ଧ୍ୟାନ କରିବାକୁ ଲାଗିଲେ । ପଞ୍ଚମ ରାତ୍ରିର ମଧ୍ୟ ରାତ୍ରରେ ତୁଷାରସିକ୍ତ ବାୟୁ ପ୍ରବାହ ତାଙ୍କ ପ୍ରାଣକୁ ଉଜ୍ଜୀବିତ କରିବା ସହ ଅଶ୍ୱଶକ୍ତି ପରିପୂର୍ଣ୍ଣ ହୋଇ ଠିଆ ହେବାକୁ ସମର୍ଥ ହେଲେ । ଦଶ ଲି ପଥ ଅତିକ୍ରମ କରିବା ମାତ୍ରେ ତାଙ୍କ ଅଶ୍ୱ ହଠାତ୍ ଅନ୍ୟ ଦିଗକୁ ଧାବମାନ ହେଲା । କିଛି ଦୂର ପରେ ସେ ବିସ୍ତୀର୍ଣ୍ଣ ଶ୍ୟାମଳ ତୃଣ-ଆଚ୍ଛାଦିତ ପ୍ରାନ୍ତର ସହିତ ଜଳପୂର୍ଣ୍ଣ ସରୋବରଟିଏ ଦେଖିଲେ । ଅଶ୍ୱ ସହିତ ସେ ଜଳପାନ କରି ସୁସ୍ଥ ହେବା ସଙ୍ଗେ ସଙ୍ଗେ ଅନୁଭବ କଲେ ଦୃଶ୍ୟମାନ ତୃଣ ଓ ଜଳ ସ୍ୱାଭାବିକ ନୁହେଁ; ବରଂ ଦୈବ ପ୍ରେରିତ । ଦୁଇଦିନ ପରେ ସେ ଇ-ଗୁ ରାଜ୍ୟରେ ପହଞ୍ଚି ଏକ ମନ୍ଦିରରେ ଆଶ୍ରୟ ନେଉଥିବା ସମୟରେ ତିନିଜଣ ଚୀନ୍ ଦେଶୀୟ ଆଚାର୍ଯ୍ୟଙ୍କ ସହିତ ସାକ୍ଷାତ ହେଲା । ସେଠାରେ କିଛି ବିଦେଶୀ ଆଚାର୍ଯ୍ୟ ଓ ନରପତିଗଣ ମଧ୍ୟ ତାଙ୍କୁ ସାକ୍ଷାତ୍ କଲେ । କୋ-ଚାଂର ରାଜା ଇ-ଗୁର ଉଚ୍ଚ ପଦସ୍ଥ ରାଜକର୍ମଚାରୀ ଏବଂ ଅଶ୍ୱାରୋହୀ ସୈନ୍ୟ ପଠାଇ ତାଙ୍କୁ ରାଜଧାନୀକୁ ପାଛୋଟି ନେଲେ । ରାଜା, ରାଣୀ ଏବଂ ରାଜ ପରିବାରର ଅନ୍ୟ ସଦସ୍ୟଗଣ ହୁଏନ୍ ସାଂଙ୍କୁ ଯଥାମାନ୍ୟ ପ୍ରଦାନ କଲେ । ସେଠାରେ ରାଜା ତାଙ୍କୁ ଇ-ଗୁରେ ସବୁଦିନ ପାଇଁ ରହିଯିବାକୁ ଅନୁରୋଧ କଲେ । ତାଙ୍କୁ ସମ୍ମତ କରିବା ନିମିତ୍ତ କ୍ୱୋ-

ଟଂ-ଉଆଂ ନାମକ ଧର୍ମାଚାର୍ଯ୍ୟଙ୍କୁ ନିଯୁକ୍ତ କରିଥିଲେ । ମାତ୍ର ହୁଏନ୍ ସାଂ ବିନୟର ସହିତ ତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ । ରାଜାଙ୍କ ବାରମ୍ବାର ଅନୁରୋଧ ପରେ ସେ ତାଙ୍କ ମନରେ ରହିଥିବା ଧର୍ମ ସମ୍ପର୍କୀୟ ସନ୍ଦେହ ମୋଚନ କରିବାକୁ ପଶ୍ଚିମ ଦିଗକୁ ଯାତ୍ରା କରିବା ଜରୁରୀ ବୋଲି କହିବାରୁ ରାଜା ଭୟ ଦେଖାଇ କହିଲେ- "ମହାଶୟ, ଏହି ବିଷୟରେ ମୁଁ ଅନ୍ୟ ପ୍ରକାର ମୀମାଂସା କରି ଜାଣେ । ଆପଣ ଯଦି ଏଠାରୁ ସ୍ୱେଚ୍ଛାରେ ଚାଲିଯିବେ ବୋଲି ମନେ କରନ୍ତି, ତାହା ହେଲେ ବଳପୂର୍ବକ ମୁଁ ଆପଣଙ୍କୁ ଅବରୁଦ୍ଧ କରି ସ୍ୱଦେଶକୁ ପ୍ରେରିତ କରିଦେବି ।" ହୁଏନ୍ ସାଂ ସେଥିରେ ରାଜି ନ ହେବାରୁ ଏବଂ ତାଙ୍କୁ ଅବରୁଦ୍ଧ କରାହୋଇଥିବା ଦେଖି ରାଜପ୍ରାସାଦ ପ୍ରେରିତ ଆହାର ଓ ଜଳ ସ୍ପର୍ଶ ନ କରି ତିନିଦିନ ଗମ୍ଭୀର ଭାବରେ ନିର୍ବାକ୍ ହୋଇ ବସି ରହିଲେ । ଚତୁର୍ଥ ଦିବସରେ ସ୍ୱୟଂ ରାଜା ଦୁଃଖ ଓ ଲଜ୍ଜାରେ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ସେ ଇଚ୍ଛା ଅନୁସାରେ ଯାଇପାରନ୍ତି ବୋଲି କହିବା ସହିତ ପ୍ରତ୍ୟାବର୍ତ୍ତନ ବେଳେ ତାଙ୍କ ରାଜ୍ୟରେ ଦାନ ଗ୍ରହଣ କରି ତିନି ବର୍ଷ ପର୍ଯ୍ୟନ୍ତ ରହିବାକୁ ଅନୁରୋଧ କଲେ ଏବଂ ପୁଣି କହିଲେ ହୁଏନ୍ ସାଂ ଯଦି ବୁଦ୍ଧତ୍ୱ ପ୍ରାପ୍ତ ହୁଅନ୍ତି ତେବେ ସେ ପ୍ରସେନ୍‌ଜିତ ବା ବିମ୍ବିସାରଙ୍କ ପରି ତାଙ୍କର ପୃଷ୍ଠପୋଷକ ହେବେ । ପର ଦିବସରେ ରାଜା ଧର୍ମ ସମ୍ମିଳନୀର ଅଧିବେଶନ ସକାଶେ ଏକ ବିରାଟ ଶିବିର ସ୍ଥାପନ କରିଥିଲେ ଯେଉଁଥିରେ ପଣ୍ଡିତ ଆଚାର୍ଯ୍ୟ ରାଜ୍ଞୀ ଇତ୍ୟାଦି ଯୋଗଦେଇ ହୁଏନ୍ ସାଂଙ୍କ ଧର୍ମଶାସ୍ତ୍ର ବ୍ୟାଖ୍ୟାନ ଶୁଣିଥିଲେ ।

ସଭାକାର୍ଯ୍ୟ ସମାପ୍ତି ପରେ ରାଜା ହୁଏନ୍ ସାଂଙ୍କ ନିମିତ୍ତ ୩୦ଟି ପରିଚ୍ଛଦ, ଦୁଇଶତ ପଚାଶ ତୋଳା ସୁନା, ତିରିଶ ସହସ୍ର ରୌପ୍ୟମୁଦ୍ରା, ସାଟିନ୍ ଓ ତାଫତା ରେଶମ ବସ୍ତ୍ର ଏବଂ ସଙ୍ଗରେ ୩୦ଟି ଅଶ୍ୱ ସହିତ ୨୪ ଜଣ ଭୃତ୍ୟଙ୍କୁ ପ୍ରେରଣ କଲେ । ହୁଏନ୍ ସାଂଙ୍କୁ ନିଜେ ଖାଁୟେ-ହୁଙ୍କର ଦରବାରରେ ଉପସ୍ଥିତ କରାଇବା ପାଇଁ ପ୍ରଧାନପାରିଷଦ ହୁନ୍- ସିନ୍‌ଙ୍କୁ ଆଦେଶ ଦେବା ସହିତ ତାଙ୍କ ନିକଟକୁ ବହୁ ଉପଢୌକନ ଓ ପତ୍ର ଲେଖି ହୁଏନ୍ ସାଂଙ୍କ ପ୍ରତି ସଦୟ ହୋଇ ତାଙ୍କର ନିରାପଦ ପଶ୍ଚିମାଞ୍ଚଳ ଯାତ୍ରା ନିମିତ୍ତ ବ୍ୟବସ୍ଥା କରିବାକୁ ଅନୁରୋଧ କରିଥିଲେ । ରାଜାଙ୍କ ବ୍ୟବହାର ତଥା ଉପହାରରେ ହୁଏନ୍ ସାଂ ମୁଗ୍ଧ ହୋଇ ତାଙ୍କ ଉଦ୍ଦେଶ୍ୟ ସିଦ୍ଧି ପାଇଁ ସେ ସହାୟତା କରିଥିବାରୁ ରାଜାଙ୍କୁ ଭାଇ ଭାବରେ ସ୍ୱୀକାର କରିଥିଲେ ଏବଂ ଧର୍ମ ସମ୍ପର୍କୀୟ ସମସ୍ତ ସନ୍ଦେହ ଦୂର କରି ପ୍ରକୃତ ତତ୍ତ୍ୱ ତଥା ଅଜ୍ଞାତ ତତ୍ତ୍ୱ ସମ୍ପର୍କରେ ଜ୍ଞାନ ନିଶ୍ଚିତ ରୂପେ ଆହରଣ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ବିଦାୟ ନେବା ସମୟରେ ସ୍ୱୟଂ ରାଜା, ଧର୍ମାଚାର୍ଯ୍ୟ, ମନ୍ତ୍ରୀ, ପ୍ରଜାଗଣ ରାଜଧାନୀ ଉପକଣ୍ଠ ପର୍ଯ୍ୟନ୍ତ ଆସି ସାଶ୍ରୁ ନୟନରେ ବିଦାୟ ଦେଇଗଲେ । ସେଠାରୁ ହୁଏନ ସାଂ ପଶ୍ଚିମ ଅଭିମୁଖେ ଯାତ୍ରା କରି ଉସ୍ତାନ ଓ ତୋ-ସିନ୍ ନଗର ଅତିକ୍ରମପୂର୍ବକ ଓ-କି-ନି (ୟେକି) ଦେଶରେ ପ୍ରବେଶ କରିଥିଲେ ।

ସନ୍ନ୍ୟାସୀ, ମୋତେ ମାର ନାହିଁ ।” ପ୍ରହରୀମାନେ ଦୁର୍ଗପତି ଉଆଂସିୟାଂଙ୍କ ନିକଟକୁ ତାଙ୍କୁ ନେଲେ ଓ ସେ ନିଜର ପରିଚୟ ଦେବାପରେ ଦୁର୍ଗପତି କହିଲେ- ପଶ୍ଚିମକୁ ଯାଇଥିବା ପଥ ଦୀର୍ଘ ଓ ବିପଦସଙ୍କୁଳ, ତେଣୁ ଫେରିଯିବା ଉଚିତ୍ । ମାତ୍ର ହୁଏନ୍ ସାଂଙ୍କ ସଂକଳ୍ପ ଦେଖି ସେ ଅଭିଭୂତ ହୋଇପଡ଼ିଲେ । ରାତ୍ରରେ ତାଙ୍କୁ ବିଶ୍ରାମ କରାଇ ପରଦିନ ପଶ୍ଚିମ ଦିଗକୁ ଯାଇଥିବା ପଥ ଦେଖାଇ ଦେଲେ । ସେ ତାଙ୍କୁ କହିଲେ ଏହି ପଥ ସଳଖ ଚତୁର୍ଥ ଦୁର୍ଗକୁ ଯାଇଛି । ସେଠାରେ ଦୁର୍ଗପତି ପି-ଲୁଂ ଓ ଗୋତ୍ର ୟୋଂ ଜଣେ ସଦାଶୟ ବ୍ୟକ୍ତି ଏବଂ ମୋର ଜ୍ଞାତି । ସେଠାରେ ତାଙ୍କୁ ମୋର ପରିଚୟ ଦେଲେ ସେ ସାହାଯ୍ୟ କରିବେ କହି ପ୍ରଣିପାତପୂର୍ବକ ସେଠାରୁ ବିଦାୟ ନେଲେ । ଚତୁର୍ଥ ଦୁର୍ଗ ସନ୍ନିକଟ ହେବାମାତ୍ରେ ପ୍ରହରୀଗଣ ତାଙ୍କୁ ଦୁର୍ଗାଧିପତିଙ୍କ ନିକଟକୁ ନେଇଗଲେ । ସେଠାରେ ସେ ତାଙ୍କର ପରିଚୟ ଦେବା ସହିତ ଉଆଂସିୟାଂ ତାଙ୍କୁ ପଠାଇଛନ୍ତି କହିବାରୁ ଦୁର୍ଗାଧିପତି ତାଙ୍କୁ ସମ୍ମାନସହ ରାତ୍ରରେ ରଖି ପରଦିନ ପଞ୍ଚମ ଦୁର୍ଗ ଆଡ଼କୁ ଯିବାକୁ ବାରଣ କରି ସେଠାରୁ ଏକଶହ ଲି ଦୂରରେ ୟେମା ନଦୀରୁ ଜଳ ସଂଗ୍ରହ କରି ଚାଲିଯିବାକୁ କହିଲେ । ତତ୍ପରେ ହୁଏନ୍ ସାଂ ମୋ-କ୍ୟା-ୟେନ୍ ନାମକ ମରୁଭୂମିରେ ପ୍ରବେଶ କଲେ । ମରୁଭୂମି ଥିଲା ସଂପୂର୍ଣ୍ଣ ଜନ-ମାନବ ଶୂନ୍ୟ । ମରୁଭୂମି ବିପଦଗ୍ରସ୍ତ ସମୟରେ ପ୍ରାଜ୍ଞପାରମିତ ହୃଦୟ ସୂତ୍ର ଆବୃତ୍ତି କରି ବିପଦମୁକ୍ତ ହେଉଥିଲେ । ଏକଶତ ଲି ପଥ ଅତିକ୍ରମ କରିବା ପରେ ସେ ପଥଭ୍ରଷ୍ଟ ହୋଇଗଲେ । ତାଙ୍କ ନିକଟରେ ଜଳ ନଥିବାରୁ ସେ ଚାରି ରାତି ଓ ପାଞ୍ଚ ଦିନ ପର୍ଯ୍ୟନ୍ତ ଜଳପାନ କରିନଥିଲେ । ପାକସ୍ଥଳୀରେ ଯନ୍ତ୍ରଣା ହେବାରୁ ବାଲୁକା ଶଯ୍ୟା ଉପରେ ଶୟନ କରି ବୋଧିସତ୍ତ୍ୱଙ୍କୁ ଧ୍ୟାନ କରିବାକୁ ଲାଗିଲେ । ପଞ୍ଚମ ରାତ୍ରିର ମଧ୍ୟ ରାତ୍ରରେ ତୁଷାରସିକ୍ତ ବାୟୁ ପ୍ରବାହ ତାଙ୍କ ପ୍ରାଣକୁ ଉଜ୍ଜୀବିତ କରିବା ସହ ଅଶ୍ୱଶକ୍ତି ପରିପୂର୍ଣ୍ଣ ହୋଇ ଠିଆ ହେବାକୁ ସମର୍ଥ ହେଲେ । ଦଶ ଲି ପଥ ଅତିକ୍ରମ କରିବା ମାତ୍ରେ ତାଙ୍କ ଅଶ୍ୱ ହଠାତ୍ ଅନ୍ୟ ଦିଗକୁ ଧାବମାନ ହେଲା । କିଛି ଦୂର ପରେ ସେ ବିସ୍ତୀର୍ଣ୍ଣ ଶ୍ୟାମଳ ତୃଣ-ଆଚ୍ଛାଦିତ ପ୍ରାନ୍ତର ସହିତ ଜଳପୂର୍ଣ୍ଣ ସରୋବରଟିଏ ଦେଖିଲେ । ଅଶ୍ୱ ସହିତ ସେ ଜଳପାନ କରି ସୁସ୍ଥ ହେବା ସଙ୍ଗେ ସଙ୍ଗେ ଅନୁଭବ କଲେ ଦୃଶ୍ୟମାନ ତୃଣ ଓ ଜଳ ସ୍ୱାଭାବିକ ନୁହେଁ; ବରଂ ଦୈବ ପ୍ରେରିତ । ଦୁଇଦିନ ପରେ ସେ ଇ-ଗୁ ରାଜ୍ୟରେ ପହଞ୍ଚି ଏକ ମନ୍ଦିରରେ ଆଶ୍ରୟ ନେଉଥିବା ସମୟରେ ତିନିଜଣ ଚୀନ୍ ଦେଶୀୟ ଆଚାର୍ଯ୍ୟଙ୍କ ସହିତ ସାକ୍ଷାତ ହେଲା । ସେଠାରେ କିଛି ବିଦେଶୀ ଆଚାର୍ଯ୍ୟ ଓ ନରପତିଗଣ ମଧ୍ୟ ତାଙ୍କୁ ସାକ୍ଷାତ୍ କଲେ । କୋ-ଚାଂର ରାଜା ଇ-ଗୁର ଉଚ୍ଚ ପଦସ୍ଥ ରାଜକର୍ମଚାରୀ ଏବଂ ଅଶ୍ୱାରୋହୀ ସୈନ୍ୟ ପଠାଇ ତାଙ୍କୁ ରାଜଧାନୀକୁ ପାଛୋଟି ନେଲେ । ରାଜା, ରାଣୀ ଏବଂ ରାଜ ପରିବାରର ଅନ୍ୟ ସଦସ୍ୟଗଣ ହୁଏନ୍ ସାଂଙ୍କୁ ଯଥାମାନ୍ୟ ପ୍ରଦାନ କଲେ । ସେଠାରେ ରାଜା ତାଙ୍କୁ ଇ-ଗୁରେ ସବୁଦିନ ପାଇଁ ରହିଯିବାକୁ ଅନୁରୋଧ କଲେ । ତାଙ୍କୁ ସମ୍ମତ କରିବା ନିମିତ୍ତ କୋ-

ଚଂ-ଉଆଂ ନାମକ ଧର୍ମାଚାର୍ଯ୍ୟଙ୍କୁ ନିଯୁକ୍ତ କରିଥିଲେ । ମାତ୍ର ହୁଏନ୍ ସାଂ ବିନୟର ସହିତ ତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ । ରାଜାଙ୍କ ବାରମ୍ବାର ଅନୁରୋଧ ପରେ ସେ ତାଙ୍କ ମନରେ ରହିଥିବା ଧର୍ମ ସମ୍ପର୍କୀୟ ସନ୍ଦେହ ମୋଚନ କରିବାକୁ ପଶ୍ଚିମ ଦିଗକୁ ଯାତ୍ରା କରିବା ଜରୁରୀ ବୋଲି କହିବାରୁ ରାଜା ଭୟ ଦେଖାଇ କହିଲେ- "ମହାଶୟ, ଏହି ବିଷୟରେ ମୁଁ ଅନ୍ୟ ପ୍ରକାର ମୀମାଂସା କରି ଜାଣେ । ଆପଣ ଯଦି ଏଠାରୁ ସ୍ୱେଚ୍ଛାରେ ଚାଲିଯିବେ ବୋଲି ମନେ କରନ୍ତି, ତାହା ହେଲେ ବଳପୂର୍ବକ ମୁଁ ଆପଣଙ୍କୁ ଅବରୁଦ୍ଧ କରି ସ୍ୱଦେଶକୁ ପ୍ରେରିତ କରିଦେବି ।" ହୁଏନ୍ ସାଂ ସେଥିରେ ରାଜି ନ ହେବାରୁ ଏବଂ ତାଙ୍କୁ ଅବରୁଦ୍ଧ କରାହୋଇଥିବା ଦେଖି ରାଜପ୍ରାସାଦ ପ୍ରେରିତ ଆହାର ଓ ଜଳ ସ୍ପର୍ଶ ନ କରି ତିନିଦିନ ଗମ୍ଭୀର ଭାବରେ ନିର୍ବାକ୍ ହୋଇ ବସି ରହିଲେ । ଚତୁର୍ଥ ଦିବସରେ ସ୍ୱୟଂ ରାଜା ଦୁଃଖ ଓ ଲଜ୍ଜାରେ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ସେ ଇଚ୍ଛା ଅନୁସାରେ ଯାଇପାରନ୍ତି ବୋଲି କହିବା ସହିତ ପ୍ରତ୍ୟାବର୍ତ୍ତନ ବେଳେ ତାଙ୍କ ରାଜ୍ୟରେ ଦାନ ଗ୍ରହଣ କରି ତିନି ବର୍ଷ ପର୍ଯ୍ୟନ୍ତ ରହିବାକୁ ଅନୁରୋଧ କଲେ ଏବଂ ପୁଣି କହିଲେ ହୁଏନ୍ ସାଂ ଯଦି ବୁଦ୍ଧତ୍ୱ ପ୍ରାପ୍ତ ହୁଅନ୍ତି ତେବେ ସେ ପ୍ରସେନ୍‌ଜିତ ବା ବିମ୍ବିସାରଙ୍କ ପରି ତାଙ୍କର ପୃଷ୍ଠପୋଷକ ହେବେ । ପର ଦିବସରେ ରାଜା ଧର୍ମ ସମ୍ମିଳନୀର ଅଧିବେଶନ ସକାଶେ ଏକ ବିରାଟ ଶିବିର ସ୍ଥାପନ କରିଥିଲେ ଯେଉଁଥିରେ ପଣ୍ଡିତ ଆଚାର୍ଯ୍ୟ ରାଜ୍ଞୀ ଇତ୍ୟାଦି ଯୋଗଦେଇ ହୁଏନ୍ ସାଂଙ୍କ ଧର୍ମଶାସ୍ତ୍ର ବ୍ୟାଖ୍ୟାନ ଶୁଣିଥିଲେ ।

ସଭାକାର୍ଯ୍ୟ ସମାପ୍ତି ପରେ ରାଜା ହୁଏନ୍ ସାଂଙ୍କ ନିମିତ୍ତ ୩୦ଟି ପରିଚ୍ଛଦ, ଦୁଇଶତ ପଚାଶ ତୋଳା ସୁନା, ତିରିଶ ସହସ୍ର ରୌପ୍ୟମୁଦ୍ରା, ସାଟିନ୍ ଓ ତାଫତା ରେଶମ ବସ୍ତ୍ର ଏବଂ ସଙ୍ଗରେ ୩୦ଟି ଅଶ୍ୱ ସହିତ ୨୪ ଜଣ ଭୃତ୍ୟଙ୍କୁ ପ୍ରେରଣ କଲେ । ହୁଏନ୍ ସାଂଙ୍କୁ ନିଜେ ଖାଁୟେ-ହୁଙ୍କର ଦରବାରରେ ଉପସ୍ଥିତ କରାଇବା ପାଇଁ ପ୍ରଧାନପାରଷଦ ହୁନ୍- ସିନ୍‌ଙ୍କୁ ଆଦେଶ ଦେବା ସହିତ ତାଙ୍କ ନିକଟକୁ ବହୁ ଉପଢୌକନ ଓ ପତ୍ର ଲେଖି ହୁଏନ୍ ସାଂଙ୍କ ପ୍ରତି ସଦୟ ହୋଇ ତାଙ୍କର ନିରାପଦ ପଶ୍ଚିମାଞ୍ଚଳ ଯାତ୍ରା ନିମିତ୍ତ ବ୍ୟବସ୍ଥା କରିବାକୁ ଅନୁରୋଧ କରିଥିଲେ । ରାଜାଙ୍କ ବ୍ୟବହାର ତଥା ଉପହାରରେ ହୁଏନ୍ ସାଂ ମୁଗ୍ଧ ହୋଇ ତାଙ୍କ ଉଦ୍ଦେଶ୍ୟ ସିଦ୍ଧି ପାଇଁ ସେ ସହାୟତା କରିଥିବାରୁ ରାଜାଙ୍କୁ ଭାଇ ଭାବରେ ସ୍ୱୀକାର କରିଥିଲେ ଏବଂ ଧର୍ମ ସମ୍ପର୍କୀୟ ସମସ୍ତ ସନ୍ଦେହ ଦୂର କରି ପ୍ରକୃତ ତତ୍ତ୍ୱ ତଥା ଅଜ୍ଞାତ ତତ୍ତ୍ୱ ସମ୍ପର୍କରେ ଜ୍ଞାନ ନିଶ୍ଚିତ ରୂପେ ଆହରଣ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ବିଦାୟ ନେବା ସମୟରେ ସ୍ୱୟଂ ରାଜା, ଧର୍ମାଚାର୍ଯ୍ୟ, ମନ୍ତ୍ରୀ, ପ୍ରଜାଗଣ ରାଜଧାନୀ ଉପକଣ୍ଠ ପର୍ଯ୍ୟନ୍ତ ଆସି ସାଶ୍ରୁ ନୟନରେ ବିଦାୟ ଦେଇଗଲେ । ସେଠାରୁ ହୁଏନ ସାଂ ପଶ୍ଚିମ ଅଭିମୁଖେ ଯାତ୍ରା କରି ଉସ୍ତାନ ଓ ତୋ-ସିନ୍ ନଗର ଅତିକ୍ରମପୂର୍ବକ ଓ-କି-ନି (ୟେଙ୍କି) ଦେଶରେ ପ୍ରବେଶ କରିଥିଲେ ।

**ଦ୍ୱିତୀୟ ଖଣ୍ଡ: ଓ-କି-ନି(ୟେଙ୍କି)ରୁ କି-ଯୋ-କ୍ୟୋ-ଶି (କନୌଜ) ଯାତ୍ରା:-**

ହୁଏନ୍ ସାଂ ପଶ୍ଚିମାଭିମୁଖରେ ଯାତ୍ରାକରି ଓ-କି-ନି (ୟେଙ୍କି)ରେ ପହଞ୍ଚିଲେ । ସେଠାରେ ଆ-ଫୁ ଋଷିଙ୍କର ଏକ ପ୍ରସ୍ରବଣ ରହିଛି ଏବଂ ତାହା ଦକ୍ଷିଣ ପାର୍ଶ୍ୱସ୍ଥ ବାଲୁକାମୟ ଗୋଟିଏ ପର୍ବତରୁ ପ୍ରବାହିତ । ସେଠାରେ ସେ ରାତ୍ରିଯାପନ କରି ପରଦିନ ରଜତ ପର୍ବତ ଅତିକ୍ରମ କଲେ । ଏହିଠାରେ ଦଳେ ଦସ୍ୟୁ ତାଙ୍କଠାରୁ ପ୍ରାର୍ଥିତ ଦ୍ରବ୍ୟ ପ୍ରାପ୍ତ ହୋଇ ପଳାୟନ କଲେ । ପରେ ରାଜଧାନୀ ସମୀପରେ ଉପନୀତ ହୋଇ ନଦୀ କୂଳରେ ରାତ୍ରିଯାପନ ସମୟରେ ସେ ଦେଖିଲେ କିଛି ସମୟ ପୂର୍ବରୁ ଦଳେ ବଣିକ ତାଙ୍କ ପଣ୍ୟଦ୍ରବ୍ୟ ନେଇ ଅର୍ଦ୍ଧ ରାତ୍ରରେ ଯାତ୍ରା କରୁଥିବା ସମୟରେ ଦସ୍ୟୁଗଣ ତାଙ୍କୁ ଆକ୍ରମଣ କରି ହତ୍ୟା କରିଛନ୍ତି । ଏହି ଦୃଶ୍ୟ ଦର୍ଶନରେ ତାଙ୍କ ମନ ଖୁବ୍ ବ୍ୟଥିତ ହେଲା । ତାଙ୍କ ଆଗମନ ବାର୍ତ୍ତା ଶୁଣି ଓ-କି-ନି ନରପତି ଅମାତ୍ୟଗଣଙ୍କ ସହିତ ଆସି ତାଙ୍କୁ ଆତିଥ୍ୟ ପାଇଁ ଅନୁରୋଧ କଲେ । ସେଠାରେ ଗୋଟିଏ ରାତ୍ରି ଅବସ୍ଥାନ କରି ପରଦିନ ନଦୀ ଅତିକ୍ରମ ପୂର୍ବକ ପଶ୍ଚିମ ଦିଗରେ ଶତାଧିକ ଲି ପଥ ଅତିକ୍ରମ କ୍ୟୁ-ଚି ରାଜ୍ୟ ସୀମାନ୍ତରେ ପହଞ୍ଚିଲେ । ରାଜଧାନୀ ସନ୍ନିକଟ ହେବାରୁ ସେଠାକାର ରାଜା, ମନ୍ତ୍ରୀ, ମୋକ୍ଷଗୁପ୍ତ ଧର୍ମାଚାର୍ଯ୍ୟ ସହିତ ଯାଇ ତାଙ୍କୁ ପାଛୋଟି ଆଣିଲେ । କ୍ୟୁ-ଚିର ଗୋଟିଏ ମନ୍ଦିରରେ କୋ-ଚାଂର ଅନେକ ଅଧିକାରୀ ସନ୍ନ୍ୟାସୀ ହୋଇ ରହିଥିଲେ । ସେମାନଙ୍କ ନିମନ୍ତ୍ରଣରେ ହୁଏନ୍ ସାଂ ତାଙ୍କ ପାଖରେ ରହିଲେ । ପରଦିନ ରାଜପ୍ରାସାଦରେ ତାଙ୍କୁ ଦାନ ଗ୍ରହଣ ଓ ତିନି ପ୍ରକାର ବିଶୁଦ୍ଧ ଭୋଜନ ସକାଶେ ଆମନ୍ତ୍ରଣ କରାଯିବାରୁ ସେ ତାହା ମହାଯାନ ଅନୁମୋଦିତ ନୁହେଁ ବୋଲି କହିବାରୁ ରାଜା ବିରକ୍ତ ହେଲେ । ଆହାର ସମାପନାନ୍ତେ ସେ ଉତ୍ତର-ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ ଓ-ଶି-ଲି-ନି ମନ୍ଦିରକୁ ଯାଇ ସେଠାରେ ଅବସ୍ଥାନ କରୁଥିବା ପଣ୍ଡିତ ମୋକ୍ଷଗୁପ୍ତଙ୍କ ସହିତ ସାକ୍ଷାତ କରିଥିଲେ । ମୋକ୍ଷଗୁପ୍ତ ଦୀର୍ଘ ୨୦ ବର୍ଷ କାଳ ଭାରତର ବିଭିନ୍ନ ସ୍ଥାନକୁ ଯାଇ ସମସ୍ତ ସୂତ୍ର ଅଧ୍ୟୟନ ସହିତ ସିଂ-ମିଂ (ଶବ୍ଦ ବିଦ୍ୟା ସୂତ୍ର)ରେ ଅପରିସୀମ ଜ୍ଞାନର ଅଧିକାରୀ ଥିଲେ । ହୁଏନ୍ ସାଂଙ୍କୁ ସେ ଏହି ରାଜ୍ୟରେ ସା-ସିନ୍ (ସଂଯୁକ୍ତାଭି ଧର୍ମ), କୁ-ଶି (କୋଷ), ପି-ଷା (ବିଭାଷା) ଏବଂ ଅନ୍ୟାନ୍ୟ ସୂତ୍ର ଉପଲବ୍ଧ ଥିବାରୁ ବିପଦଶଙ୍କୁଳ ପଶ୍ଚିମ ଭୂଖଣ୍ଡ ନଯାଇ ବରଂ ସେଠାରେ ଅଧ୍ୟୟନ କରିବା ଉଚିତ୍ ବୋଲି ପରାମର୍ଶ ଦେଇଥିଲେ । ହୁଏନ୍ ସାଂ ସେଠାରେ ଯୋଗଶାସ୍ତ୍ର ଅଛି କି ନାହିଁ ପଚାରନ୍ତେ ମୋକ୍ଷଗୁପ୍ତ ସେହି ଶାସ୍ତ୍ର ଧର୍ମ ବିରୋଧୀ ଏବଂ ତାହା ବୁଦ୍ଧଙ୍କର କୌଣସି ଶିଷ୍ୟ ଅଧ୍ୟୟନ କରନ୍ତି ନାହିଁ ବୋଲି କହିଲେ । ତାଙ୍କ ଉତ୍ତରରେ ହୁଏନ୍ ସାଂ ବିରକ୍ତ ହୋଇ କହିଲେ- "ଆମ୍ଭ ଦେଶରେ ସୁଦ୍ଧା ବହୁକାଳରୁ ବିଭାଷା ଓ କୋଷ ସୂତ୍ର ପ୍ରଚଳିତ ଅଛି; କିନ୍ତୁ ଦୁଃଖର ବିଷୟ, ତହିଁର ଯୁକ୍ତିଗୁଡ଼ିକ ଅଗଭୀର ଓ ଭାଷାହୀନ ପ୍ରାଣ । × × × ଏହି ହେତୁରୁ ମୁଁ ଏତେ ଦୂର ଦେଶକୁ ମହାଯାନ ଅନ୍ତର୍ଗତ ଯୋଗଶାସ୍ତ୍ର ଅଧ୍ୟୟନ କରିବାକୁ ଆସିଅଛି । ଆଉ ଯୋଗଶାସ୍ତ୍ର ଶେଷ

ବୋଧିସତ୍ତ୍ୱ ମୈତ୍ରେୟଙ୍କ ଆତ୍ମ ପ୍ରକାଶ ବ୍ୟତୀତ ଆଉ କ'ଣ ହୋଇପାରେ ? ଏପରି ଗ୍ରନ୍ଥକୁ ଧର୍ମ ବିରୋଧୀ ଆଖ୍ୟା ପ୍ରଦାନ କରି ଆପଣ କିପରି ଅତଳସ୍ପର୍ଶ ଗହ୍ୱରକୁ ଭୟ କରୁନାହାନ୍ତି ।" (ପୃ-୫୭) ସେଠାରେ ମୋକ୍ଷଗୁପ୍ତଙ୍କ ସହିତ ବିଭାଷାର ସୂତ୍ର ଆଲୋଚନା କରିବାକୁ କହିବାରୁ ସେ ଭ୍ରମରେ ପଡ଼ିଲେ । ହୁଏନ୍ ସାଂ ଅପରାଂଶର ଆଲୋଚନା ଆରମ୍ଭ କଲେ । ମୋକ୍ଷଗୁପ୍ତ ତାହା ଆବୃତ୍ତି ସୁଦ୍ଧା କରିପାରିଲେ ନାହିଁ । ଏହାପରେ ସେ ହୁଏନ୍ ସାଂଙ୍କ ମତ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ସେତେବେଳେ ଲିଂ ପର୍ବତର ଗିରିପଥ ତୁଷାର ଦ୍ୱାରା ଆଚ୍ଛାଦିତ ହୋଇଥିବାରୁ ହୁଏନ୍ ସାଂ ସେଠାରେ ଦୁଇମାସ ରହିଥିଲେ । ତୁଷାର ଛାଡ଼ିଯିବାପରେ ସେ ସେଠାରୁ ବିଦାୟ ନେବା ସମୟରେ ରାଜା ଓଟ, ଘୋଡ଼ା ଓ ଭୃତ୍ୟ ପ୍ରଦାନ କରି ରାଜଧାନୀର ଧର୍ମାଚାର୍ଯ୍ୟ ଏବଂ ପ୍ରଜାଙ୍କ ସହିତ କିଛି ବାଟ ବାଟେଇ ଦେବାକୁ ଯାଇଥିଲେ ।

ପ୍ରାୟ ଛଅଶତ ଲି ପଥ ଅତିକ୍ରମ କରି ହୁଏନ୍ ସାଂ ଓ ତାଙ୍କ ଅନୁଚର ଏକ ଅପ୍ରଶସ୍ତ ମରୁଭୂମି ପରେ ପୋ-ଲୁ-କ୍ୟା (ବାଲୁକା) ରାଜ୍ୟରେ ପ୍ରବେଶ କରି ସେଠାରେ ରାତିଟିଏ ଆଶ୍ରୟ ନେଇ ପୁନଃ ଉତ୍ତର-ପଶ୍ଚିମ ପଥରେ ତିନି ଶତ ଲି ଯାଇ ଆଉ ଏକ ମରୁଭୂମି ଅତିକ୍ରମପୂର୍ବକ ଲିଂ ପର୍ବତ ସନ୍ନିକଟରେ ଉପସ୍ଥିତ ହେଲେ । ସେ ସ୍ଥାନଟି ଅତ୍ୟନ୍ତ ଥଣ୍ଡା ଥିଲା । ପର୍ବତ ଶୃଙ୍ଗରୁ ତୁଷାରପାତ ହେଉଥିଲା । ସାତ ଦିନ ପରେ ସେମାନେ ପର୍ବତ ଶ୍ରେଣୀ ମଧ୍ୟରୁ ବହିର୍ଗତ ହେବା ବେଳକୁ ୧୨/୧୪ ଜଣ ଅନାହାର ଓ ଶୀତରେ ପ୍ରାଣ ତ୍ୟାଗ କରିଥିଲେ । ବଳଦ ଏବଂ ଅଶ୍ୱମାନଙ୍କ ମୃତ୍ୟୁ ସଂଖ୍ୟା ଥିଲା ଆହୁରି ଅଧିକ । ସେଠାରୁ ସେମାନେ ସିଂ ନାମକ ହ୍ରଦ ଉପକୂଳରେ ପ୍ରବେଶ କଲେ ଓ ସେଠାରେ ପାଞ୍ଚଶତ ଲି ପଥ ଅତିକ୍ରମ କରି ସୁ-ଯେ ନାମକ ସହରରେ ଉପନୀତ ହେଲେ । ସେଠାରେ ତାଙ୍କର ଯେ-ହୁର ତୁର୍କ ଜାତୀୟ ଖାଁଙ୍କ ସହିତ ସାକ୍ଷାତ ହେଲା । ତାଙ୍କ ନିକଟରେ କିଛି ଦିନ ରହି ପଶ୍ଚିମ ଦିଗରେ ଚାରିଶତ ଲି ପଥ ଅତିକ୍ରମି ଫି-ୟୁରେ ପହଞ୍ଚିଲେ । ସେ ସ୍ଥାନରେ ବହୁ ପୁଷ୍କରିଣୀ ଓ ପ୍ରସ୍ରବଣ ରହିଥିଲା । ସେଠାରୁ ସେ ସେ-ମୋ-କୀନ (ସୁଖୀ ଦେଶ)କୁ ଗଲେ । ସେହି ରାଜ୍ୟର ରାଜା ଓ ପ୍ରଜାମାନଙ୍କର ବୌଦ୍ଧଧର୍ମରେ ବିଶ୍ୱାସ ନଥିଲା; ସେମାନେ ମୁଖ୍ୟତଃ ଥିଲେ ଅଗ୍ନି ଉପାସକ । ରାଜା ହୁଏନ୍ ସାଂଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କଲେ । ମାତ୍ର ଯେତେବେଳେ ସେ ମନୁଷ୍ୟ ଓ ଦେବତାଙ୍କ ଭାଗ୍ୟ ସମ୍ପର୍କରେ ଭାଷଣ ଦେଇ ବୁଦ୍ଧଙ୍କ ସଦ୍-ଗୁଣାବଳୀ ତଥା ଧର୍ମର ସାରବତ୍ତା ସମ୍ପର୍କରେ କହିଲେ, ସେତେବେଳେ ରାଜା ପ୍ରୀତ ହୋଇ ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରି ଉପଦେଶ ଦେବାକୁ ଅନୁରୋଧ କଲେ । ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରି ହୁଏନ୍ ସାଂ ସେଠାରୁ ପଶ୍ଚିମକୁ ତିନିଶତ ଲି ଯାଇ କ୍ୟୁ-ଶ୍ୱାଂ-ନି-କ୍ୟା (କଶାନିଆ)ରେ ଉପନୀତ ହେଲେ । ସେଠାରୁ ଦୁଇଶତ ଲି ପଶ୍ଚିମକୁ ହୋହାନ ଓ ତା'ର ଚାରିଶତ ଲି ପଶ୍ଚିମକୁ ପୁ-ହୁ । ସେଠାରୁ ଏକଶତ ଲି ପଶ୍ଚିମକୁ ଫା-ତି ଦେଶ ଏବଂ ସେଠାରୁ

ପାଞ୍ଚଶତ ଲି ପଶ୍ଚିମରେ ଅବସ୍ଥିତ ହେ-ଲି-ସି-ମି-କି-ଆ ରାଜ୍ୟ ଦେଇ ଅକସସ୍ ନଦୀ ଅତିକ୍ରମପୂର୍ବକ ହୋ (କୁଲୁଜ) ରାଜ୍ୟରେ ପ୍ରବେଶ ହେଲେ । ଏହି ରାଜ୍ୟ ଥିଲା ଖାଁ-ୟେ-ହୁଂଙ୍କ ଜ୍ୟେଷ୍ଠ ପୁତ୍ର ତା-ତୁ ସାହଙ୍କ ବାସସ୍ଥାନ । ତା-ତୁଙ୍କ ସହିତ କୋଚାଂ ନରପତିଙ୍କ ଭଗ୍ନୀଙ୍କ ବିବାହ ହୋଇଥିଲା । କୋଚାଂ ନରପତି ତାଙ୍କ ଭଗ୍ନୀପତିଙ୍କ ନିକଟକୁ ହୁଏନ୍ ସାଂଙ୍କ ସମ୍ବନ୍ଧରେ ପତ୍ର ପ୍ରେରଣ କରିଥିଲେ । ସେତେବେଳେ ଯୁବରାଜ ଅସୁସ୍ଥ ଥିଲେ । ଏହା ସତ୍ତ୍ୱେ ହୁଏନ୍ ସାଂଙ୍କ ବିଶ୍ରାମ ପାଇଁ ସେ ବ୍ୟବସ୍ଥା କରିଥିଲେ । ଶାହଙ୍କ ପତ୍ନୀ ସେହି ସମୟରେ ବିଷ ଦେଇ ସ୍ୱାମୀଙ୍କୁ ହତ୍ୟା କରିଥିବାରୁ ତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ପାଇଁ ହୁଏନ୍ ସାଂଙ୍କୁ ଏକମାସ ରହିବାକୁ ପଡ଼ିଲା ।

ନୂତନ ଶାହଙ୍କ ପିତାଙ୍କ ମୃତ୍ୟୁରେ ସହାନୁଭୂତି ଜଣାଇବାକୁ ବହୁସଂଖ୍ୟକ ଧର୍ମାଚାର୍ଯ୍ୟ ହୋ ରାଜ୍ୟକୁ ଆସିଥିବା ସମୟରେ ହୁଏନ୍ ସାଂ ସେମାନଙ୍କ ସାଙ୍ଗରେ ଯାଇ ବଲଖରେ ଉପନୀତ ହେଲେ । ଏହି ନଗରର ଅନୁର୍ବରତା ତାଙ୍କୁ ବ୍ୟଥିତ କରିଥିଲା । ମାତ୍ର ତା'ର ରମଣୀୟତାରେ ସେ ମୁଗ୍‌ଧ ହୋଇଥିଲେ । ଏଠାରେ ପ୍ରାୟ ଏକଶତ ସଂଘାରାମ ଥିଲା ଓ ସେଥିରେ ତିନି ସହସ୍ର ହୀନଯାନାବଲମ୍ବୀ ରହିଥିଲେ । ସଂଘାରାମର କାରୁକାର୍ଯ୍ୟବିଶିଷ୍ଟ ଅଟ୍ଟାଳିକା ଥିଲା ଅତ୍ୟନ୍ତ ଚିତ୍ତାକର୍ଷକ । ସଂଘାରାମର ଅଭ୍ୟନ୍ତରରେ ବୁଦ୍ଧଙ୍କର ଜଳପାତ୍ର, ଏକ ଇଞ୍ଚ ଦୈର୍ଘ୍ୟ ଓ ୧/୧୦ ଇଞ୍ଚ ପ୍ରସ୍ଥର ଗୋଟିଏ ଦନ୍ତ ତଥା କୁଶ ସମ୍ମାର୍ଜନୀ ରହିଥିଲା । ବିଭିନ୍ନ ପର୍ବରେ ସେଗୁଡ଼ିକୁ ଅଣାଯାଉଥିଲା ଏବଂ ଶ୍ରମଣମାନେ ତା'ର ପୂଜା କରୁଥିଲେ । ସଂଘାରାମ ଉତ୍ତରରେ ୨୦୦ ଫୁଟ ଉଚ୍ଚ ସ୍ତୂପ ଓ ଦକ୍ଷିଣ-ପଶ୍ଚିମ ପାର୍ଶ୍ୱରେ ଗୋଟିଏ ପ୍ରାଚୀନ ବିହାର ଥିଲା । ଦୀର୍ଘଦିନ ତପସ୍ୟାରେ ଯେଉଁ ଆଚାର୍ଯ୍ୟଗଣ ଚତୁର୍ଥାବସ୍ଥାରେ ଉପନୀତ ହେଉଥିଲେ ସେମାନଙ୍କର ସ୍ମାରକ ସ୍ତମ୍ଭ ନଗର ଚତୁର୍ଦ୍ଦିଗରେ ନିର୍ମିତ ହୋଇଥିଲା । ରାଜଧାନୀର ପଚାଶ ଲି ଉତ୍ତର- ପଶ୍ଚିମକୁ ପୋ-ଲି ସହର ଅବସ୍ଥିତ । ସହରରେ ତିନି ଚାଂ ଉଚ୍ଚତା ବିଶିଷ୍ଟ ଦୁଇଟି ସ୍ତୂପ ରହିଥିଲା । ବୁଦ୍ଧଦେବ ପରମାଲୋକ ପ୍ରାପ୍ତ ହେବାପରେ ଏହି ସ୍ଥାନ ନିବାସୀ ଦୁଇଜଣ ବଣିକଙ୍କ ହସ୍ତରୁ ମଧୁ ଓ ଆହାର ଗ୍ରହଣ କରିଥିଲେ ଓ ସେମାନେ ତାଙ୍କର ଶିଷ୍ୟତ୍ୱ ବରଣ କରିଥିଲେ । ବୁଦ୍ଧଙ୍କୁ ସେମାନେ ଉପହାର ଦେବାକୁ ଅନୁରୋଧ କରିବାରୁ ସେ ତାଙ୍କ ନଖ ଓ କେଶରୁ କିୟଦଂଶ ଦେଇ ତାଙ୍କ ଉଦ୍ଦେଶ୍ୟରେ ଏକ ସ୍ତୂପ ନିର୍ମାଣ କରିବାକୁ କହିଥିଲେ ଏବଂ ସେମାନେ ଏହି ସ୍ତୂପ ଦୁଇଟି ନିର୍ମାଣ କରିଥିଲେ ।

ନବ ସଂଘାରାମରେ ପ୍ରଜ୍ଞାକର ନାମରେ ଜଣେ ହୀନଯାନୀ ସନ୍ନ୍ୟାସୀ ବାସ କରୁଥିଲେ ଯିଏ ତ୍ରିପିଟକ, ଅଭିଧମ୍ମ, କାତ୍ୟାୟନଙ୍କ କୋଷ, ଷଟ୍‌ପଦାଭିଧମ୍ମ ଆଦି ବହୁଶାସ୍ତ୍ର ଅଧ୍ୟୟନ କରିଥିଲେ । ହୁଏନ୍ ସାଂ ସେଠାରେ ତାଙ୍କଠାରୁ ଏକମାସ କାଳ ବିଭାଷାଶାସ୍ତ୍ର ଅଧ୍ୟୟନ କରିଥିଲେ । ତତ୍ପରେ ସେ ପ୍ରଜ୍ଞାକରଙ୍କ ସହିତ ବଲଖର ଦକ୍ଷିଣକୁ ଯାଇ କୀ-ଚୀ (ଗଜ)

ରାଜ୍ୟରେ ପହଞ୍ଚି ସେଠାରୁ ଦକ୍ଷିଣ-ପୂର୍ବରେ ଅବସ୍ଥିତ ତୁଷାରାବୃତ ପର୍ବତ ଶ୍ରେଣୀର ଛଅଶତ ଲି ଅତିକ୍ରମ କରି ତୁଖାରା ସୀମାନ୍ତ ଦେଇ ବାମିୟାନ୍ ରାଜ୍ୟରେ ପହଞ୍ଚିଥିଲେ । ବାମିୟାନ ରାଜଧାନୀରେ ୧୦ଟି ମଠଥିଲା, ସେଥିରେ ହୀନଯାନ ସଂପ୍ରଦାୟର ବହୁ ସନ୍ନ୍ୟାସୀ ବାସ କରୁଥିଲେ । ସେଠାରେ ଆର୍ଯ୍ୟ ଦାସ ଓ ଆର୍ଯ୍ୟ ସେନ୍ ନାମରେ ଦୁଇଜଣ ସର୍ବଶାସ୍ତ୍ରଜ୍ଞ ସନ୍ନ୍ୟାସୀ ଥିଲେ । ହୁଏନ୍ ସାଂଙ୍କୁ ଦେଖି ସେମାନେ ଖୁସି ହେବା ସହିତ ସେଠାକାର ପବିତ୍ର ସ୍ଥାନମାନ ତାଙ୍କୁ ଦର୍ଶନ କରାଇଲେ । ରାଜଧାନୀ ଉତ୍ତର ପୂର୍ବ ପାର୍ଶ୍ୱ ପର୍ବତ ନିମ୍ନ ଦେଶରେ ଏକଶତ ଫୁଟ ଉଚ୍ଚ ଶାକ୍ୟମୁନିଙ୍କ ଦଣ୍ଡାୟମାନ ପ୍ରସ୍ତର ମୂର୍ତ୍ତି ରହିଥିଲା । ଏହି ସ୍ଥାନର ଦୁଇଶତ ଲି ଦକ୍ଷିଣ-ପୂର୍ବକୁ ବରଫ ପର୍ବତମାଳା ଅପରପାର୍ଶ୍ୱର କ୍ଷୁଦ୍ର ଉପତ୍ୟକାରେ ଗୋଟିଏ ସଂଘାରାମରେ ବୁଦ୍ଧଙ୍କର ଦନ୍ତଟିଏ ସଂରକ୍ଷିତ ଥିଲା । ବାମିୟାନ୍‌ରେ ୧୫ ଦିନ ରହି କୋ-ବା-ବା ପର୍ବତ ଅତିକ୍ରମ କରି କପିଶାର ସୀମାନ୍ତରେ ପହଞ୍ଚିଲେ । ଏହାର ଉତ୍ତରରେ ତୁଷାରାବୃତ ପର୍ବତ ଶ୍ରେଣୀ । କପିଶା ନରପତି ତାଙ୍କୁ ସମାଦରରେ ଆମନ୍ତ୍ରଣ କଲେ । ସେଠାରେ ଥିବା ଏକଶତ ମଠର ପ୍ରତ୍ୟେକ ମଠାଧକ୍ଷ ତାଙ୍କୁ ମଠରେ ରଖିବାକୁ ଆଗ୍ରହ ପ୍ରକାଶ କଲେ । ଏଠାରେ ହୀନଯାନାନ୍ତର୍ଗତ ଶା-ଲୋ-କ୍ୟା ନାମକ ଏକ ମନ୍ଦିର ରହିଥିଲା । ଏହି ମନ୍ଦିରର ପୂର୍ବଦ୍ୱାର ସନ୍ନିକଟ ଏକ ପ୍ରକୋଷ୍ଠରେ ବୁଦ୍ଧଦେବଙ୍କ ଓ ତାଙ୍କ ନିକଟରେ ବୈଶ୍ରବଣ ନରପତିଙ୍କ ମୂର୍ତ୍ତି ଥିଲା । ବୈଶ୍ରବଣ ମୂର୍ତ୍ତିପାଦ ଦେଶରେ ହାନ ରାଜପୁତ୍ର ଭବିଷ୍ୟତରେ ମନ୍ଦିରର ଜୀର୍ଣ୍ଣ ସଂସ୍କାର ନିମିତ୍ତ ବହୁ ମଣିମାଣିକ୍ୟ ପୋତି ରଖିଥିଲେ । ପ୍ରତିବର୍ଷ ବର୍ଷା ଋତୁରେ ରାଜପୁତ୍ରଙ୍କ ଏହି ମହାନ୍ କାର୍ଯ୍ୟ ନିମିତ୍ତ କୃତଜ୍ଞତାସ୍ୱରୂପ ସନ୍ନ୍ୟାସୀମଣ୍ଡଳୀ ବିରାଟ ଉତ୍ସବର ଆୟୋଜନ କରି ନାନା ଧର୍ମଶାସ୍ତ୍ର ଆଲୋଚନା କରୁଥିଲେ । ଶୁଣାଯାଏ ଭୂପତିତ ମନ୍ଦିର, ସ୍ତୂପ ସଂସ୍କାର ଉଦ୍ଦେଶ୍ୟରେ ଯେତେବେଳେ ସନ୍ନ୍ୟାସୀଗଣ ମଣି-ମାଣିକ୍ୟ ଖନନ କରିବାକୁ ଆରମ୍ଭ କଲେ, ସେହି ସ୍ଥାନ କମ୍ପିତ ହେବାକୁ ଲାଗିଲା । ହୁଏନ୍ ସାଂ ଏହା ଜାଣି ମୂର୍ତ୍ତି ନିକଟରେ ଧୂପ ଦାନ ପୂର୍ବକ କହିଲେ- "ପ୍ରତିଭୂ ରାଜପୁତ୍ର ପୂର୍ବେ ଏହି ମନ୍ଦିରର ଜୀର୍ଣ୍ଣ ସଂସ୍କାର ରୂପ ସତ୍କାର୍ଯ୍ୟ ସାଧନ ସକାଶେ ଏଠାରେ ଏତେଗୁଡ଼ିଏ ମଣି ମାଣିକ୍ୟ ପ୍ରୋଥିତ କରିଗଲେ । ଉକ୍ତ କାର୍ଯ୍ୟ ସମ୍ପାଦନ ନିମିତ୍ତ ସେ ସମସ୍ତ ବ୍ୟବହାର କରିବା ସକାଶେ ଖନନ କରିବା ସମୟ ଉପସ୍ଥିତ ହୋଇଅଛି । ଆମ୍ଭମାନଙ୍କର ଭିକ୍ଷା ଯେ, ଆପଣ ଆମ୍ଭମାନଙ୍କର ଉଦ୍ଦେଶ୍ୟରେ ସତ୍ୟାସତ୍ୟ ପରୀକ୍ଷା କରନ୍ତୁ । ଆଉ ଆପଣଙ୍କ ଏହି ଅସାଧାରଣ କ୍ଷମତାର ବ୍ୟବହାର ସ୍ଥଗିତ ରଖି, ଆମ୍ଭମାନଙ୍କୁ କାର୍ଯ୍ୟାରମ୍ଭ କରିବା ସୁଯୋଗ ପ୍ରଦାନ କରନ୍ତୁ । ମୁଁ ହୁଏନ୍ ସାଂ ନିଜେ ଏହି ଖନନ କାର୍ଯ୍ୟର ତତ୍ତ୍ୱାବଧାନ କରିବି ଓ ଯଥାଯଥ ଭାବରେ ମଣିମାଣିକ୍ୟର ଓଜନ ପରିମାଣାଦି ସ୍ଥିର କରି ପ୍ରୟୋଜନାନୁଯାୟୀ ପ୍ରଧାନଶିଳ୍ପୀ ହସ୍ତରେ ବ୍ୟୟଭାର ନ୍ୟସ୍ତ କରିବି ଏବଂ ତହିଁର ଅପବ୍ୟୟ କୌଣସି ମତେ କରାଇ ଦେବିନାହିଁ । ଆମ୍ଭମାନଙ୍କର ଏତିକି ପ୍ରାର୍ଥନା ଯେ, ପ୍ରଭୁଙ୍କ

ଏହି ଶକ୍ତି ଏଥିରେ ସତ୍ୟାସତ୍ୟ ନିରୂପଣ ପୂର୍ବକ ଏହି ସତ୍କାର୍ଯ୍ୟ ସାଧନରେ ଆମ୍ଭମାନଙ୍କୁ ପ୍ରବୃତ୍ତ କରୁ ।" (ପୃ-୭୮-୭୯) ଏହାପରେ ଖନନ କାର୍ଯ୍ୟ ହୋଇ ୭/୮ ଫୁଟ ଗଭୀରରେ ରକ୍ଷିତ ସୁନା ଓ ମୁକ୍ତାପୂର୍ଣ୍ଣ ଏକ ତାମ୍ରପାତ୍ର ପାଇଲେ । ସେ ଦେଶର ରାଜା ମହାଯାନ ଅନ୍ତର୍ଗତ ନୀତିସମୂହ ପାଳନ କରୁଥିଲେ । ସନ୍ନ୍ୟାସୀମାନଙ୍କ ସମ୍ମିଳନୀ ଓ ଧର୍ମ ଶାସ୍ତ୍ରାଲୋଚନାରେ ସେ ଆନନ୍ଦ ପାଉଥିଲେ । ସେ ହୁଏନ୍ ସାଂ ଓ ପ୍ରଜ୍ଞାକରଙ୍କୁ ମହାଯାନ ମନ୍ଦିରରେ ବସୁଥିବା ଧର୍ମ ସମ୍ମିଳନୀକୁ ଆମନ୍ତ୍ରଣ କଲେ । ହୁଏନ୍ ସାଂ ସମସ୍ତ ଶାସ୍ତ୍ର ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରିଥିବାରୁ ସମସ୍ତଙ୍କ ପ୍ରଶ୍ନର ଯଥୋଚିତ ଉତ୍ତର ପ୍ରଦାନ କରିବାରୁ ସମସ୍ତେ ତାଙ୍କର ଶ୍ରେଷ୍ଠତା ସ୍ୱୀକାର କଲେ ।

ବର୍ଷାଋତୁ ଉତ୍ସବ ପରେ ହୁଏନ୍ ସାଂ ସେଠାରୁ ବିଦାୟ ନେଇ ପୂର୍ବ ଦିଗାଭିମୁଖେ ଯାତ୍ରା କରି ଭାରତବର୍ଷ ସୀମାନ୍ତ ଅତିକ୍ରମି ଲାନ୍- ପୋ (ଲଘାନ) ରାଜ୍ୟରେ ପ୍ରବେଶ କଲେ । ସେଠାକାର ସନ୍ନ୍ୟାସୀଗଣ ସମସ୍ତେ ମହାଯାନଭୁକ୍ତ । ସେଠାରେ ତିନି ଦିନ ଅବସ୍ଥାନ କରି ଦକ୍ଷିଣ ଦିଗକୁ ଯାଇ ଏକ ପର୍ବତ ପାଖରେ ଥିବା ସ୍ତୂପ ନିକଟରେ କିଛି ଦିନ ଅବସ୍ଥାନ କରି ଉତ୍ତର ଦିଗର ମ୍ଳେଚ୍ଛ ଦେଶ ଭୂଖଣ୍ଡରେ ପହଞ୍ଚିଲେ । ଅତୀତରେ ତଥାଗତ ମଧ୍ୟ ଏଠାକାର ଅଧିବାସୀମାନଙ୍କୁ ଉପଦେଶ ପ୍ରଦାନାର୍ଥେ ଏଠାରେ ପ୍ରବେଶ କରିଥିବାର ଶୁଣାଯାଏ ।

ଏଠାରୁ କୋଡ଼ିଏ ଲି ଦକ୍ଷିଣର ପର୍ବତ ଓ ନଦୀ ଅତିକ୍ରମ କରି ସେ ନ-କୀ-ଲୋ-ହୋ (ନଗରହାର) ଦେଶରେ ଉପନୀତ ହେଲେ । ରାଜଧାନୀର ଦୁଇ ଲି ଦକ୍ଷିଣ-ପୂର୍ବରେ ଅଶୋକଙ୍କ ଦ୍ୱାରା ନିର୍ମିତ ତିନିଶତ ଫୁଟର ଏକ ଉଚ୍ଚ ସ୍ତୂପ ଏଠାରେ ରହିଛି । ଶୁଣାଯାଏ- "ଏହି ସ୍ଥାନରେ ଶାକ୍ୟ ବୋଧିସତ୍ତ୍ୱ ଦୀପାଙ୍କର ବୁଦ୍ଧଙ୍କ ସହିତ ଦ୍ୱିତୀୟ ଅସଂଖ୍ୟ ବର୍ଷରେ ସାକ୍ଷାତ୍ କରିଥିଲେ ଏବଂ ଅଜିନ୍ ପରିଧାନ ଓ ଜଟା ବନ୍ଧନ କରି ବୁଦ୍ଧତ୍ୱ ପ୍ରାପ୍ତି ବିଷୟରେ ନିଶ୍ଚିତ ଦୈବବାଣୀ ପ୍ରାପ୍ତ ହୋଇଥିଲେ । ସେହିଦିନଠାରୁ ବହୁ କଳ୍ପ ଅତୀତ ହୋଇଅଛି । ତଥାପି ଏହି ଘଟଣାର ସଙ୍କେତ ଅଦ୍ୟାପି ବିଦ୍ୟମାନ ରହିଅଛି ।" (ପୃ-୮୧) ହୁଏନ୍ ସାଂ ଏଠାରେ ବୋଧିଦ୍ରୁମର ଏକ ପ୍ରତିକୃତି ଗ୍ରହଣ କରିଥିଲେ । ତାଙ୍କ ସହିତ ଥିବା ଶ୍ରମଣ ଦ୍ୱୟ ମଧ୍ୟରୁ ଜଣେ ବୁଦ୍ଧଙ୍କର ଓ ଅନ୍ୟଜଣେ ଗୋଟିଏ ପଦ୍ମର ପ୍ରତିକୃତି ଗ୍ରହଣ କଲେ । ଏଠାରେ ପଦ୍ମ ପତ୍ରାକୃତି ଅନ୍ୟ ଏକ ସ୍ତୂପରେ ବୁଦ୍ଧଙ୍କ ମସ୍ତକ ଅଗ୍ରର ଅପର ଅସ୍ଥି ଏବଂ ଚକ୍ଷୁର ଗୋଲକ ଦ୍ୱୟ ରଖାଯାଇଥିଲା ଓ ସମ୍ମୁଖରେ ବୁଦ୍ଧଙ୍କ ସୂକ୍ଷ୍ମ ପଟ୍ଟବସ୍ତ୍ର ନିର୍ମିତ ପରିଚ୍ଛଦ ଏବଂ ଦଣ୍ଡ ସଂରକ୍ଷିତ ଥିଲା । ଏ ପ୍ରକାର ଭକ୍ତିପୂର୍ଣ୍ଣ ଉପାସନାର ସୁଯୋଗ ଲାଭ କରିଥିବାରୁ ହୁଏନ୍ ସାଂ ୫୦ ଖଣ୍ଡ ସ୍ୱର୍ଣ୍ଣ, ଏକ ସହସ୍ର ଖଣ୍ଡ ରୌପ୍ୟ, ୪ ଖଣ୍ଡ ରେଶମ ଧ୍ୱଜ, ୨ଖଣ୍ଡ କାରୁକାର୍ଯ୍ୟବିଶିଷ୍ଟ ରେଶମ ବସ୍ତ୍ର ଓ ୨ ଖଣ୍ଡ ସନ୍ନ୍ୟାସୀ ପରିଚ୍ଛଦ ଦେଇ ପ୍ରଣିପାତପୂର୍ବକ ସେ ସ୍ଥାନରୁ ପ୍ରସ୍ଥାନ କଲେ । (ପୃ-୮୩)

ଯାତ୍ରା ସମୟରେ ହୁଏନ୍ ସାଂ ଶୁଣିବାକୁ ପାଇଲେ ଦୀପାଙ୍କର ନଗରର କୋଡ଼ିଏ ଲି ଦକ୍ଷିଣ - ପଶ୍ଚିମର ଏକ ଗୁମ୍ଫାରେ ନାଗରାଜ ଗୋପାଳ ଅବସ୍ଥାନ କରୁଛନ୍ତି । ପୂର୍ବେ ବୁଦ୍ଧ ଏହି ନାଗରାଜଙ୍କୁ ପାଳନ କରୁଥିଲେ ଏବଂ ଗୁମ୍ଫାରେ ରହିବାକୁ ତାଙ୍କୁ ଛାୟାଦାନ କରୁଥିଲେ । ହୁଏନ୍ ସାଂ ତାଙ୍କୁ ପୂଜା କରିବାକୁ ଚାହୁଁଥିଲେ; ମାତ୍ର ଶୁଣିଲେ ସେଠାକୁ ଯିବାର ପଥ ବିପଦ ସଙ୍କୁଳ ଓ ଦସ୍ୟୁମାନଙ୍କ ଦ୍ୱାରା ଅଧିକୃତ । ସେଠାକାର ମଠାଧିବାସୀ ମଧ ଯିବା ନିମିତ୍ତ ବାରଣ କଲେ । ତେବେ ସମସ୍ତ ବାରଣ ସତ୍ତ୍ୱେ ଜଣେ ବୃଦ୍ଧଙ୍କ ସହିତ ଯିବା ସମୟରେ ପାଞ୍ଚ ଜଣ ଦସ୍ୟୁ ତାଙ୍କ ପଥ ଅବରୋଧ କଲେ ଏବଂ ତାଙ୍କର ସତ୍ ଉଦ୍ଦେଶ୍ୟ ଜାଣିବା ପରେ ପଥ ଛାଡ଼ିଦେଲେ । ହୁଏନ୍ ସାଂ ଗୁମ୍ଫା ମଧ୍ୟରେ ପ୍ରବେଶ କରି ସିଂ-କ୍ୱାଂ ଓ ଅନ୍ୟାନ୍ୟ ସୂତ୍ର ତଥା ବୁଦ୍ଧଙ୍କ ଗାଥାସମୂହ ଆବୃତ୍ତି କରି ପ୍ରମାଣ କଲେ ଏବଂ ପୂର୍ବ ପାର୍ଶ୍ୱସ୍ଥ ପ୍ରାଚୀର ଗାତ୍ରରେ ଗୋଟିଏ ବୃହତ୍ ମଣ୍ଡଳାକାର ଜ୍ୟୋତି ଦର୍ଶନ କଲେ; ମାତ୍ର ତାହା ମୁହୂର୍ତ୍ତକରେ ଅଦୃଶ୍ୟ ହୋଇଗଲା । ଉକ୍ତ ଜ୍ୟୋତିକୁ ବାରମ୍ବାର ଧ୍ୟାନ କରିବାରୁ ହଠାତ୍ ତଥାଗତଙ୍କ ଶୁଭ୍ରୋଜ୍ଜ୍ୱଳ ପ୍ରତିବିମ୍ବ ପ୍ରାଚୀର ଗାତ୍ରରେ ଉଦ୍ଭୂତ ହେଲା, ଯାହାଙ୍କ ମୁଖମଣ୍ଡଳ ସ୍ୱର୍ଗୀୟ ଜ୍ୟୋତିରେ ଉଦ୍ଭାସିତ ହେଉଥିଲା । ବୁଦ୍ଧଙ୍କ ଶରୀର ପୀତ ଓ ରକ୍ତବର୍ଣ୍ଣ କଷାୟ ବସ୍ତ୍ରରେ ଶୋଭିତ ଥିଲା । ପ୍ରତିବିମ୍ବର ଦକ୍ଷିଣ, ବାମ ଏବଂ ପଛ ଭାଗରେ ବୋଧିସତ୍ତ୍ୱ ଓ ପବିତ୍ର ସନ୍ନ୍ୟାସିଗଣଙ୍କ ପ୍ରତିବିମ୍ବ ବେଷ୍ଟନ କରି ରହିଥିଲା । ସେ ଗୁମ୍ଫାରୁ ବାହାରିବା ମାତ୍ରେ ସେହି ପାଞ୍ଚଜଣ ଦସ୍ୟୁ ନିଜର ଅସ୍ତ୍ର ପରିହାର କରି ତାଙ୍କଠାରୁ ଧର୍ମୋପଦେଶ ଗ୍ରହଣପୂର୍ବକ ପ୍ରସ୍ଥାନ କଲେ ।

ଏହାପରେ ସେ ଗାନ୍ଧାର ଦେଶକୁ ଗଲେ । ଏହି ରାଜ୍ୟ ନାରାୟଣ ଦେବ, ଅସଂଘ ବୋଧିସତ୍ତ୍ୱ, ବସୁବନ୍ଧୁ ବୋଧିସତ୍ତ୍ୱ, ଧର୍ମତ୍ରାତା, ମନୋହୃତ ଓ ପାର୍ଶ୍ୱିକ ଆଦି ଋଷିମାନଙ୍କର ଜନ୍ମସ୍ଥାନ । ରାଜଧାନୀର ୮/୯ ଲି ଦକ୍ଷିଣ ପୂର୍ବରେ ୧୦୦ ଫୁଟ ଉଚ୍ଚ ଏକ ଅଶ୍ୱତ୍ଥ ବୃକ୍ଷ ଥିଲା, ଯାହା ନିମ୍ନରେ ବିଗତ ବୁଦ୍ଧ ଚତୁଷ୍ଟୟ ଉପବେଶନ କରିଥିଲେ । ରାଜା କନିଷ୍କଙ୍କ ଦ୍ୱାରା ନିର୍ମିତ ଏକ ସ୍ତୂପ ବୃକ୍ଷ ସମୀପରେ ଥିଲା । ସ୍ତୂପ ମଧ୍ୟରେ ଦଶ ପେକ୍ ପରିମିତ ବୁଦ୍ଧଙ୍କ ଦେହାବଶେଷ ରକ୍ଷିତ ହୋଇଥିଲା । ନଗର ପୂର୍ବ ପାର୍ଶ୍ୱରେ ଅଶୋକଙ୍କ ଦ୍ୱାରା ନିର୍ମିତ ଏକ ସ୍ତୂପ ରହିଥିଲା । ନଗରର ୪/୫ ଲି ଉତ୍ତରରେ ଆଉ ଏକ ସଂଘାରାମ ଥିଲା, ଯେଉଁଥିରେ ଅଶୋକଙ୍କ ନିର୍ମିତ ୨୦୦ ଫୁଟ ଉଚ୍ଚର ଏକ ସ୍ତୂପ ଥିଲା । ଏହି ସ୍ଥାନରେ ଶାକ୍ୟମୁନି ବୁଦ୍ଧ ତାଙ୍କ ବୋଧିସତ୍ତ୍ୱାବସ୍ଥାରେ ଧର୍ମକାର୍ଯ୍ୟ ସମ୍ପାଦନ କରିଥିଲେ । ଏହାପରେ ସେ ଉଟଖଣ୍ଡ (ଉ-ଟ-କିଆ-ହାଂ-ଚା) ଆଧୁନିକ ନାମ ଓହିଜରେ ପ୍ରବେଶ କରି ତତ୍ପରେ ସେ ଉଦ୍ୟାନ (ଉ-ଚାଂ-ନ) ଦେଶରେ ପ୍ରବେଶ କଲେ । ପୂର୍ବେ ଶୁଭବାସ୍ତୁ (ଶୁ-ପୋ-ସା-ତୁ) ନଦୀ ଉଭୟ ପାର୍ଶ୍ୱରେ ଚଉଦଶହ ସଘାରାମ ମଧ୍ୟରେ ଅଠରଶହ ସନ୍ନ୍ୟାସୀ ବାସ କରୁଥିଲେ । ଏହି ସନ୍ନ୍ୟାସିଗଣ ପଞ୍ଚ ସଂପ୍ରଦାୟଭୁକ୍ତ ଏବଂ ମହାସଂହିକ ନାମରେ ଅଭିହିତ ଥିଲେ । ନଗରର୍

ପୂର୍ବ ପଟରେ ଏକ ବୃହତ୍ ସ୍ତୁପ ଥିଲା । ସେଠାରେ ବୁଦ୍ଧ କୁଶାନ୍ତି ଋଷି ରୂପେ ଜନ୍ମ ଗ୍ରହଣ କରି କଳିରାଜଙ୍କ ଉଦ୍ଦେଶ୍ୟରେ ଶରୀରକୁ ଖଣ୍ଡ ବିଖଣ୍ଡ କରିଥିଲେ ।

ମୁଙ୍ଗଲୀ ନଗରର ପଚାଶ ଲି ପଶ୍ଚିମକୁ ଏକ ନଦୀର ଅପର ପାର୍ଶ୍ୱରେ ରୋହିତଳ (ଲୁ-ହି-ତ-ଳ) ନାମକ ଏକଶତ ଫୁଟ ଉଚ୍ଚର ସ୍ତୁପଟିଏ ଅଶୋକଙ୍କ ସମୟରେ ନିର୍ମିତ ହୋଇଥିଲା । ନଗରୀର ୩୦ ଲି ଉତ୍ତର-ପୂର୍ବକୁ ଅଭୂତ ନାମକ ୩୦ ଫୁଟ ଉଚ୍ଚ ପ୍ରସ୍ତର ସ୍ତୁପ ରହିଛି, ଯାହା ଭୂଗର୍ଭରୁ ସ୍ୱେଚ୍ଛାକ୍ରମେ ଉଦ୍ଭୂତ । ପୂର୍ବେ ବୁଦ୍ଧ ଏଠାରେ ଦେବ ଓ ମାନବଙ୍କ ସକାଶେ ତତ୍ତ୍ୱ ପ୍ରଚାର କରିଥିଲେ । ଉଦ୍ୟାନ ରାଜ୍ୟର ରାଜଧାନୀ ଥିଲା ଦାରିଲ (ତା-ଲି-ଲୋ) । ଏଠାରେ ଏକ ବୃହତ୍ ସଂଘାରାମ ଓ ତା' ନିକଟରେ ମୈତ୍ରେୟ ବୋଧିସତ୍ତ୍ୱଙ୍କ କାଷ୍ଠଖୋଦିତ ମୂର୍ତ୍ତି ରହିଥିଲା । ଏହି ଏକଶତ ଫୁଟ ଉଚ୍ଚ ମୂର୍ତ୍ତି ମାଧାନ୍ତିକଙ୍କ ଦ୍ୱାରା ନିର୍ମିତ । ଉଟଖଣ୍ଡ ନଗରର ଦକ୍ଷିଣରେ ଖରସ୍ରୋତା ସିନ୍- ତୁ (ସିନ୍ଧୁ) ନଦୀ ପ୍ରବାହିତ । ନଦୀର ଅପର ପାର୍ଶ୍ୱରେ ତକ୍ଷଶିଳା (ତ-ଚା-ଶି-ଲୋ) ଅବସ୍ଥିତ । ତକ୍ଷଶିଳାର ୧୨/୧୩ ଲି ଉତ୍ତରକୁ ଅଶୋକଙ୍କ ଦ୍ୱାରା ନିର୍ମିତ ଏକ ସ୍ତୁପରୁ ଅବିରତ ଏକପ୍ରକାର ଅପୂର୍ବ ଜ୍ୟୋତି ନିର୍ଗତ ହେଉଥିଲା ।

ଶୁଣାଯାଏ, ଅତୀତରେ ତଥାଗତ ବୋଧିସତ୍ତ୍ୱଙ୍କ କାର୍ଯ୍ୟ ସଂପାଦନ କରୁଥିବାବେଳେ ଏହି ସ୍ଥାନରେ ନିଜ ମସ୍ତକ ଛେଦନ କରିଥିଲେ ଓ ସେତେବେଳେ ସେ ଚନ୍ଦ୍ରପ୍ରଭା ନାମ ଧାରଣ କରି ରାଜତ୍ୱ କରୁଥିଲେ । ବୋଧିଙ୍କ ପରମଜ୍ଞାନ ଲାଭ ପାଇଁ ସହସ୍ର ଜନ୍ମ ପର୍ଯ୍ୟନ୍ତ ନିଜ ମୁଣ୍ଡ ଛେଦନ କରିଥିଲେ । ଏହି ସ୍ତୁପ ନିକଟରେ ଗୋଟିଏ ସଂଘାରାମ ଥିଲା ଏବଂ ତା'ର ସାତଶହ ଲି ଦକ୍ଷିଣ ପୂର୍ବ ଦିଗକୁ ସିଂହପୁର (ସା-ହୋ-ପୋ-ଲୋ) ରାଜ୍ୟ ଅବସ୍ଥିତ ଥିଲା । ତକ୍ଷଶିଳାର ଉତ୍ତର ସୀମାନ୍ତ ଦକ୍ଷିଣ-ପୂର୍ବ ସିନ୍ଧୁ ନଦୀ ଅତିକ୍ରମ କଲେ ଏକ ପ୍ରସ୍ତରମୟ ଗିରିସଙ୍କଟ ପଡ଼େ, ଯେଉଁଠି ଅତୀତରେ ରାଜକୁମାରରୂପେ ମହାସତ୍ତ୍ୱ କ୍ଷୁଧିତ ବାଘ ଶାବକ ସମ୍ମୁଖରେ ନିଜ ଶରୀର ବିସର୍ଜନ କରିଥିଲେ । ଏଠାରୁ ପଞ୍ଚଶତ ଲି ଦକ୍ଷିଣ ପୂର୍ବକୁ ଗଲେ ଉରଶ (ଉ-ଲା-ଶ) ରାଜ୍ୟ ପଡ଼େ । ଏଠାରୁ ହୁଏନ୍ ସାଂ ଏକ ଏକ ସହସ୍ର ଲି ପର୍ଯ୍ୟନ୍ତ ଲୌହ ସେତୁ ସାହାଯ୍ୟରେ ଉଚ୍ଚ ଗିରିଶୃଙ୍ଗ ଆରୋହଣପୂର୍ବକ କାଶ୍ମୀର ଦେଶରେ ଉପନୀତ ହେଲେ । ଏଠାରେ ପାଞ୍ଚଶତ ମଠରେ ପାଞ୍ଚ ସହସ୍ର ସନ୍ନ୍ୟାସୀ ବାସ କରୁଥିଲେ । ଅଶୋକଙ୍କ ସମୟରେ ଏଠାରେ ଚାରୋଟି ସୁନ୍ଦର ସ୍ତୁପ ନିର୍ମିତ ହୋଇଥିଲା; ଯେଉଁ ସ୍ତୁପରେ ତଥାଗତଙ୍କ ଶରୀରର କିୟଦଂଶ ରକ୍ଷିତ ହୋଇଥିଲା ।

ଏହାପରେ ହୁଏନ୍ ସାଂ କାଶ୍ମୀରରେ ଉପସ୍ଥିତ ହୋଇ ପଶ୍ଚିମ ସୀମାନ୍ତବର୍ତ୍ତୀ ପ୍ରସ୍ତର ନିର୍ମିତ ଦ୍ୱାର ମଧ୍ୟ ଦେଇ ପ୍ରବେଶ ମାତ୍ରେ ରାଜା ତାଙ୍କ ଜନନୀ ଓ କନିଷ୍ଠ ଭ୍ରାତାଙ୍କ ଦ୍ୱାରା ପାଛୋଟି ଆଣିବାକୁ ପଠାଇଥିଲେ । ସେ ସେଠାରେ ବିଭିନ୍ନ ସଂଘାରାମ ପରିଦର୍ଶନ ସହିତ ଉପାସନା କରି ହୁଷ୍କର (ହୁ-ଷେ-କି-ଆ-ଲୋ) ମନ୍ଦିରରେ ରାତ୍ରି ଯାପନ ସମୟରେ ମନ୍ଦିର

ସନ୍ନ୍ୟାସିଗଣ ସ୍ୱପ୍ନରେ ଦେଖିଲେ-ଏକ ସ୍ୱର୍ଗୀୟ ପୁରୁଷ ସେମାନଙ୍କୁ କହୁଛନ୍ତି- "ମହାଚୀନ୍ ଦେଶରୁ ଜଣେ ବିଦେଶୀୟ ସନ୍ନ୍ୟାସୀ ଧର୍ମଶାସ୍ତ୍ର ଅଧ୍ୟୟନ ଓ ଭାରତବର୍ଷର ପବିତ୍ର ସ୍ଥାନସମୂହରେ ବୁଦ୍ଧଙ୍କ ଉପାସନା କରିବା ସକାଶେ ଆସିଅଛନ୍ତି ।" (ପୃ-୯୫-୯୬) ଦିବସ ଉତ୍ତାରେ ହୁଏନ୍ ସାଂ କାଶ୍ମୀର ରାଜଧାନୀର ଏକ ଲି ଦୂରବର୍ତ୍ତୀ ଧର୍ମଶାଳାରେ ଆଶ୍ରୟ ନେଲେ । ମନ୍ତ୍ରୀ, ସନ୍ନ୍ୟାସୀ ଓ ଅନ୍ୟ ଲୋକଙ୍କ ସହ ରାଜା ସ୍ୱୟଂ ଉପସ୍ଥିତ ହୋଇ ତାଙ୍କୁ ଅଭିବାଦନ କଲେ । ତାଙ୍କୁ ହସ୍ତୀପୃଷ୍ଠରେ ନେଇ ଜୟେନ୍ଦ୍ର (ଚେ-ୟେ-ନି-ଟୋ-ଲା) ମଠରେ ଅବସ୍ଥାନ କଲେ । ରାଜା ତାଙ୍କୁ ଶାସ୍ତ୍ରମାନଙ୍କର କଠିନ ତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କରିବାକୁ ଅନୁରୋଧ କରିବାରୁ ସେ ଖୁସି ହେଲେ । ମଠର ଅଧ୍ୟକ୍ଷ ଜଣେ ପ୍ରତିଭାଶାଳୀ, ଆଧ୍ୟାତ୍ମିକ ଶକ୍ତିସଂପନ୍ନ ବ୍ୟକ୍ତି ଥିଲେ । ସେ ହୁଏନ୍ ସାଂଙ୍କୁ ନିମନ୍ତ୍ରଣ କଲେ ଏବଂ ହୁଏନ୍ ସାଂ ବିନୟର ସହିତ ବିଭିନ୍ନ ପ୍ରଶ୍ନ ଜିଜ୍ଞାସା କଲେ । ହୁଏନ୍ ସାଂ ମଧ୍ୟ ସେଠାରେ ବିଭିନ୍ନ ଶାସ୍ତ୍ର ବ୍ୟାଖ୍ୟାନ କଲେ । ତାଙ୍କର ଜ୍ଞାନ, ବୋଧଶକ୍ତି ଦେଖି ଅଧ୍ୟକ୍ଷ ସନ୍ନ୍ୟାସିମଣ୍ଡଳୀଙ୍କୁ କହିଲେ । ଏହାଙ୍କ ସମକକ୍ଷ ଜ୍ଞାନୀ କେହି ନାହାନ୍ତି ସେ ପୁଣ୍ୟ ବଳରେ ବସୁବନ୍ଧୁ ଭ୍ରାତା (ଅସଙ୍ଗ ବୋଧିସତ୍ତ୍ୱ) କୀର୍ତ୍ତି ଅର୍ଜନ କରିବାରେ ଯୋଗ୍ୟ ହେଲେ ହେଁ ବୈଦେଶିକ ହୋଇଥିବାରୁ ଋଷିମାନଙ୍କର ପରମ୍ପରାଗତ ସୌଭାଗ୍ୟ ଭୋଗ କରିବାରେ ଅସମର୍ଥ । ସେଠାରେ ଥିବା ମହାଯାନ ତତ୍ତ୍ୱଜ୍ଞ ବିଶୁଦ୍ଧ ସିଂହ (ପି-ଶୁ-ତ-ସିଂ-ହ) ଓ ଦୀନବନ୍ଧୁ (ଚି-ନ-ଫନ୍-ତୁ) ସର୍ବାସ୍ତିବାଦୀ ମତାଭିଜ୍ଞ ସୁଗତ ମିଶ୍ର (ସୁ-କିଅ-ମି-ତୋ-ଲୋ) ଓ ବସୁମିତ୍ର (ପ-ସୁ-ମି-ତୋ-ଲୋ) ଓ ମହାସଂଘିକ ମତାଲମ୍ବୀ ସୂର୍ଯ୍ୟଦେବ (ସୁ-ଲି-ୟେ-ତି-ଷୋ) ଓ ଦିନତ୍ରାତ (ଚି-ନ-ତ-ଲୋ-ତୋ) ଉପସ୍ଥିତ ଥାଇ ବହୁ କଠିନ ପ୍ରଶ୍ନ ପଚାରିଲେ; କିନ୍ତୁ ହୁଏନ୍ ସାଂ ଯଥାଯଥ ଉତ୍ତର ଦେବାରୁ ସେମାନେ ସଙ୍କୁଚିତ ହୋଇ ରହିଲେ ।

ଅତୀତରେ ଏହି ଦେଶ ନାଗହ୍ରଦ ନାମରେ ଅଭିହିତ ଥିଲା । ଆନନ୍ଦଙ୍କ ଶିଷ୍ୟ ମାଧ୍ୟାନ୍ତିକ ନାଗରାଜାଙ୍କୁ ସ୍ୱମତରେ ଦୀକ୍ଷିତ କରିଥିଲେ । ତଥାଗତଙ୍କ ନିର୍ବାଣପ୍ରାପ୍ତିର ୪୦୦ ବର୍ଷ ପରେ ଗାନ୍ଧାରରାଜ କନିଷ୍କ ପାର୍ଶ୍ୱପଙ୍କ ଅନୁରୋଧ କ୍ରମେ ତ୍ରିପିଟକର ନିଗୂଢ଼ ତତ୍ତ୍ୱଜ୍ଞ ଓ ପଞ୍ଚ ବିଦ୍ୟାର ପ୍ରକାଶ୍ୟ ତତ୍ତ୍ୱଜ୍ଞ ଋଷିମାନଙ୍କର ଏକ ସମ୍ମିଳନୀ ଆହୂତ ହୋଇଥିଲା । ପ୍ରାୟ ପାଞ୍ଚଶତ ଋଷିଙ୍କ ସମ୍ମିଳିତ ସ୍ୱରରେ ତ୍ରିପିଟକ ସୂତ୍ର ଆବୃତ୍ତି ହୋଇଥିଲା । ସୂତ୍ର ତ୍ରିପିଟକର ବ୍ୟାଖ୍ୟା ପାଇଁ ଏକ ଲକ୍ଷ ଶ୍ଳୋକବିଶିଷ୍ଟ ଉପଦେଶ ଶାସ୍ତ୍ର ପ୍ରଣୟନ କରିଥିଲେ । ପୁଣି ବିନୟ ବ୍ୟାଖ୍ୟା ସକାଶେ ଏକଲକ୍ଷ ଶ୍ଳୋକବିଶିଷ୍ଟ ବିନୟ ବିଭାଷା ଶାସ୍ତ୍ର ଓ ସେହି ଏକଲକ୍ଷ ଶ୍ଳୋକବିଶିଷ୍ଟ ଅଭିଧର୍ମ ବିଭାଷା ଶାସ୍ତ୍ର ରଚନା କରିଥିଲେ । ରାଜାଙ୍କ ଆଦେଶରେ ଏହି ଶାସ୍ତ୍ର ତାମ୍ର ଫଳକରେ ଖୋଦିତ ହୋଇ ପ୍ରସ୍ତରାଧାରରେ ରଖାଯାଇ ତା'ର ମୁଖ ମୁଦ୍ରିତ କରାଯିବା ସହିତ ଏକ ବୃହତ୍ ସ୍ତୂପରେ ତା'ର ରକ୍ଷଣାବେକ୍ଷଣ କରାଯାଇଥିଲା । ଏଠାରେ ହୁଏନ୍ ସାଂ ଦୁଇ ବର୍ଷ

ରହି ସୂତ୍ର ଓ ଶାସ୍ତ୍ରାଧ୍ୟୟନ ସହ ପୁଣ୍ୟ କ୍ଷେତ୍ର ଦର୍ଶନ ପରେ ପୁନାକ ଦେଇ ରାଜପୁରୀ ଏବଂ ସେଠାରୁ ଟକ୍କ (ଶେ-କ୍ୟ) ଦେଶରେ ପ୍ରବେଶ କଲେ । ପରେ ସେ ଚନ୍ଦ୍ରଭାଗା ନଦୀ ଅତିକ୍ରମି ଜୟପୁର (ଚେ-ୟେ-ପୁ-ଲୋ)ର ଏକ ମନ୍ଦିରରେ ଅବସ୍ଥାନ ପରେ ସାକଳ (ଚେ-କୀ-ଲୋ) ନଗରରେ ଉପସ୍ଥିତ ହୋଇଥିଲେ । ଏଠାରେ ଏକ ସଂଘାରାମରେ ଏକଶତ ସନ୍ନ୍ୟାସୀ ରହୁଥିଲେ । ପୂର୍ବେ ଏଠାରେ ବସୁବନ୍ଧୁ ବୋଧିସତ୍ତ୍ୱ ଶିଂ-ଇ-ତୌ-ଲୁନ୍ ଶାସ୍ତ୍ର ରଚନା କରିଥିଲେ ।

ଏହାପରେ ହୁଏନ୍ ସାଂ ନରସିଂହ (ନ-ଲ-ସଂ-ହ) ନଗର ପୂର୍ବ ପାର୍ଶ୍ୱସ୍ଥ ପଲାଶ ବନରେ ପ୍ରବେଶ ମାତ୍ରେ ୫୦ ଜଣ ଦସ୍ୟୁଙ୍କ ହାବୁଡ଼ରେ ପଡ଼ିଥିଲେ । ହୁଏନ୍ ସାଂ ତାଙ୍କ ସାଥୀଙ୍କ ସହ ଶୀଘ୍ର ସ୍ଥାନ ପରିତ୍ୟାଗ କରିଥିଲେ ଏବଂ ନିକଟସ୍ଥ ଗ୍ରାମବାସୀମାନଙ୍କ ଦ୍ୱାରା ଦସ୍ୟୁମାନେ ବିତାଡ଼ିତ ହୋଇଥିଲେ । ଏହାପରେ ସେ ଟକ୍କ (ଚେ-କ) ରାଜ୍ୟର ପୂର୍ବ ସୀମାନ୍ତ ଦେଇ ଏକ ନଗରୀରେ ପ୍ରବେଶ କଲେ । ନଗରର ପଶ୍ଚିମ ପାର୍ଶ୍ୱସ୍ଥ ଆମଡ଼ା ବନରେ ଜଣେ ସାତ ଶହ (କେହି କେହି କୁହନ୍ତି ୧୭୦ ବର୍ଷ) ବର୍ଷର ବ୍ରାହ୍ମଣ ରହୁଥିଲେ । ତାଙ୍କ ଚେହେରା ଦେଖିଲେ ତାଙ୍କୁ ୩୦ ବର୍ଷରୁ ଅଧିକ କହିହେବ ନାହିଁ । ସେ ବେଦ-ବେଦାଙ୍ଗ, ପ୍ରାଣ୍ୟମୂଳ ଓ ଶତଶାସ୍ତ୍ର ଗବେଷଣାରେ ପାରଦର୍ଶିତା ଲାଭ କରିଥିଲେ । ହୁଏନ୍ ସାଂ ତାଙ୍କର ଆତିଥ୍ୟ ଲାଭ କରିଥିଲେ । ତତ୍ପରେ ସେ ଚିନାପତି ରାଜ୍ୟର ତୁକ୍ଷେଷଣ ମଠରେ ୧୪ ମାସ ଅବସ୍ଥାନ କରି ଅଭିଧର୍ମଶାସ୍ତ୍ର, ଅଭିଧର୍ମ ପ୍ରକରଣ, ଶାସନଶାସ୍ତ୍ର, ନ୍ୟାୟଦ୍ୱାର ତା'ରକାଦି ଶାସ୍ତ୍ର ଅଧ୍ୟୟନ ପରେ ମଥୁରାକୁ ଯାଇଥିଲେ, ଯେଉଁଠି ଉପଗୁପ୍ତ ସଂଘାରାମ ସ୍ଥାପନ କରିଥିଲେ । ଏଠାରେ ମଧ ତଥାଗତ, ତାଙ୍କ ଶିଷ୍ୟ ସାରିପୁତ୍ର, ମୌଦ୍‌ଗଲ୍ୟାୟନ, ଉପାଳି, ଆନନ୍ଦ, ରାହୁଲ ଆଦିଙ୍କ ଦେହାବଶେଷ ସ୍ତୂପ ମଧ୍ୟରେ ରଖାଯାଇଥିଲା । ସେ ତାହା ଦର୍ଶନ କରି ଗଙ୍ଗାନଦୀ କୂଳରେ ଅବସ୍ଥିତ ସ୍ଥାନେଶ୍ୱର ଓ ଶ୍ରୁଘ୍ନକୁ ଆସି ସେଠାରେ ଅବସ୍ଥାନ କରୁଥିବା ଜୟଗୁପ୍ତଙ୍କ ଠାରୁ ସୌତ୍ରାନ୍ତିକ ମତାନୁଯାୟୀ ବିଭାଷାର ବ୍ୟାଖ୍ୟାନ ଶୁଣିଥିଲେ । ପରେ ସେ ମତିପୁର ଯାଇ ସେଠାରେ ଅବସ୍ଥିତ ସଂଘାରାମରେ ବସବାସ କରୁଥିବା ସର୍ବାସ୍ତିବାଦୀ ହୀନଯାନ ଅଧ୍ୟୟନ କରୁଥିବା ସନ୍ନ୍ୟାସୀଙ୍କୁ ଭେଟିଥିଲେ । ତତ୍ପରେ ସେ କାନ୍ୟକୁବ୍‌ଜ ଯାଇଥିଲେ । ଏଠାର ରାଜା ହର୍ଷବର୍ଦ୍ଧନଙ୍କ ଧର୍ମ ଓ ସ୍ୱଦେଶପ୍ରାଣତା ସମ୍ପର୍କରେ ହୁଏନ୍ ସାଂ ଅନେକ କଥା ସୂଚନା ଦେଇଛନ୍ତି । ସେ ଆମିଷ ଓ ସାମରିକ ଅଭିଯାନ ତ୍ୟାଗକରି କିପରି ଶୀଳାଦିତ୍ୟ ହର୍ଷବର୍ଦ୍ଧନରେ ପରିଣତ ହୋଇଥିଲେ ଓ ଅନେକ ସଂଘାରାମ ସ୍ଥାପନ କରିଥିଲେ ସେ ବିଷୟରେ ଆଲୋକପାତ କରି କନୌଜର ଭଦ୍ରବିହାର ମନ୍ଦିରରେ ଆଶ୍ରୟ ନେଇଥିଲେ ।

**ତୃତୀୟ ଖଣ୍ଡ: ଅଯୋଧ୍ୟାରୁ ହିରଣ୍ୟ ପର୍ବତ ଯାତ୍ରା:-** ହୁଏନ୍ ସାଂ କନୌଜରୁ ଅଯୋଧ୍ୟା ଯାଇଥିଲେ । ଏହାର ରାଜଧାନୀରେ ଏକ ପ୍ରାଚୀନ ସଂଘାରାମ ଥିଲା, ଯେଉଁଠି ବୋଧିସତ୍ତ୍ୱ ବସୁବନ୍ଧୁ ହୀନଯାନ ଓ ମହାଯାନ ଭାଷ୍ୟ ପ୍ରଣୟନ କରିଥିଲେ । ଅତୀତରେ

ଏଠାରେ ଅସଂଘ ବୋଧିସତ୍ତ୍ୱ ରାତିରେ ତୁଷିତ ସ୍ୱର୍ଗକୁ ଯାଇ ସେଠାରେ ମୈତ୍ରେୟ ବୋଧିସତ୍ତ୍ୱଙ୍କ ଠାରୁ କିପରି ଯୋଗଶାସ୍ତ୍ର, ଅଳଙ୍କାର ମହାଯାନ ଶାସ୍ତ୍ର ଓ ମଧ୍ୟାନ୍ତ ବିଭଙ୍ଗ ଶାସ୍ତ୍ର ପ୍ରାପ୍ତ ହୋଇ ପ୍ରାତଃରେ ସ୍ୱର୍ଗରୁ ଅବତରଣ କରି ମାନବ ସମାଜର ମଙ୍ଗଳ ନିମିତ୍ତ ପ୍ରଚାର କରୁଥିଲେ, ସେ ବିଷୟରେ ସୂଚନା ଦେଇଛନ୍ତି । ଏହାପରେ ସେ ଅଯୋଧ୍ୟା ପରିତ୍ୟାଗ କରି ନୌକା ଯୋଗେ ନଦୀପାର ସମୟରେ ଜଳଦସ୍ୟୁଙ୍କ କବଳରେ ପଡ଼ିଥିଲେ ଏବଂ ସେମାନେ ତାଙ୍କୁ ଦୁର୍ଗାଙ୍କ ନିକଟକୁ ବଳି ଦେବାକୁ ନେଇଥିଲେ । ହୁଏନ୍ ସାଂ ସ୍ଥିର ଚିତ୍ତରେ ରହିବା ସହିତ ମୃତ୍ୟୁପରେ ପୁନଃ ଜନ୍ମଗ୍ରହଣ କରି ଦସ୍ୟୁଙ୍କୁ ଧର୍ମମାର୍ଗରେ ଦୀକ୍ଷିତ କରିବା ନିମିତ୍ତ ବୋଧିସତ୍ତ୍ୱ ମୈତ୍ରେୟଙ୍କୁ ଧ୍ୟାନ କରି କହିଥିଲେ । ସେ ଦଶଦିଗପାଳଙ୍କୁ ଧ୍ୟାନ କରିବା ମାତ୍ରେ ନୌକା ଇତସ୍ତତଃ ବିକ୍ଷିପ୍ତ ହେଲା । ଦସ୍ୟୁମାନେ ଭୟଭୀତ ହୋଇ ହୁଏନ୍ ସାଂଙ୍କର ଶରଣାପନ୍ନପୂର୍ବକ ବୌଦ୍ଧଧର୍ମ ଗ୍ରହଣ କରିବାକୁ ଅଙ୍ଗୀକାର କଲେ । ପରେ ନୌକା ସ୍ଥିର ହୋଇଥିଲା । ଏହାପରେ ସେ ହୟ ମୁଖ (ଅ-ୟ-ମୁ-ଖି)ରେ ପହଞ୍ଚି ଏଠାରେ ଥିବା ସଂଘାରାମ ଓ ସ୍ତୂପ ଦେଖିଥିଲେ । ଏହାପରେ ବୁଦ୍ଧଦେବ ଯେଉଁଠାରେ ସ୍ୱର୍ଗାରୋହଣ କରିଥିଲେ, ସେହି ଶ୍ରାବସ୍ତୀରେ ପ୍ରବେଶ କଲେ । ପ୍ରସଙ୍ଗ କ୍ରମେ ଜଣେ ଧର୍ମ ବିରୋଧୀ ବ୍ରହ୍ମଚାରୀ ଗୋଟିଏ ସ୍ତ୍ରୀ ଲୋକକୁ ହତ୍ୟାକରି ବୁଦ୍ଧଙ୍କୁ କିପରି ହତ୍ୟା ଅପରାଧରେ ଅଭିଯୁକ୍ତ କରିଥିଲେ, ତା'ର ସୂଚନା ଦିଆଯାଇଛି । ଯେଉଁ ମଠ ପଛରେ ଧର୍ମ ବିରୋଧୀ ବ୍ରହ୍ମଚାରୀ ସ୍ତ୍ରୀଟିକୁ ହତ୍ୟାକରି ବୁଦ୍ଧଙ୍କୁ ଅଭିଯୁକ୍ତ କରିଥିଲେ, ତା'ର ଏକଶହ ପାଦ ପୂର୍ବକୁ ଗୋଟିଏ ଗର୍ତ୍ତ ଥିଲା, ଯେଉଁଠି ଦେବଦତ୍ତ ବୁଦ୍ଧଙ୍କୁ ବିଷ ପ୍ରଦାନ କରିବାକୁ ଚେଷ୍ଟା କରି ସଶରୀରେ ନର୍କଗାମୀ ହୋଇଥିଲେ । ଏହାର ଦକ୍ଷିଣକୁ ଏକ ବଡ଼ ସଂଘାରାମ ଥିଲା, ଯେଉଁଠି ବୁଦ୍ଧ ଧର୍ମ ବିରୋଧୀମାନଙ୍କ ସହ ଶାସ୍ତ୍ରାଲୋଚନା କରୁଥିଲେ । ଏହାର ପୂର୍ବ ଦିଗରେ ସେହି ବିହାର ସମଆକୃତି ବିଶିଷ୍ଟ ଦେବ ମନ୍ଦିର ଥିଲା । ରାଜଧାନୀର ୬୦ ଲି. ପୂର୍ବରେ ଗୋଟିଏ ସ୍ତୂପ ଥିଲା ସାରିପୁତ୍ର ଏଠାରେ ଧର୍ମ ବିଶାରଦଙ୍କ ସହିତ ଶାସ୍ତ୍ର ଆଲୋଚନା କରୁଥିଲେ । ନଗରର ଉଭୟ ପାର୍ଶ୍ୱରେ ଥିବା ପ୍ରାସାଦରେ କାଶ୍ୟପ ବୁଦ୍ଧଙ୍କ ସମଗ୍ର ଦେହାବଶେଷ ସଂରକ୍ଷିତ ଥିଲା ।

ଏହାର ୮୦୦ ଲି ଦକ୍ଷିଣ ପୂର୍ବକୁ କପିଳବାସ୍ତୁ ରାଜ୍ୟ । ବୁଦ୍ଧଦେବଙ୍କ ଜନ୍ମ ସମ୍ପର୍କୀୟ କିମ୍ବଦନ୍ତୀ ବିଷୟରେ ଏହି ପର୍ଯ୍ୟାୟରେ ସୂଚନା ପ୍ରଦାନ କରାଯାଇଛି । ଏହାର ଉତ୍ତର-ପୂର୍ବରେ ଥିବା ସ୍ତୂପରେ ଅସିତ ଋଷି ଯୁବରାଜ ଶାକ୍ୟସିଂହଙ୍କ ଜନ୍ମ ପତ୍ରିକା ବିଚାର କରିଥିଲେ । ନଗରର ଦକ୍ଷିଣ ପୂର୍ବ ପାର୍ଶ୍ୱସ୍ଥ କୌଣସି ସ୍ଥାନରେ ଯୁବରାଜ ଶାକ୍ୟବଂଶୀ ଯୁବକଙ୍କ ସହିତ ମଲ୍ଲକ୍ରୀଡ଼ାରେ ପ୍ରବୃତ୍ତ ରହୁଥିଲେ । ଏହାର ସମୀପସ୍ଥ ଏକ ସ୍ଥାନରେ ସେ ଗୃହ ତ୍ୟାଗପୂର୍ବକ ଅଶ୍ୱପୃଷ୍ଠରେ ନଗରରୁ ଚାଲିଯାଇଥିଲେ । ଏଠାରେ ଶ୍ରମଣମାନଙ୍କର ଏକ ମଠ ଥିଲା ଓ ମଠର ଏକଶତ ଲି ପୂର୍ବକୁ ନିବିଡ଼ ଅରଣ୍ୟ । ଅରଣ୍ୟ ଅତିକ୍ରମ କଲେ କୁଶୀନଗର । ଅତୀତରେ

ନଗରର ଉତ୍ତର-ପୂର୍ବ କୋଣରେ ଚନ୍ଦଙ୍କ ପ୍ରାଚୀନ ଗୃହର ଭିତ୍ତି ଉପରେ ଅଶୋକଙ୍କ ଦ୍ୱାରା ନିର୍ମିତ ସ୍ତୂପଟିଏ ଥିଲା । ନଗରର ଦକ୍ଷିଣ-ପଶ୍ଚିମରେ ଅଜିତାବତୀ ନଦୀ ପ୍ରବାହିତ ଓ ତା'ନିକଟରେ ଯେଉଁ ଶାଳବନ ଥିଲା, ସେଠାରେ ବୁଦ୍ଧ ଦେହତ୍ୟାଗ କରିଥିଲେ । ଏଠାରେ ଇଷ୍ଟ ନିର୍ମିତ ବିହାରରେ ନିର୍ବାଣ ପ୍ରାପ୍ତ ତଥାଗତଙ୍କ ମୂର୍ତ୍ତି ବିଦ୍ୟମାନ ଥିଲା ।

ଏଠାରୁ ନିବିଡ଼ ଅରଣ୍ୟ ମଧ୍ୟ ଦେଇ ହୁଏନ୍ ସାଂ ବାରାଣସୀରେ ପହଞ୍ଚିଲେ । ଏଠାକାର ରାଜଧାନୀରେ ଥିବା ସଂଘାରାମରେ ଦୁଇ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏଠାରୁ ବରୁଣା ନଦୀ ପାର ହୋଇ ଉତ୍ତର-ପୂର୍ବରେ ମୃଗ ମରୁଭୂମି ସଂଘାରାମ ଥିଲା । ସେଥିରେ ପଞ୍ଚଦଶ ସହସ୍ର ସନ୍ନ୍ୟାସୀ ରହି ସମ୍ମତୀୟ ମତାବଲମ୍ବୀମାନଙ୍କ ଶିକ୍ଷାନୁଯାୟୀ ହୀନଯାନ ଅଧ୍ୟୟନ କରୁଥିଲେ । ସଂଘାରାମ ପ୍ରାଙ୍ଗଣରେ ଏକଶହ ଫୁଟ ଉଚ୍ଚ ବିହାର ଥିଲା, ଯା'ର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ଅଶୋକଙ୍କ ଦ୍ୱାରା ନିର୍ମିତ ୧୦୦ ଫୁଟ ଉଚ୍ଚ ପ୍ରସ୍ତର ସ୍ତୂପ ଓ ତା' ସମ୍ମୁଖରେ ୭୦ ଫୁଟ ଉଚ୍ଚ ପ୍ରସ୍ତର ସ୍ତମ୍ଭ ଥିଲା । ଏହି ସ୍ଥାନରେ ବୁଦ୍ଧ ପ୍ରଥମେ ଧର୍ମପ୍ରଚାର ଆରମ୍ଭ କରିଥିଲେ । ଏହାର ପଶ୍ଚିମରେ ଥିବା ସ୍ତୂପ ସ୍ଥାନରେ ବୁଦ୍ଧ ଭଦ୍ରକଳ୍ପ ମଧ୍ୟରେ ପ୍ରଭାପାଳ ବୋଧିସତ୍ତ୍ୱ ରୂପେ ଜନ୍ମ ନେଇଥିଲେ । କାଶ୍ୟପ ମଧ୍ୟ ବୁଦ୍ଧରୂପେ ଏଠାରେ ଭବିଷ୍ୟତ ବାଣୀ ପ୍ରାପ୍ତ ହୋଇଥିଲେ । ଏହାର ପଶ୍ଚିମରେ ଥିବା ଜଳାଶୟରେ ବୁଦ୍ଧ ଭିକ୍ଷାପାତ୍ର ଓ ବସ୍ତ୍ର ଧୋଉଥିଲେ । ଏହି ସ୍ଥାନରୁ ହୁଏନ୍ ସାଂ ଗଙ୍ଗାନଦୀ ପଥରେ ପୂର୍ବକୁ ଗମନ କରି ଚେଂଚୁ (ଗାଜିପୁର)ରେ ଓ ସେଠାରୁ ଉତ୍ତରପୂର୍ବକୁ ୧୫୦ ଲି ପଥ ଅତିକ୍ରମି ଗଙ୍ଗାନଦୀ ଅପର ପାର୍ଶ୍ୱରେ ବୈଶାଳୀ ରାଜ୍ୟରେ ପହଞ୍ଚିଲେ । 'ପ୍ରାଚୀନ ରାଜପ୍ରାସାଦର ୫/୬ ଲି ଉତ୍ତର-ପଶ୍ଚିମକୁ ଏକ ସଂଘାରାମ ଓ ତତ୍ ପାର୍ଶ୍ୱରେ ଥିବା ସ୍ତୂପରେ ବୁଦ୍ଧ ସର୍ବଦା ବିମଳ କୀର୍ତ୍ତିସୂତ୍ର ଆବୃତ୍ତି କରୁଥିଲେ ।

ବୈଶାଳୀର ଦକ୍ଷିଣସୀମା ଅତିକ୍ରମ କରି ଗଙ୍ଗାନଦୀ ପଥରେ ୧୦୦ ଲି ଗଲେ ଶ୍ୱେତପୁର ନଗର, ଯେଉଁଠି ହୁଏନ୍ ସାଂ ବୋଧିସତ୍ତ୍ୱ ପାଟକ ସୂତ୍ର ପାଇଥିଲେ । ଏହାର ଦକ୍ଷିଣରେ ଗଙ୍ଗାନଦୀ ପାର ହେଲେ ମଗଧ ରାଜ୍ୟ । ଏହି ନଗରୀର ଅଧିବାସୀ ବିଦ୍ୱାନ ଓ ଧର୍ମ ପରାୟଣ । ଏଠାରେ ପ୍ରାୟ ୫୦ଟି ସଂଘାରାମ ଥିଲା, ଯେଉଁଠି ମହାଯାନବଲମ୍ବୀ ଦଶ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏଠାରେ ପ୍ରଚୁର ପାଟଳୀ ବୃକ୍ଷ ଥିବାରୁ ତାହା ପାଟଳୀପୁତ୍ର ନାମରେ ଅଭିହିତ ହୋଇଥିଲା । ଗଙ୍ଗାକୂଳବର୍ତ୍ତୀ ରାଜପ୍ରାସାଦର ଉତ୍ତର ପାର୍ଶ୍ୱ ଛୋଟ ସହରରେ ଏକ ସହସ୍ର ବାସଗୃହ ଥିଲା । ଏଠାରେ ଅଶୋକ ନରକ (ପୀଡ଼ନ ଭୂମି) ନିର୍ମାଣ କରିଥିଲେ । ଏହା ନିକଟରେ ଗୋଟିଏ ସ୍ତୂପ ଓ ତା' ନିକଟରେ ଏକ ବିହାର ଥିଲା । ବିହାରର ଉତ୍ତର ପାର୍ଶ୍ୱରେ ୩୦ ଫୁଟ ଉଚ୍ଚ ସ୍ତମ୍ଭ ରହିଥିଲା, ଯେଉଁଥିରେ ଲେଖା ହୋଇଥିଲା- 'ଅଶୋକ ନରପତି ବୁଦ୍ଧଧର୍ମ ଓ ସଂଘକୁ ତିନିବାର ସମଗ୍ର ଜମ୍ବୁଦ୍ୱୀପ ଦାନ କରି ତିନିବାର ଧନରତ୍ନ ସହ ତାହା ପୁନର୍ଗ୍ରହଣ କରିଥିଲେ । ଏହି ସ୍ଥାନର ଦକ୍ଷିଣ-ପଶ୍ଚିମ ଦିଗରେ ୬/୭

ଯୋଜନ ପଥ ଅତିକ୍ରମ କରି ହୁଏନ୍ ସାଂ ତିଲଡକ ମଠରେ ପହଞ୍ଚିଥିଲେ, ଯେଉଁଠି ବହୁ ସଂଖ୍ୟକ ତ୍ରିପଟକଜ୍ଞ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ହୁଏନ୍ ସାଂଙ୍କ ଆଗମନ ଶୁଣି ସେମାନେ ସାକ୍ଷାତ ପାଇଁ ଆସିଲେ । ଏହାର ଏକ ଶତ ଲି ଦକ୍ଷିଣକୁ ବୋଧିଦ୍ରୁମ ବିଦ୍ୟମାନ । ଏହି ଦ୍ରୁମ ଉଚ୍ଚ ଓ ସୁଦୃଢ଼ ଇଟା ପ୍ରାଚୀର ଦ୍ୱାରା ସଂରକ୍ଷିତ । ଏହାର ପ୍ରଧାନ ଦ୍ୱାର ପୂର୍ବମୁଖରେ ନିରଞ୍ଜନା ନଦୀ ଆଡ଼କୁ ମୁଖ କରିଥିଲା । ଉତ୍ତର ଦ୍ୱାର ସମ୍ମୁଖରେ ବିରାଟ ସଂଘାରାମ ଥିଲା । ବୋଧିଦ୍ରୁମ ଅଶ୍ୱତ୍ଥ ବୃକ୍ଷର ନାମାନ୍ତର । ବୁଦ୍ଧଙ୍କ ଜୀବିତାବସ୍ଥାରେ ଏହା ବହୁ ଶତ ଫୁଟ ଉଚ୍ଚଥିଲା । ଏହି ଦ୍ରୁମତଳେ ବସି ବୁଦ୍ଧ ଅନୁତ୍ତର (ସଂପୂର୍ଣ୍ଣ) ବୋଧିଲାଭ କରିଥିବାରୁ ଏହାର ନାମ ବୋଧିଦ୍ରୁମ । ଏଠାରେ ହୁଏନ୍ ସାଂ ପୂଜାର୍ଚ୍ଚନା କରିବାପରେ ପ୍ରତ୍ୟାବର୍ତ୍ତନ କରିଥିଲେ ।

ସେଠାରୁ ହୁଏନ୍ ସାଂ ନାଳନ୍ଦମଠକୁ ଯାଇ ଶୀଳଭଦ୍ରଙ୍କୁ ଦର୍ଶନ ଓ ପ୍ରଣାମ କରିଥିଲେ । ସେ ଶୀଳଭଦ୍ରଙ୍କ ରୋଗ ଓ ପୀଡ଼ା ସମ୍ପର୍କରେ ବୁଦ୍ଧଭଦ୍ରଙ୍କ ଠାରୁ ଜାଣିବାକୁ ପାଇଲେ । ଏକଦା ରୋଗକଷ୍ଟରୁ ଉଦ୍ଧାର ପାଇବା ପାଇଁ ଅନଶନ କରି ପ୍ରାଣ ବିସର୍ଜନ କରିବାକୁ ସିଦ୍ଧାନ୍ତ ନେଇଥିବା ସମୟରେ ସ୍ୱପ୍ନରେ ଅବଲୋକିତେଶ୍ୱର, ମୈତ୍ରେୟ ବୋଧିସତ୍ତ୍ୱ, ମଞ୍ଜୁଶ୍ରୀ ବୋଧିସତ୍ତ୍ୱ ଆସି ତାଙ୍କୁ ଧର୍ମତତ୍ତ୍ୱ କାୟ-ମନ-ବାକ୍ୟରେ ପ୍ରଚାର କରିବାକୁ କହିଲେ । ସେମାନଙ୍କ ଶାସ୍ତ୍ରାଲୋଚନା, ଧର୍ମତତ୍ତ୍ୱ, ଯୋଗଶାସ୍ତ୍ର ଶୁଣି ସେ କଷ୍ଟରୁ ମୁକ୍ତି ପାଇଥିଲେ । ହୁଏନ୍ ସାଂ ଶୀଳଭଦ୍ରଙ୍କୁ ଗୁରୁରୂପେ ଗ୍ରହଣ କରି ଧର୍ମତତ୍ତ୍ୱ ଶିକ୍ଷା କରିଥିଲେ । ସେତେବେଳେ ନାଳନ୍ଦ ମଠକୁ 'ସଦାବ୍ରତ ମଠ' କୁହାଯାଉଥିଲା । ଜନଶ୍ରୁତି ରହିଛି ଏହି ମଠ ଦକ୍ଷିଣ ପାର୍ଶ୍ୱ ଆମ୍ର ଉଦ୍ୟାନରେ ଥିବା ଜଳାଶୟରେ ନାଳନ୍ଦ ନାମଧେୟ ନାଗ ବାସ କରୁଥିଲା । ତା' ନାମାନୁସାରେ ମଠର ନାମକରଣ ହୋଇଛି । ପୁଣି ପ୍ରବାଦ ଅଛି, ତଥାଗତ ବୋଧିସତ୍ତ୍ୱ ଅବସ୍ଥାରେ ବି ରାଜା ଥିଲେ ଓ ଏଠାରେ ରାଜଧାନୀ ନିର୍ମାଣ କରି ଅନାଥମାନଙ୍କୁ ତାଙ୍କର ସମସ୍ତ ଧନ ବିତରଣ କରିଥିବାରୁ ସ୍ମାରକ ସ୍ୱରୂପ ଏହି ସ୍ଥାନକୁ 'ସଦାବ୍ରତ ମଠ' ଆଖ୍ୟା ଦିଆଯାଇଛି । ଏହାପରେ ନାଳନ୍ଦ ମଠ ସମ୍ପର୍କରେ ରୋଚକ ବର୍ଣ୍ଣନା ପ୍ରଦତ୍ତ ହୋଇଛି । ସେତେବେଳେ ଭାରତବର୍ଷରେ ଅସଂଖ୍ୟ ମଠ ବିଦ୍ୟମାନ ଥିଲେ ହେଁ ବିଶାଳତା ଓ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ନାଳନ୍ଦ ମଠ ଥିଲା ଅତୁଳନୀୟ । ଦଶ ସହସ୍ର ସନ୍ନ୍ୟାସୀ ଏଠାରେ ଅବସ୍ଥାନ କରୁଥିଲେ । ତନ୍ମଧ୍ୟରୁ ଏକ ସହସ୍ର ସନ୍ନ୍ୟାସୀ କୋଡ଼ିଏ ପ୍ରକାର ଶାସ୍ତ୍ର, ପଞ୍ଚଶତ ସନ୍ନ୍ୟାସୀ ତିରିଶ ପ୍ରକାର ଶାସ୍ତ୍ର ଓ ହୁଏନ୍ ସାଂଙ୍କ ସହିତ ଦଶଜଣ ସନ୍ନ୍ୟାସୀ ପଚାଶ ପ୍ରକାର ସୂତ୍ର ଓ ଶାସ୍ତ୍ର ବ୍ୟାଖ୍ୟାନ କରିପାରୁଥିଲେ । କେବଳ ଶୀଳଭଦ୍ର ସମସ୍ତ ପ୍ରକାର ଶାସ୍ତ୍ର ଓ ସୂତ୍ର ଅଧ୍ୟୟନ କରି ଆୟତ୍ତ କରିଥିଲେ ।

ହୁଏନ୍ ସାଂ ନାଳନ୍ଦରେ କିଛିଦିନ ଅବସ୍ଥାନ କରି ରାଜଗୃହକୁ ଯାଇଥିଲେ । ପୁରାତନ ରାଜଗୃହର ନାଥ ଥିଲା କୁଶାଗାରପୁର । ଏହା ମଗଧର କେନ୍ଦ୍ରସ୍ଥଳରେ ଥିଲା । ଏଠାରେ ସୁଗନ୍ଧ କୁଶ ଉତ୍ପନ୍ନ ହେଉଥିବାରୁ ଏହା କୁଶାଗାରପୁର ନାମରେ ପରିଚିତ ଥିଲା । ଏହି ପୁରର ୧୪/୧୫ ଲି ଉତ୍ତର-ପୂର୍ବରେ ଗୃଧ୍ରକୂଟ ପର୍ବତ ଅବସ୍ଥିତ । ଏହା କେତେଗୁଡ଼ିଏ ଶ୍ରେଣୀବଦ୍ଧ ପର୍ବତ । ଏହାର ଉତ୍ତର ପାର୍ଶ୍ୱ ଶୃଙ୍ଗ ଅନ୍ୟ ପର୍ବତଠାରୁ ଉଚ୍ଚ ଏବଂ ଆକାରରେ ଗୃଧ୍ର ସଦୃଶ ତଥା ଶୃଙ୍ଗାଗ୍ର ପ୍ରାସାଦ ଚୂଡ଼ା ତୁଲ୍ୟ ଥିବାରୁ ଏହାକୁ ଗୃଧ୍ରକୂଟ ପର୍ବତ କୁହାଯାଉଥିଲା । ତଥାଗତ ଏଠାରେ ବହୁ ସମୟ ଅତିବାହିତ କରିଥିଲେ । ଏହି ସ୍ଥାନରେ ସେ ସଧର୍ମ୍ମ ପୁଣ୍ଡରୀକ, ମହାପ୍ରାଜ୍ଞ ଓ ଅନ୍ୟାନ୍ୟ ଅସଂଖ୍ୟ ସୂତ୍ର ପ୍ରଣୟନ କରି ପ୍ରଚାର କରିଥିଲେ । ଏହି ପାର୍ବଣ ନଗରର ଏକ ଲି ଉତ୍ତରରେ କଳନ୍ଦସ୍ଥ ବଂଶୋଦ୍ୟାନ ରହିଥିଲା, ଯେଉଁଠି ଅତୀତରେ ବୁଦ୍ଧ ଅନେକ ଥର ଅବସ୍ଥାନ କରି ବିନୟ ଶାସ୍ତ୍ର ପାଳନୀୟ ନିୟମସମୂହ ବିଧିବଦ୍ଧ କରିଥିଲେ । ଏହି ଉଦ୍ୟାନର ୫/୬ ଲି ଦକ୍ଷିଣ ପଶ୍ଚିମକୁ ଏକ ପର୍ବତ ପାର୍ଶ୍ୱରେ ସେହି ଉଦ୍ୟାନ ପରି ଗୋଟିଏ ଉଦ୍ୟାନ ଏବଂ ତହିଁରେ ଗୃହଟିଏ ଥିଲା । ଏଠାରେ ମହାମାନ୍ୟ ମହାକାଶ୍ୟପ ତାଙ୍କର ୯୯୯ ଅର୍ହତଙ୍କ ସହ ବୁଦ୍ଧଙ୍କ ନିର୍ବାଣପ୍ରାପ୍ତି ଉତ୍ତାରେ ସମବେତ ହୋଇ ତ୍ରିପିଟକ ସଂଗ୍ରହ କରିଥିଲେ । ଏଠାରେ ଆନନ୍ଦ ସୂତ୍ର-ପିଟକ ଆବୃତ୍ତି କରିଥିଲେ । ରାଜା ବିମ୍ବିସାର କୁଶାଗାର ପୁରରେ ଅବସ୍ଥାନ ବେଳେ ଏହି ସ୍ଥାନ ବେଶ୍ ଜନାକୀର୍ଣ୍ଣ ଥିଲା । ବାସଗୃହ ପରସ୍ପର ସହିତ ସଂଲଗ୍ନ ହୋଇ ରହିଥିବାରୁ ବାରମ୍ବାର ଗୃହଦାହ ହେଉଥିଲା । ରାଜାଙ୍କ ଆଦେଶ ଥିଲା ଯେଉଁ ଗୃହସ୍ୱାମୀ ଅବହେଳାରୁ ଗୃହଦାହ ହେବ ସେ ଶୀତ ବନରେ ନିର୍ବାସିତ ହେବ । ଶୀତବନ ତତ୍କାଳୀନ ଶ୍ମଶାନ ଭୂମି ଥିଲା । ରାଜପ୍ରାସାଦରେ ଅଗ୍ନି ଲାଗିବାରୁ ରାଜା ଯୁବରାଜଙ୍କ ହାତରେ ଶାସନ ଅର୍ପଣ କରି ଶ୍ମଶାନ ଭୂମିରେ ଅବସ୍ଥାନ ସମୟରେ ବୈଶାଳୀ ନରପତି ତାଙ୍କୁ ବନ୍ଦୀ କରିବାକୁ ଉଦ୍ୟତ ହେଲେ । ପ୍ରହରୀଗଣ ଶ୍ମଶାନ ଆବାସସ୍ଥଳୀ ଦୃଢ଼ ଭାବରେ ରକ୍ଷା କରିଥିଲେ । ଏହି ସ୍ଥାନରେ ରାଜା ସର୍ବପ୍ରଥମେ ଗୃହଦାୟ କରିଥିବାରୁ ତାହା ରାଜଗୃହ ନାମରେ ଅଭିହିତ ହୋଇଥିଲା ।

ରାଜଗୃହର ଦକ୍ଷିଣ-ପଶ୍ଚିମ କୋଣରେ ସ୍ତୂପଟିଏ ରହିଥିଲା । ଏହା ସମୀପସ୍ଥ ସ୍ଥାନରେ ରାହୁଲ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏହାପରେ ହୁଏନ୍ ସାଂ ହଂସମଠ ଆଦି ଦେଖି ନାଳନ୍ଦ ମଠକୁ ଫେରି ଶୀଳଭଦ୍ରଙ୍କ ଠାରୁ ଯୋଗଶାସ୍ତ୍ର ବ୍ୟାଖ୍ୟା ଶୁଣିଥିଲେ । ମଠରେ ଅବସ୍ଥାନ ସମୟରେ ହୁଏନ୍ ସାଂ ଯୋଗଶାସ୍ତ୍ର ବ୍ୟାଖ୍ୟାନ ତିନିଥର, ନ୍ୟାୟାନୁସାର ଶାସ୍ତ୍ର ଥରେ, ହିନ୍-ହିଆଂ-ତୁଇ-ଫା-ମିଂ ଥରେ, ହେତୁବିଦ୍ୟା, ଶବ୍ଦ ବିଦ୍ୟା ଓ ସା-ଲିଆଂ ଶାସ୍ତ୍ର ଦୁଇଥର, ପ୍ରାଣ୍ୟମୂଳ ଶାସ୍ତ୍ରଟୀକା ଓ ଶତ ଶାସ୍ତ୍ର ତିନିଥର ଲେଖାଏଁ ଶ୍ରବଣ କରିଥିଲେ ।

ଏହାପରେ ଭାରତୀୟ ଲିପିର ଉତ୍ପତ୍ତି, ବ୍ୟାକରଣ ଶାସ୍ତ୍ର, ସଂସ୍କୃତ ବ୍ୟାକରଣ, ସୁବନ୍ତ ପ୍ରକରଣ ଆଦି ସମ୍ପର୍କରେ ସୂଚନା ଦିଆଯାଇ ହୁଏନ୍ ସାଂ କିପରି ସଂସ୍କୃତ ଭାଷା ଓ ବ୍ୟାକରଣରେ

ବ୍ୟୁତ୍ପତ୍ତି ଲାଭ କରିଥିଲେ, ସେ ବିଷୟରେ ବିସ୍ତୃତ ବିବରଣୀ ପ୍ରଦାନ କରାଯାଇଛି । ତତ୍‌ପରେ ହୁଏନ ସାଂ ହିରଣ୍ୟ ପର୍ବତ ଗମନ ମାର୍ଗରେ କପୋତିକ ମଠ ଦର୍ଶନ କରିଥିଲେ । ପରେ ପରେ ଅବଲୋକିତେଶ୍ୱରଙ୍କ ମୂର୍ତ୍ତିରେ ପୁଷ୍ପ ପ୍ରଦାନ ଓ ଶପଥ ଗ୍ରହଣ କରି ହିରଣ୍ୟ ପର୍ବତସ୍ଥ ଗୃହସମୂହ ଦର୍ଶନ କରିଥିଲେ ।

**ଚତୁର୍ଥ ଖଣ୍ଡ: ଚମ୍ପା ଦର୍ଶନଠାରୁ କାମରୂପ ନରପତିଙ୍କ ନିମନ୍ତ୍ରଣ ପର୍ଯ୍ୟନ୍ତ**– ଚତୁର୍ଥ ଖଣ୍ଡର ଆରମ୍ଭ ହୋଇଛି ହୁଏନ୍ ସାଂଙ୍କ ଚମ୍ପାନଗର ଦର୍ଶନଠାରୁ । ଏହି ନଗର ସମ୍ପର୍କରେ ଏକ ଅଦ୍ଭୁତ ଜନଶ୍ରୁତିର ଅବତାରଣା କରାଯାଇଛି । ଏଠାରେ ୬/୭ଟି ସଂଘାରାମ ରହିଥିଲା ଓ ସେଥିରେ ୩୦୦ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏହାପରେ ସେଠାରୁ ହୁଏନ୍ ସାଂ ପୁଣ୍ଡ୍ରବର୍ଦ୍ଧନ ଯାଇ ସେଠାର ପୁଣ୍ୟ ସ୍ଥାନମାନ ଦର୍ଶନ କରିଥିଲେ । ରାଜଧାନୀର ୨୦ ଲି ପଶ୍ଚିମକୁ ପୋ-ଚି-ଶ ସଂଘାରାମ ଥିଲା ଯେଉଁଠି ୭୦୦ ସନ୍ନ୍ୟାସୀ ରହୁଥିଲେ । ଏହା ନିକଟସ୍ଥ ବିହାରରେ ଅବଲୋକିତେଶ୍ୱର ବୋଧିସତ୍ତ୍ୱଙ୍କ ମୂର୍ତ୍ତି ସଂରକ୍ଷିତ ଥିଲା । ଏହାର ଦକ୍ଷିଣ-ପୂର୍ବ ଦିଗରେ ସମୁଦ୍ରକୂଳରେ ସମତଟ ନାମକ ଦେଶ, ଯାହାର ଜଳବାୟୁ ବେଶ୍ ସ୍ୱାସ୍ଥ୍ୟକର । ଏଠାରେ ୨୦ଟି ସଂଘାରାମରେ ତିନି ସହସ୍ର ସନ୍ନ୍ୟାସୀ ଥିଲେ । ସମସ୍ତେ ସ୍ଥବିର ସଂପ୍ରଦାୟଭୁକ୍ତ । ଏହି ସ୍ଥାନରୁ ସମୁଦ୍ର ଉପକୂଳରେ ଉତ୍ତର- ପୂର୍ବ ଦିଗକୁ ଗଲେ ଶ୍ରୀକ୍ଷେତ୍ର (ସିଲ୍‌ହଟ) ରାଜ୍ୟ ପଡ଼େ । ସମତଟ ଦେଶର ନଅଶହ ଲି ପଶ୍ଚିମକୁ ତାମ୍ରଲିପ୍ତି । ଏଠାରେ ଥିବା ଦଶଟି ସଂଘାରାମରେ ଏକ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏଠାରୁ ସିଂହଳ ଦେଶ ଯିବାପାଇଁ ଜଳପଥ ବିପଦସଙ୍କୁଳ ଥିବାରୁ ଏବଂ ସେଠାରେ ସ୍ଥବିର ସଂପ୍ରଦାୟ ବହୁ ସନ୍ନ୍ୟାସୀ ଓ ଯୋଗଶାସ୍ତ୍ର-ବିଶାରଦ ପଣ୍ଡିତ ଥିବାରୁ ଦାକ୍ଷିଣାତ୍ୟର ଏକ ସନ୍ନ୍ୟାସୀଙ୍କ ପରାମର୍ଶ କ୍ରମେ ଉଡ୍ରଦେଶ ମଧ୍ୟଦେଇ ସେଠାକୁ ଯିବାକୁ ଚିନ୍ତାକଲେ । ହୁଏନ୍ ସାଂ ଦକ୍ଷିଣ-ପଶ୍ଚିମ ମାର୍ଗରେ ଗତିକରି ଉଡ୍ରଦେଶର ଏକ ସହସ୍ର ସଂଘାରାମରେ ଦଶ ସହସ୍ର ସନ୍ନ୍ୟାସୀ ରହୁଥିବା ଏବଂ ସେମାନେ ମହାଯାନ ଅଧ୍ୟୟନ କରୁଥିବା ଜାଣିଲେ । ସେଠାରେ ଅଶୋକଙ୍କ ନିର୍ମିତ ଦୈବୀଶକ୍ତିସଂପନ୍ନ ୧୦ଟି ସ୍ତୁପ ରହିଥିଲା । ସିଂହଳ ସେଠାରୁ ବିଂଶ ସହସ୍ର ଲି ଦୂରରେ ଅବସ୍ଥିତ । ଉଡ୍ର ଦେଶର ଦକ୍ଷିଣ ପୂର୍ବ ସୀମାନ୍ତ ସମୁଦ୍ର ଉପକୂଳରେ ଚାରିତ୍ର (ଚି-ଲି-ତ-ଲୋ) ନାମକ ନଗର ଥିଲା । ଏଠାରୁ ଦୁଇଶତ ଲି ଦକ୍ଷିଣ-ପଶ୍ଚିମକୁ ନିବିଡ଼ ଅରଣ୍ୟ ପାରିହେଲେ କଙ୍ଗୋଧ ରାଜ୍ୟ (ଗଞ୍ଜାମ) । ଏଠାରୁ ୧୪/୧୫ ଶତ ଲି ଦକ୍ଷିଣ-ପଶ୍ଚିମକୁ ନିବିଡ଼ ଅରଣ୍ୟ ଅତିକ୍ରମିଲେ କଳିଙ୍ଗ ଦେଶ । ଏଠାରେ ଦଶଟି ସଂଘାରାମରେ ପଞ୍ଚଶତ ସନ୍ନ୍ୟାସୀ ସ୍ଥବିର ମତାନୁସାରେ ଶାସ୍ତ୍ର ଅଧ୍ୟୟନ କରୁଥିଲେ । ଏଠାରୁ ୧୮ ଲି ଉତ୍ତର -ପଶ୍ଚିମରେ ଦକ୍ଷିଣ କୋଶଳ ଅବସ୍ଥିତ । ଏହି ସ୍ଥାନରେ ଥିବା ଏକଶହ ସଂଘାରାମରେ ଦଶ ସହସ୍ର ସନ୍ନ୍ୟାସୀ ରହୁଥିଲେ । ଏଠାରେ ମଧ୍ୟ ବହୁ ସଂଖ୍ୟକ ଧର୍ମ ବିରୋଧୀ ରହିଥିଲେ । ଅନେକ ଦେବ

ମନ୍ଦିର ଥିଲା । ଅନତିଦୂର ଦକ୍ଷିଣକୁ ପ୍ରାଚୀନ ସଂଘାରାମ ଓ ତା' ନିକଟରେ ଅଶୋକଙ୍କ ଦ୍ୱାରା ନିର୍ମିତ ସ୍ତୂପ ଥିଲା । ପୂର୍ବକାଳରେ ବୁଦ୍ଧ ଏଠାରେ ଅଦ୍ଭୁତ ଧର୍ମଭାବ ପରିବର୍ତ୍ତନ ପ୍ରଦର୍ଶନ କରି ଧର୍ମ ବିରୋଧୀଙ୍କୁ ପରାସ୍ତ କରିଥିଲେ । ଏହାପରେ ନାଗାର୍ଜୁନ ବୋଧିସତ୍ତ୍ୱ ଏଠାରେ ଅବସ୍ଥାନ ବେଳେ ସଦବାହ ନାମକ ନରପତି ରାଜତ୍ୱ କରୁଥିଲେ ଓ ତାଙ୍କୁ ସେ ସମସ୍ତ ପ୍ରକାର ସାହାଯ୍ୟ କରୁଥିଲେ । ଦେବ ବୋଧିସତ୍ତ୍ୱ ଧର୍ମଶାସ୍ତ୍ର ବିଷୟକ କେତେକ ସନ୍ଦେହ ମୋଚନାର୍ଥେ ସିଂହଳରୁ ଏଠାକୁ ଆସିଥିଲେ । ସେଠାରେ ଇନ୍- ମିଂ (ହେତୁ ବିଦ୍ୟା) ନାମକ ଶାସ୍ତ୍ରରେ ପାରଦର୍ଶୀ ଜଣେ ବ୍ରାହ୍ମଣ ଥିଲେ । ହୁଏନ୍ ସାଂ ତାଙ୍କଠାରୁ ସା-ଲ୍ୟାଂ-ଲୁନ୍ ଶାସ୍ତ୍ର ଅଧ୍ୟୟନ କରିଥିଲେ ।

ତତ୍ପରେ ହୁଏନ୍ ସାଂ ଏଠାରୁ ଦକ୍ଷିଣକୁ ନଅ ଶତ ଲି ପଥ ଅତିକ୍ରମ କରି ଆନ୍ଧ୍ର ଦେଶକୁ ଆସିଥିଲେ । ରାଜଧାନୀ ସନ୍ନିକଟରେ ସଂଘାରାମ ଥିଲା ଓ ତା' ସମ୍ମୁଖରେ ଅର୍ହତ ଅଚଳଙ୍କ ଦ୍ୱାରା ନିର୍ମିତ ଗୋଟିଏ ଉଚ୍ଚ ପ୍ରସ୍ତର ସ୍ତୂପ ବିଦ୍ୟମାନ ଥିଲା । ଦକ୍ଷିଣକୁ ଏକ ସହସ୍ର ଲି ପଥ ଅତିକ୍ରମି ହୁଏନ୍ ସାଂ ଧନ କଟକ ରାଜ୍ୟରେ ଉପନୀତ ହେଲେ । ସେଠାରେ ବହୁ ଧର୍ମ ଭାବ- ପ୍ରଣୋଦିତ ଗୃହସ୍ଥ ଓ ସନ୍ନ୍ୟାସୀ ଗୋଟିଏ ସଂଘାରାମରେ ବିଶ୍ରାମ କରୁଥିଲେ ଓ ବିଶ୍ରାମ କାଳ ଅତୀତ ହେଲାପରେ ଯେଉଁମାନେ ଅର୍ହ-ତତ୍ତ୍ୱ ପ୍ରାପ୍ତ ହେଉଥିଲେ, ସେମାନେ ଶୂନ୍ୟ ମାର୍ଗରେ ଚାଲିଯାଉଥିଲେ । ଏକ ସହସ୍ର ବର୍ଷ ଅତୀତ ହେଲାରୁ ଗୃହସ୍ଥ ଓ ସନ୍ନ୍ୟାସିଗଣ ଏଠାରେ ଏକତ୍ର ବାସ କଲେ । ଏଠାରେ ଅବସ୍ଥାନ ସମୟରେ ହୁଏନ୍ ସାଂ ସଭୂତି ଓ ସୂର୍ଯ୍ୟ ନାମକ ଦୁଇଜଣ ଆଚାର୍ଯ୍ୟଙ୍କ ଦର୍ଶନ ଲାଭ କରିଥିଲେ । ସେମାନେ ମହାସଂଘିକା ମତାନୁଯାୟୀ ତ୍ରିପିଟକ ବ୍ୟାଖ୍ୟାନରେ ପାରଦର୍ଶୀ ଥିଲେ । ଏଠାରେ ଉପର୍ଯ୍ୟୁକ୍ତ ମତାନୁଯାୟୀ ମୂଳାଭିଧର୍ମ ଓ ଅନ୍ୟାନ୍ୟ ଶାସ୍ତ୍ର ଅଧ୍ୟୟନ କରି ବହୁ ମାସ ରହିଥିଲେ । ତା'ପରେ ସେ ଚୋଳ ରାଜ୍ୟକୁ ଗଲେ । ରାଜଧାନୀର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ଅଶୋକ ନିର୍ମିତ ସ୍ତୂପ ଥିଲା । ବୁଦ୍ଧ ଅତୀତରେ ଏଠାରେ ଅଦ୍ଭୁତ ଆଧ୍ୟାତ୍ମିକ ଶକ୍ତି ପ୍ରଦର୍ଶନ କରି ଧର୍ମ ବିରୋଧୀଙ୍କୁ ପରାସ୍ତ କରିଥିଲେ ।

ଏହାପରେ ସେ ନିବିଡ଼ ଅରଣ୍ୟ ମଧ୍ୟରେ ପନ୍ଦର ବା ଷୋହଳ ଶହ ଲି ଦକ୍ଷିଣକୁ ଯାଇ ଦ୍ରାବିଡ଼ ଦେଶରେ ପହଞ୍ଚିଥିଲେ । କାଞ୍ଚିପୁର ଦ୍ରାବିଡ଼ ଦେଶର ରାଜଧାନୀ ଓ ଧର୍ମପାଳ ବୋଧିସତ୍ତ୍ୱଙ୍କ ଜନ୍ମ ସ୍ଥାନ । ସେ ପଞ୍ଚବିଂଶ ସହସ୍ର ଶ୍ଳୋକସମ୍ବଳିତ ଶବ୍ଦ-ବିଦ୍ୟା ସଂଯୁକ୍ତ ଶାସ୍ତ୍ର, ଚିତ୍ର ଶାସ୍ତ୍ର, ନୈପୁଲ୍ୟଂ ଓ ବିଦ୍ୟା ମାତ୍ର ସିଦ୍ଧି, ନ୍ୟାୟ ଦ୍ୱାର- ତାରକ ଶାସ୍ତ୍ରର ଭାଷ୍ୟ ଓ ଅନ୍ୟାନ୍ୟ ବହୁ ସଂଖ୍ୟକ ଶାସ୍ତ୍ର ରଚନା କରିଥିଲେ । ହୁଏନ୍ ସାଂ ଏହି ରାଜ୍ୟ ତ୍ୟାଗ କରିବା ପୂର୍ବରୁ ସିଂହଳ ନରପତି ଇହଲୀଳା ତ୍ୟାଗ କରିଥିଲେ ଓ ରାଜ୍ୟ ଦୁର୍ଭିକ୍ଷ ପ୍ରପୀଡ଼ିତ ଥିଲା । ସେଠାର ବୋଧିମେଘେଶ୍ୱର ଓ ଅଭୟ ଦ୍ରଂଷ୍ଟା ଦୁଇଜଣ ଖ୍ୟାତନାମା ଆଚାର୍ଯ୍ୟ ତିନିଶହ ସନ୍ନ୍ୟାସୀଙ୍କ ସହିତ କାଞ୍ଚିପୁରରେ ପହଞ୍ଚିବାରୁ ହୁଏନ୍ ସାଂ ତାଙ୍କଠାରୁ ସମସ୍ତ ବିଷୟ ଅବଗତ

ହୋଇଥିଲେ । ଏହି ରାଜ୍ୟର ସୀମାରୁ ତିନି ସହସ୍ର ଲି ଦୂରରେ ମାଳକୂଟ ଦେଶ ଅବସ୍ଥିତ । ଏହି ରାଜ୍ୟର ଦକ୍ଷିଣକୁ ସମୁଦ୍ର ଉପକୂଳ ତୁଙ୍ଗ ଗିରି ଓ ସଙ୍କଟମୟ ମଳୟଗିରି ଅବସ୍ଥିତ । ଏଠାରେ ସୁଗନ୍ଧମୟ ଚନ୍ଦନ ଓ କର୍ପୂର ବୃକ୍ଷ ଥିଲା । ଏହି ସ୍ଥାନର ଉତ୍ତର-ପୂର୍ବ ପ୍ରାନ୍ତରେ ସମୁଦ୍ର କୂଳରେ ଥିବା ନଗରର ଦକ୍ଷିଣକୁ ତିନି ସହସ୍ର ଲି ଦୂରରେ ସିଂହଳ ଦେଶ ଅବସ୍ଥିତ । ଏହା ଅତ୍ୟନ୍ତ ଜନାକୀର୍ଣ୍ଣ ଓ ପ୍ରଚୁର ଶସ୍ୟ ଉତ୍ପନ୍ନ ଦେଶ ଥିଲା । ପ୍ରଥମେ ଏହାର ନାମ ପୋ-ଚୁ ଥିଲା । ଜନଶ୍ରୁତି ଅନୁଯାୟୀ ଜଣେ ନାରୀ ତା' ଶଶୁର ଘରକୁ ଯିବାବେଳେ ସିଂହ ହାବୁଡ଼ରେ ପଡ଼ିଲେ । ଭାରବାହୀଗଣ ଭୟରେ ପଳାଇଲେ । ସିଂହ ସେହି ସ୍ତ୍ରୀକୁ ନେଇ ତା' ପାଇଁ ଫଳ ଓ ଶିକାର ସଂଗ୍ରହ କରୁଥିଲା । କିଛିଦିନ ପରେ ସେ ଗୋଟିଏ ପୁତ୍ର ଓ କନ୍ୟା ପ୍ରସବ କଲା । ସେମାନଙ୍କର ଆକୃତି ମଣିଷ ପରି ହେଲେହେଁ, ସେମାନଙ୍କର ସ୍ୱଭାବ ଉଗ୍ର ଥିଲା । ବଡ଼ ହେବା ପରେ ପୁତ୍ର ମାତାକୁ ପଚାରିଲା ମୋର ପିତା ପଶୁ ଓ ମାତା ମନୁଷ୍ୟ । ତେବେ ମୁଁ କ'ଣ ? ମାତାଠାରୁ ସମସ୍ତ ବିଷୟ ଅବଗତ ହୋଇ ସେ ସ୍ଥାନ ପରିତ୍ୟାଗ କଲେ । ସିଂହ ସ୍ତ୍ରୀ, ପୁତ୍ର ଓ କନ୍ୟା କାହାକୁ ନଦେଖି କ୍ରୋଧରେ ନିକଟବର୍ତ୍ତୀ ଗ୍ରାମର ଅନେକ ପୁରୁଷ, ସ୍ତ୍ରୀ ବଧକଲା । ରାଜାଙ୍କ ସୈନ୍ୟ ତାକୁ ବଧ କରିବାକୁ ସାହସ କଲେ ନାହିଁ । ସିଂହପୁତ୍ର ସିଂହ ବଧ ପାଇଁ ମା'କୁ ପଚାରିବାରୁ ମା' ମନା କଲା । ମାତ୍ର ପୁତ୍ର କହିଲା, ଆମ ଅନ୍ୱେଷଣରେ ସେ ଏଠାକୁ ବାରମ୍ବାର ଆସିବ । ତତ୍ପରେ ସେ ସିଂହ ବଧ କରିବାକୁ ଗଲା । ସିଂହ ତାକୁ ଦେଖିବା ମାତ୍ରେ ବାତ୍ସଲ୍ୟ ରସାପ୍ଲୁତ ହେଲା । ଏହି ସୁଯୋଗରେ ପୁତ୍ର ବାରମ୍ବାର ଛୁରିକା ଘାତ କଲେ ହେଁ ଧୈର୍ଯ୍ୟ ସହକାରେ ଯନ୍ତ୍ରଣା ସହ୍ୟକରି ମୃତ୍ୟୁ ବରଣ କଲା । ରାଜା ସିଂହ ମୃତ୍ୟୁ ବିଷୟରେ ତାକୁ ପଚାରିବାରୁ ସେ ସତ୍ୟ କଥା କହିଦେଲା । ରାଜା ତେଣୁ କହିଲେ ମୁଁ ପ୍ରତିଶ୍ରୁତ ପୁରସ୍କାର ଦେବି, କିନ୍ତୁ ପିତାହନ୍ତାର ସ୍ଥାନ ମୋ ରାଜ୍ୟରେ ନାହିଁ । "ଧନରତ୍ନ ଧରି ଯାଇ ସେ ପୋ-ଚୁରେ ଉପସ୍ଥିତ ହେଲା । କିଛି ବଣିକ ରତ୍ନ ଅନ୍ୱେଷଣରେ ପରିବାର ସହ ସେଠାରେ ଭ୍ରମଣ କରୁଥିବା ବେଳେ ସିଂହପୁତ୍ର ସେମାନଙ୍କୁ ହତ୍ୟାକରି ସେମାନଙ୍କ ପତ୍ନୀ ଓ କନ୍ୟାମାନଙ୍କୁ ହରଣ କଲା । ସେମାନଙ୍କ ଠାରୁ ବହୁ ସନ୍ତାନ ଜାତ ହେଲା ଓ ସେମାନଙ୍କ ବଂଶଧରଙ୍କ ସଂଖ୍ୟା ବୃଦ୍ଧି ପାଇଲା । ସେମାନଙ୍କ ମଧ୍ୟରୁ ମନ୍ତ୍ରୀ ଓ ରାଜା ନିର୍ବାଚନ ହେଲେ । ସେମାନଙ୍କ ପୂର୍ବ ପୁରୁଷ ସିଂହ ବଧ କରିଥିବାରୁ ରାଜା ଦେଶର ନାମ ସିଂହଳ ଦେଲା ।

ସିଂହ କନ୍ୟା ଯେଉଁ ଜାହାଜରେ ବସିଥିଲା, ତାହା ସମୁଦ୍ରରେ କିଛିଦିନ ବିଚରଣ ପରେ ପାରସ୍ୟର ପଶ୍ଚିମ ଉପକୂଳରେ ପହଞ୍ଚିଲା । ସେଠାର ଅଧିବାସୀ ରାକ୍ଷସ ତାକୁ ହରଣ କରି ତା' ଗର୍ଭରୁ ଅନେକ କନ୍ୟା ଜାତ କଲେ । ଏହା ପାଶ୍ଚାତ୍ୟ ରମଣୀମାନଙ୍କ ଦେଶ ନାମରେ ଖ୍ୟାତ ହେଲା । ପୁଣି କଥିତ ଅଛି ସିଂହଳ ନାମକ ଏକ ବଣିକ ପୁତ୍ର ନିଜ ଜ୍ଞାନ ବଳରେ ରାକ୍ଷସ କବଳରୁ ପଳାଇଯାଇ ପୋ-ଚୁ ଦ୍ୱୀପରେ ଉପସ୍ଥିତ ହେଲେ ଓ ପରେ

ରାକ୍ଷସକୁ ହତ୍ୟାକରି ସ୍ଥାନ ଅଧିକାର କରିବାରୁ ତାଙ୍କ ନାମାନୁସାରେ ଦ୍ୱୀପର ନାମ ହେଲା ସିଂହଳ, ବୁଦ୍ଧଙ୍କ ନିର୍ବାଣପ୍ରାପ୍ତିର ୧୦୦ ବର୍ଷ ପରେ ଅଶୋକଙ୍କ ଭାଇ ମହେନ୍ଦ୍ର ଏଠାରେ ପହଞ୍ଚି ବୌଦ୍ଧଧର୍ମ ପ୍ରଚାର କରିଥିଲେ । ଏଠାର ରାଜପ୍ରାସାଦ ନିକଟବର୍ତ୍ତୀ ଏକ ଉଚ୍ଚ ରତ୍ନମଣ୍ଡିତ ସ୍ତୂପରେ ବୁଦ୍ଧଙ୍କ ଦନ୍ତ ରକ୍ଷିତ ଥିଲା । ସ୍ତୂପ ଉପରେ ପଦ୍ମରାଗ ମଣି ମଣ୍ଡିତ ଏକ ଧ୍ୱଜ ଦଣ୍ଡ ଥିଲା । ଏହା ନିକଟରେ ରତ୍ନମଣ୍ଡିତ ଆଉ ଏକ ବିହାର ଥିଲା । ସେଥିରେ ବୁଦ୍ଧଙ୍କର ସ୍ୱର୍ଣ୍ଣ ବିଗ୍ରହଟିଏ ରହିଥିଲା ।

ରାଜ୍ୟର ଦକ୍ଷିଣ-ପୂର୍ବ କୋଣରେ ଲଙ୍କା ଗିରି ଅବସ୍ଥିତ । ପୂର୍ବେ ତଥାଗତ ଏଠାରେ ଲଙ୍କାବତାର ସୂତ୍ର ବ୍ୟାଖ୍ୟାନ କରିଥିଲେ । ସିଂହଳ ବହୁ ଦୂରରେ ଓ ସମୁଦ୍ର ମଧ୍ୟରେ ଅବସ୍ଥିତ ଥିବାରୁ ହୁଏନ୍ ସାଂ ତାହା ଦର୍ଶନ କରିପାରିନଥିଲେ । ସେ ଲୋକ ମୁଖରୁ ଯାହା ସଂଗ୍ରହ କରିଥିଲେ, ତାହା ବର୍ଣ୍ଣନା କରିଛନ୍ତି । ହୁଏନ୍ ସାଂ ଦ୍ରାବିଡ଼ରୁ ଦକ୍ଷିଣ- ପଶ୍ଚିମାଭିମୁଖରେ ଯାତ୍ରା କରି କଙ୍କଣାପୁରରେ ଉପନୀତ ହେଲେ । ଏଠାରେ ଏକଶହ ସଂଘାରାମ ଥିଲା ଓ ତହିଁରେ ହୀନଯାନ/ମହାଯାନ ଉଭୟ ମତାବଲମ୍ବୀ ଦଶ ସହସ୍ର ସନ୍ନ୍ୟାସୀ ବାସ କରୁଥିଲେ । ରାଜପ୍ରାସାଦ ସମୀପ ବିହାରରେ ତିନିଶହ ସନ୍ନ୍ୟାସୀ ରହୁଥିଲେ । ସେମାନେ ସାହିତ୍ୟରେ ସୁପଣ୍ଡିତ ଥିଲେ । ଏହି ବିହାରରେ ରାଜକୁମାର ସିଦ୍ଧାର୍ଥଙ୍କ ଦୁଇଫୁଟ ଉଚ୍ଚ ଶିରସ୍ତାଣ ଥିଲା । ରାଜଧାନୀ ସମୀପବର୍ତ୍ତୀ ବିହାର ମଧ୍ୟସ୍ଥ ଏକ ସଂଘାରାମରେ ମୈତ୍ରେୟ ବୋଧିସତ୍ତ୍ୱଙ୍କ ଦଶଫୁଟ ଉଚ୍ଚର ଚନ୍ଦନ କାଠ ମୂର୍ତ୍ତି ରହିଥିଲା ।

ଏଠାରୁ ଉତ୍ତର-ପଶ୍ଚିମ ଦିଗରେ ଘନ ଅରଣ୍ୟ ମଧ୍ୟରେ ୨୫୦୦ ଲି ପଥ ଅତିକ୍ରମି ସେ ମହାରାଷ୍ଟ୍ରରେ ପହଞ୍ଚିଲେ । ଅଧିବାସୀଗଣ ମୃତ୍ୟୁକୁ ଘୃଣା ଓ ସଦାଚାରକୁ ଅତ୍ୟନ୍ତ ସମ୍ମାନ ଦେଉଥିଲେ । ଏ ଦେଶର ରାଜା କ୍ଷତ୍ରିୟ ଓ ଯୁଦ୍ଧବିଦ୍ୟା ବିଶାରଦ ଥିଲେ । ଏଠାରେ ଏକଶତ ସଂଘାରାମ ଥିଲା ଓ ସେଥିରେ ହୀନଯାନ ଏବଂ ମହାଯାନାବଲମ୍ବୀ ପାଞ୍ଚ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏ ରାଜ୍ୟର ଉତ୍ତର-ପଶ୍ଚିମକୁ ନର୍ମଦା ନଦୀପରେ ବ୍ରୋଚ ରାଜ୍ୟ ଓ ତା'ର ଦୁଇ ସହସ୍ର ଲି ଉତ୍ତର-ପଶ୍ଚିମ ଦିଗରେ ମାଳବ ଦେଶ । ଏ ଦେଶର ଅଧିବାସୀ ଶିଷ୍ଟାଚାର ପରାୟଣ ଓ ସୂକ୍ଷ୍ମ କଳା ନିପୁଣ । ଏଠାରେ ୧୦୦ ସଂଘାରାମରେ ବିଂଶ ସହସ୍ର ସନ୍ନ୍ୟାସୀ ରହୁଥିଲେ । ଏମାନେ ହୀନଯାନ ଅଧ୍ୟୟନ କରୁଥିଲେ । ଏଠାରେ ଅତୀତରେ ଅସାଧାରଣ ଶକ୍ତିସଂପନ୍ନ ମେଧାବୀ ସୁପଣ୍ଡିତ ଶୀଳାଦିତ୍ୟ ନାମରେ ଜଣେ ନରପତି ଥିଲେ । ସେ ଜୀବ ବଧ ନିଷେଧ କରିଥିଲେ ଓ ଧର୍ମଶାଳୀ ନିର୍ମାଣ କରି ତହିଁରେ ସପ୍ତବୁଦ୍ଧଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ ।

ଏହି ସ୍ଥାନରୁ ପଚିଶ ଶହ ଲି ଉତ୍ତର-ପଶ୍ଚିମକୁ ଅଟାଳି ରାଜ୍ୟ । ଏଠାରୁ ଉତ୍ତର-ପଶ୍ଚିମକୁ ଗଲେ କି-ଟା ରାଜ୍ୟ । ତା'ର ଉତ୍ତରକୁ ବଲ୍ଲଭୀ ରାଜ୍ୟ । ଏଠାରେ ଏକଶତ

ସଂଘାରାମରେ ଛଅ ସହସ୍ର ସନ୍ନ୍ୟାସୀ ରହୁଥିଲେ । ସେମାନେ ହୀନଯାନ ଅଧ୍ୟୟନ କରୁଥିଲେ । ତଥାଗତ ତାଙ୍କ ଜୀବନ କାଳରେ ଏହି ସ୍ଥାନରେ ବାରମ୍ବାର ଅବସ୍ଥାନ କରୁଥିଲେ । ସେ ଯେଉଁ ସ୍ଥାନରେ ଅବସ୍ଥାନ କରୁଥିଲେ ଅଶୋକ ସେହି ସ୍ଥାନରେ ସ୍ମାରକ ସ୍ତମ୍ଭ ନିର୍ମାଣ କରାଇଥିଲେ । ଏଠାରୁ ସାତ ଶହ ଲି ଉତ୍ତର-ପଶ୍ଚିମକୁ ଆନନ୍ଦପୁର; ତା'ର ପାଞ୍ଚଶହ ଲି ଉତ୍ତର-ପଶ୍ଚିମକୁ ସୌରାଷ୍ଟ୍ର । ତା'ର ଅ[illegible] ଶହ ଲି ଉତ୍ତର-ପୂର୍ବକୁ ଗୁର୍ଜ୍ଜର; ତା'ର ୨୮୦୦ ଲି ଦକ୍ଷିଣ-ପୂର୍ବକୁ ଉଜ୍ଜୟିନୀ । ତା'ର ଅନ[illegible] ଦୂରରେ ଏକ ସ୍ତୂପ ଥିଲା । ସେଠାରେ ଅଶୋକ ନରକ (ଦଣ୍ଡଭୂମି) ନିର୍ମାଣ କରିଥିଲେ । ସେଠାରୁ ଏକ ସହସ୍ର ଲି ଉତ୍ତର ପୂର୍ବକୁ ଚିକିତି ଦେଶ ଓ ତା'ର ନଅ ଶହ ଲି ଉତ୍ତର-ପୂର୍ବକୁ ମହେଶ୍ୱରପୁର । ଏଠାରୁ ପଶ୍ଚିମାଭିମୁଖରେ ପ୍ରତ୍ୟାବର୍ତ୍ତନ କଲେ ସୁରଥ ଦେଶ । ପୁଣି ପଶ୍ଚିମାଭିମୁଖରେ ଅତ୍ୟନବକେଳ ରାଜ୍ୟ । ତଥାଗତ ଏଠାରେ ବହୁ ସମୟରେ ଅବସ୍ଥାନ କରୁଥିଲେ ଓ ଅଶୋକ ତାଙ୍କ ସ୍ମରଣରେ ସ୍ତୂପମାନ ନିର୍ମାଣ କରିଥିଲେ । ଏଠାରୁ ଦୁଇ ସହସ୍ର ଲି ପଶ୍ଚିମକୁ ଲାଙ୍ଗଲ ଦେଶ । ଏହାର ଉତ୍ତର-ପଶ୍ଚିମ ଦିଗରେ ପାରସ୍ୟ ଦେଶ । ଅତୀତରେ ଏହା ଭାରତବର୍ଷ ଅନ୍ତର୍ଗତ ଥିଲା । ଏଠାରେ ମୁକ୍ତା, ରେଶମ ଓ ପଶମାଦି ମୂଲ୍ୟବାନ ଦ୍ରବ୍ୟ; ମେଷ, ଅଶ୍ୱ, ଓଟ ଇତ୍ୟାଦି ପୂର୍ଣ୍ଣ ରହିଥିଲା । ଏଠାରେ ୨/୩ଟି ସଂଘାରାମରେ ଏକଶତ ସନ୍ନ୍ୟାସୀ ସର୍ବାସ୍ତିବାଦୀ ମତାନୁଯାୟୀ ହୀନଯାନ ଅଧ୍ୟୟନ କରୁଥିଲେ । ଶାକ୍ୟବୁଦ୍ଧଙ୍କ ଭିକ୍ଷାପାତ୍ର ରାଜପ୍ରାସାଦରେ ରଖାଯାଇଥିଲା ।

ଲାଙ୍ଗଳ ଦେଶର ତିନିଶତ ଉତ୍ତର-ପୂର୍ବକୁ ଅଭଣ୍ଡ ଦେଶ । ଏଠାରେ ଅବସ୍ଥାନ କାଳରେ ବୁଦ୍ଧ ଭିକ୍ଷୁଙ୍କୁ ଚର୍ମ ପାଦୁକା ବ୍ୟବହାର କରିବାକୁ ଅନୁମତି ପ୍ରଦାନ କରିଥିଲେ । ଏହାର ୮୦୦ ପାଦ ଦକ୍ଷିଣକୁ ଏକ ବିରାଟ ଅରଣ୍ୟରେ ଅଶୋକଙ୍କ ନିର୍ମିତ ସ୍ତୂପଟିଏ ରହିଥିଲା । ପୁନରାୟ ସାତ ଶହ ଲି ପୂର୍ବକୁ ସିନ୍ଧୁଦେଶ । ପ୍ରଚୁର ପରିମାଣ ସୁନା, ରୁପା, କଳା ପଥର, ଗୋରୁ, ମେଣ୍ଢା, ଓଟ, ରକ୍ତ-ଶ୍ୱେତ- କୃଷ୍ଣ ଲବଣାଦି ପାଇଁ ସ୍ଥାନଟି ପ୍ରସିଦ୍ଧ ଥିଲା । ବୁଦ୍ଧଦେବ ବହୁବାର ଅବସ୍ଥାନ କରିଥିବାରୁ ଅଶୋକ ଏହି ସ୍ଥାନରେ ଅନେକ ସ୍ମାରକ ସ୍ତୂପ ନିର୍ମାଣ କରାଇଥିଲେ । ପ୍ରଧାନ ଅର୍ହତ ଉପଗୁପ୍ତ ଏଠାରେ ଅବସ୍ଥାନ କରି ଦେଶବାସୀଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରାଇଥିଲେ । ଏହାର ପୂର୍ବରେ ସୁଲତାନ ଓ ଉତ୍ତର-ପୂର୍ବକୁ ପର୍ବତ ରାଜ୍ୟ । ରାଜଧାନୀ ନିକଟରେ ଏକ ସଂଘାରାମ ଥିଲା ଯେଉଁଠାରେ ଏକଶତ ସନ୍ନ୍ୟାସୀ ଅବସ୍ଥାନ କରି ମହାଯାନ ଅଧ୍ୟୟନ କରୁଥିଲେ । ସର୍ବଶାସ୍ତ୍ର ବିଶାରଦ ଜିନପୁତ୍ର ଯୋଗାଚାର୍ଯ୍ୟ ଭୂମି-ଶାସ୍ତ୍ର କାରିକା ଏହିଠାରେ ପ୍ରଣୟନ କରିବା ସହିତ ଶାସ୍ତ୍ରଜ୍ଞ ଭଦ୍ରରୁଚି ଓ ଗୁଣପ୍ରଭ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏଠାରେ ୨/୩ ଜଣ ସର୍ବଶାସ୍ତ୍ରଜ୍ଞ ବାସ କରୁଥିବାରୁ ହୁଏନ୍ ସାଂ ଦୁଇ ବର୍ଷକାଳ ଅବସ୍ଥାନ କରି ସମ୍ମତୀୟ ମତାନୁଯାୟୀ ମୂଳାଭିଧର୍ମ୍ମ ଶାସ୍ତ୍ର, ସଦ୍ଧର୍ମ

ସଂପରିଗ୍ରହ ଶାସ୍ତ୍ର ଓ ପ୍ରଶିକ୍ଷା ସତ୍ୟ ଶାସ୍ତ୍ର ଅଧ୍ୟୟନ କରିଥିଲେ । ଏଠାରୁ ସେ ଦକ୍ଷିଣ-ପୂର୍ବ ମାର୍ଗରେ ମଗଧକୁ ଫେରି ପୁନଃ ନାଳନ୍ଦା ମଠରେ ଶଂ-ଫା-ସୋଂ ନାମକ ଧର୍ମାଚାର୍ଯ୍ୟଙ୍କ ସହ ସାକ୍ଷାତ୍ ବେଳେ ଶୁଣିବାକୁ ପାଇଲେ ସେଠାରୁ ପଶ୍ଚିମ ଦିଗକୁ ତିନି ଯୋଜନ ଦୂରବର୍ତ୍ତୀ ତିଲଡାକ ମଠରେ ବାଳପତି ନିବାସୀ ପ୍ରଜ୍ଞଭଦ୍ର ନାମରେ ପ୍ରସିଦ୍ଧ ଆଚାର୍ଯ୍ୟ ଅଛନ୍ତି, ଯିଏ ତ୍ରିପିଟକ, ଶବ୍ଦ ବିଦ୍ୟା, ହେତୁ ବିଦ୍ୟା ଓ ଅନ୍ୟାନ୍ୟ ଶାସ୍ତ୍ର ଜ୍ଞାନରେ ପ୍ରସିଦ୍ଧି ଲାଭ କରିଛନ୍ତି । ହୁଏନ୍ ସାଂ ତାଙ୍କ ନିକଟରେ ଦୁଇମାସ ଅବସ୍ଥାନ କରି ନିଜର ସନ୍ଦେହ ଥିବା ବହୁ ପ୍ରଶ୍ନ ପଚାରି ସନ୍ଦେହ ମୋଚନ କରିଥିଲେ ।

ତତ୍ପରେ ହୁଏନ୍ ସାଂ ଯଷ୍ଟିବନ ପର୍ବତକୁ ଯାଇ ଜୟସେନ ନାମକ ଗୃହସ୍ଥଙ୍କ ସହିତ କିଛି କାଳ ରହିଥିଲେ । ଜୟସେନ କ୍ଷତ୍ରିୟକୁଳସମ୍ଭୂତ ଓ ବହୁଶାସ୍ତ୍ର ପ୍ରଣୟନ କର୍ତ୍ତା । ମଗଧରାଜ ପୂର୍ଣ୍ଣବର୍ମା ତାଙ୍କୁ ପ୍ରଧାନାଚାର୍ଯ୍ୟ ପଦରେ ବରଣ କରିବାକୁ ଚାହୁଁଥିଲେ, ସେ କିନ୍ତୁ ରାଜି ହେଲେ ନାହିଁ । ପୂର୍ଣ୍ଣବର୍ମାଙ୍କ ମୃତ୍ୟୁପରେ ରାଜା ଶୀଳାଦିତ୍ୟ ଉକ୍ତ ପଦ ନିମିତ୍ତ ପୁନରାୟ ଅନୁରୋଧ କଲେ ମଧ୍ୟ ସେ ତାହା ପ୍ରତ୍ୟାଖ୍ୟାନ କରି ଯଷ୍ଟିବନ ପର୍ବତରେ ଅବସ୍ଥାନପୂର୍ବକ ଶିଷ୍ୟମାନଙ୍କୁ ବୌଦ୍ଧ ଧର୍ମତତ୍ତ୍ୱ ସମ୍ବନ୍ଧରେ ଶିକ୍ଷାଦାନ କରିବାକୁ ଲାଗିଲେ । ତାଙ୍କର ବହୁ ଶିଷ୍ୟ ଥିଲେ । ହୁଏନ୍ ସାଂ ତାଙ୍କ ନିକଟରେ ଦୁଇବର୍ଷ ରହି ବିଦ୍ୟମାତ୍ର ସିଦ୍ଧି ଶାସ୍ତ୍ରର ଭାଷ୍ୟ ଓ ଇ-ଲି-ଲୁନ୍, ଶିଂ-ଇ-ୱାଇ-ଲୁନ୍, ପୁ-ଚୁ-ଲି-ପାନ୍, ଶି-ଇ-ୟିନ୍, ଉନ୍-ଲୁନ୍ ଓ ଚ୍ୱୋଂ-ୟାନ୍-କିଂ-ଲୁନ୍ ଶାସ୍ତ୍ର ଅଧ୍ୟୟନ କଲେ । ଯୋଗଶାସ୍ତ୍ର ଓ ହେତୁବିଦ୍ୟା ଶାସ୍ତ୍ରର କେତେକ ସନ୍ଦେହ ମୋଚନ କଲେ ।

ଏହାପରେ ରାତ୍ରରେ ହଠାତ୍ ହୁଏନ୍ ସାଂ ସ୍ୱପ୍ନ ଦେଖିଲେ ନାଳନ୍ଦ ମଠର କକ୍ଷ ଓ ପ୍ରାଙ୍ଗଣ ଆଦି ସ୍ଥାନ ପରିତ୍ୟକ୍ତ ଓ ଦୂଷିତ ହୋଇପଡ଼ିଛି । ସେଠାରେ କେତେକ ଜଳ-ମହିଷ ଆବଦ୍ଧ ରହିଛନ୍ତି । ସେ ଦୂରବର୍ତ୍ତୀ ପଶ୍ଚିମ ମାର୍ଗରେ ବାଳାଦିତ୍ୟ ରାଜାଙ୍କ କକ୍ଷରେ ପଶି ଏକ ଚତୁସ୍ତଳ ମଣ୍ଡପ ଉପରେ କମନୀୟ କାନ୍ତିଯୁକ୍ତ ସ୍ୱର୍ଣ୍ଣାଭ ପୁରୁଷ ଦେଖିଲେ । ଆନନ୍ଦରେ ସେ ମଣ୍ଡପ ଆରୋହଣ କରିବାକୁ ଚେଷ୍ଟା କରି ଅସମର୍ଥ ହେଲେ । ସେ ସେହି ପୁରୁଷଙ୍କୁ ଘେନି ଯିବାକୁ ଅନୁରୋଧ କଲେ । ସେ କହିଲେ ମୁଁ ମଞ୍ଜୁ ଶ୍ରୀ ବୋଧିସତ୍ତ୍ୱ । ସେ ସ୍ଥାନକୁ ଯିବାକୁ ତୁମର କର୍ମ ପର୍ଯ୍ୟାପ୍ତ ନୁହେଁ । ତତ୍ପରେ କହିଲେ ତୁମେ ଫେରିଯାଅ । ଦଶ ବର୍ଷ ପରେ ରାଜା ଶୀଳାଦିତ୍ୟ ମୃତ୍ୟୁବରଣ କରିବେ । ଭାରତବର୍ଷ ଅରାଜକ ହେବ ।' ଦୁଷ୍ଟ ଲୋକ ପରସ୍ପରକୁ ହତ୍ୟା କରିବେ । ତତ୍ପରେ ସେ ଅଦୃଶ୍ୟ ହେଲେ । ସ୍ୱପ୍ନ ଭଙ୍ଗ ପରେ ଜୟସେନକୁ ଏହା କହିବାରୁ ସେ କହିଲେ ତୁମେ ଯାହା ଶୁଣିଲ ତାହା ସତ୍ୟ ହୋଇପାରେ । ତୁମେ ଏପରି ଏକ ବିଶେଷ ସମ୍ବାଦ ପ୍ରାପ୍ତ ହୋଇଥିବାରୁ ବର୍ତ୍ତମାନ କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଦ୍ଧାରଣ କର । ସେହି

ସ୍ୱପ୍ନ ପରେ ସତ୍ୟ ହୋଇଥିଲା । ଚୀନ- ରାଜଦୂତ ଏହି ସମୟରେ ଭାରତର ଅବସ୍ଥା ସ୍ୱଚକ୍ଷୁରେ ଦେଖିବାକୁ ପ୍ରସ୍ତୁତ ହେଉଥିଲେ । ଏହା ଥିଲା ପ୍ରଥମ ମାସର ଆରମ୍ଭ । ପଶ୍ଚିମାଞ୍ଚଳରେ ପ୍ରଚଳିତ ନିୟମାନୁଯାୟୀ ଏହି ମାସରେ ଗୟାର ବୋଧି ମଠରୁ ବୁଦ୍ଧଙ୍କ ଶରୀର ଅଣାଯାଉଥିଲା । ହୁଏନ୍ ସାଂ ଜୟସେନ୍‌ଙ୍କ ସହ ବୁଦ୍ଧ ଅସ୍ଥି ଦର୍ଶନାର୍ଥେ ଏଠାକୁ ଆସିଲେ ।

ରାତ୍ରିର ପ୍ରଥମ ପ୍ରହରରେ ହୁଏନ୍ ସାଂ ଓ ଜୟସେନ ବୁଦ୍ଧଙ୍କ ଶରୀରର ଅସମାନତା ବିଷୟରେ ଆଲୋଚନା କରୁଥିଲେ । ଅଳ୍ପ ସମୟ ପରେ ଗୃହର ଆଲୋକ ନିସ୍ତେଜ ହେଲା ଓ ଏକ ତେଜୋମୟ ଆଲୋକରେ ଭିତର ବାହାର ଉଦ୍ଭାସିତ ହେଲା । ସେ ବାହାରକୁ ଆସି ଦେଖିଲେ ଆକାଶ ଓ ପୃଥିବୀ ଆଲୋକରେ ସମୁଜ୍ଜ୍ୱଳ । ଗୃହ ପ୍ରାଙ୍ଗଣ ସୁଗନ୍ଧରେ ଆମୋଦିତ । ପରେ ଲୋକମୁଖରେ ପ୍ରଚାରିତ ହେଲା ଶରୀରଗଣ ଅଲୌକିକ କାଣ୍ଡ ପ୍ରଦର୍ଶନ କରୁଛନ୍ତି । ଲୋକମାନେ ଭକ୍ତିରେ ବୁଦ୍ଧଙ୍କୁ ସ୍ତୁତି କଲେ । କ୍ରମେ ଆଲୋକ ନିଷ୍ପ୍ରଭ ହେଉଥିଲା । ଏହି ସମୟରେ ଶୀଳଭଦ୍ର ସନ୍ନ୍ୟାସୀମାନଙ୍କୁ ମହାଯାନ ସଂପରିଗ୍ରହ ଶାସ୍ତ୍ର ଓ ବିଦ୍ୟାମାତ୍ର ସିଦ୍ଧି ଶାସ୍ତ୍ର ସମ୍ବନ୍ଧୀୟ ସଂଶୟ ବିଷୟରେ ବ୍ୟାଖ୍ୟାନ କରିବାକୁ ହୁଏନ୍ ସାଂଙ୍କୁ ପଠାଇଥିଲେ । ସେତେବେଳେ ସିଂହରଶ୍ମି ନାମରେ ଏକ ଆଚାର୍ଯ୍ୟ ଯୋଗଶାସ୍ତ୍ର ତତ୍ତ୍ୱ ଖଣ୍ଡନ ଉଦ୍ଦେଶ୍ୟରେ ଚତୁଃ ଶ୍ରେଣୀଭୁକ୍ତ ସନ୍ନ୍ୟାସିମାନଙ୍କ ଆଗରେ ପ୍ରାଣ୍ୟମୂଳ ଶାସ୍ତ୍ର ଓ ନବ-ବିନ୍ୟସ୍ତ (ସଂଶୋଧିତ) ଶତଶାସ୍ତ୍ର ବ୍ୟାଖ୍ୟାନ କରୁଥିଲେ । ହୁଏନ୍ ସାଂ ସୌଜନ୍ୟ ସହ ପ୍ରାଣ୍ୟମୂଳ ଓ ଶତଶାସ୍ତ୍ର ସମ୍ବନ୍ଧରେ ପ୍ରତିକୂଳ ମତ ଏବଂ ଯୋଗଶାସ୍ତ୍ର ସମ୍ପର୍କରେ ଅନୁକୂଳ ମତ ବ୍ୟକ୍ତ କଲେ । ଏହାପରେ ତାଙ୍କର ଶିଷ୍ୟମାନେ ହୁଏନ୍ ସାଂଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ହୁଏନ୍ ସାଂ ଏହି ଉଭୟ ମତର ମୀମାଂସା ପାଇଁ ହ୍ୱି-ସୁଂ ନାମରେ ତିନି ସହସ୍ର ଶ୍ଳୋକ-ପୂର୍ଣ୍ଣ ଶାସ୍ତ୍ରଟିଏ ପ୍ରଣୟନ କରି ପ୍ରତିପାଦନ କରିଥିଲେ ଯେ, ଉଭୟ ମତ ପରସ୍ପର-ବିରୋଧୀ ନୁହେଁ । ସେ ଏହି ଶାସ୍ତ୍ରକୁ ଶୀଳଭଦ୍ର ଓ ପଣ୍ଡିତମଣ୍ଡଳୀଙ୍କୁ ଉପହାର ଦେଇଥିଲେ ତଥା ସମସ୍ତେ ତାହା ସମ୍ପର୍କରେ ଅନୁକୂଳ ମନ୍ତବ୍ୟ ପ୍ରକାଶ କରିଥିଲେ ।

ଏହାଦ୍ୱାରା ସିଂହରଶ୍ମି ଲଜ୍ଜିତ ହୋଇ ଉକ୍ତ ମଠ ତ୍ୟାଗ କରି ଗୟାର ବୋଧି ମଠକୁ ପଳାଇଥିଲେ । ସିଂହରଶ୍ମି ପ୍ରସ୍ଥାନ ପୂର୍ବରୁ ଶୀଳାଦିତ୍ୟ ନାଳନ୍ଦ ମଠ ପାଖରେ ପିତ୍ତଳ' ଫଳକାଚ୍ଛାଦିତ ଶତଫୁଟ ଉଚ୍ଚ ବିଖ୍ୟାତ ବିହାର ନିର୍ମାଣ କରାଇଥିଲେ । ତତ୍ପରେ ହୁଏନ୍ ସାଂ ପୁଣି ଓଡ଼ିଶା ଆସିଥିଲେ । ଓଡ଼ିଶାର ଆଚାର୍ଯ୍ୟଗଣ ହୀନଯାନ ଅଧ୍ୟୟନ କରୁଥିଲେ । ମହାଯାନ ପ୍ରତି ସେମାନଙ୍କର ବିଶ୍ୱାସ ନଥିଲା । ଏହି ସମୟରେ ପ୍ରାଜ୍ଞଗୁପ୍ତ ଆଚାର୍ଯ୍ୟ ମହାଯାନ ବିରୋଧରେ ସପ୍ତଶତ ଶ୍ଳୋକ ପୂର୍ଣ୍ଣ ଗ୍ରନ୍ଥ ପ୍ରଣୟନ କରିଥିଲେ, ଯାହାକୁ ନେଇ ହୀନଯାନୀ ରାଜାଙ୍କୁ କହିଲେ ଯେ, ଏହାର ଗୋଟିଏ ଶବ୍ଦ ସୁଦ୍ଧା କେହି ଖଣ୍ଡନ କରିପାରିବେ ନାହିଁ ।

ରାଜା ଶୀଳଭଦ୍ରଙ୍କ ନିକଟକୁ ଦୂତ ହସ୍ତରେ ପତ୍ର ପ୍ରେରଣ କରି ହୀନଯାନୀ ଆଚାର୍ଯ୍ୟଙ୍କୁ ଉପଯୁକ୍ତ ଉତ୍ତର ଦେବାକୁ ଅନୁରୋଧ କରିଥିଲେ । ସେ ହୁଏନ୍ ସାଂ, ସାଗରମତି, ସିଂହରଶ୍ମିଙ୍କୁ ଓଡ଼ିଶା ନରପତିଙ୍କ ପାଇଁ ନିଯୁକ୍ତ କରିଥିଲେ । ସାଗରମତି ଓ ଅନ୍ୟାନ୍ୟ ଆଚାର୍ଯ୍ୟ ଚିନ୍ତିତ ହେଲେହେଁ ହୁଏନ୍ ସାଂ ଉତ୍ତର ଦେବାକୁ ପ୍ରସ୍ତୁତ ହୋଇଥିଲେ । ଯୁକ୍ତିରେ ସେ ହୀନଯାନୀଙ୍କୁ ପରାସ୍ତ କରିଥିଲେ । ସାଂଖ୍ୟ ତତ୍ତ୍ୱ ବିଷୟରେ ମଧ୍ୟ ତାଙ୍କର ଗଭୀର ପ୍ରବେଶ ଥିଲା । ସେହି ହୀନଯାନୀମାନେ ପୁଣି ହୁଏନ୍ ସାଂଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଯେଉଁ ବ୍ରାହ୍ମଣ ଯୁକ୍ତିରେ ପରାସ୍ତ ହୋଇଥିଲେ, ସେ ଭାରତର ପୂର୍ବାଞ୍ଚଳରେ ଅବସ୍ଥିତ କାମରୂପ ଅଭିମୁଖେ ଯାତ୍ରାକରି ସେଠାରେ କୁମାର ରାଜଙ୍କ ସମ୍ମୁଖରେ ହୁଏନ୍ ସାଂଙ୍କର ସଦ୍‌ଗୁଣାବଳୀ ବର୍ଣ୍ଣନା କରିଥିଲେ । ରାଜା ହୁଏନ୍ ସାଂଙ୍କୁ ଆଣିବାକୁ ମଧ୍ୟ ଦୂତ ପଠାଇଥିଲେ । ତାହା ଥିଲା ହୁଏନ୍ ସାଂଙ୍କ ଜୀବନର ଅନ୍ୟ ଏକ ସୋପାନ ।

**ପଞ୍ଚମ ଖଣ୍ଡ: ହୁଏନ୍ ସାଂଙ୍କ ପ୍ରତ୍ୟାଗମନ ସମ୍ବନ୍ଧରେ ନିର୍ଗ୍ରନ୍ଥଙ୍କର ଭବିଷ୍ୟତ୍ ବାଣୀ ଓ ତାହାଙ୍କ ଚୀନ୍- ପ୍ରବେଶ** – କୁମାର ରାଜଙ୍କ ଦୂତ ଆସିବା ପୂର୍ବରୁ ବ୍ରଜନାମକ ଏକ ନିର୍ଗ୍ରନ୍ଥ ଶିଷ୍ୟ ହୁଏନ୍ ସାଂ କକ୍ଷରେ ପ୍ରବେଶ କରିଥିଲେ । ହୁଏନ୍ ସାଂ ଜାଣିଥିଲେ ଏହି ସନ୍ନ୍ୟାସିଗଣ ଭବିଷ୍ୟତ କଥନରେ ନିପୁଣ । ସେ ତେଣୁ ତାଙ୍କ ସ୍ୱଦେଶ ପ୍ରତ୍ୟାଗମନ ପଥ ଉନ୍ମୁକ୍ତ କି ନା ପଚାରିବାରୁ ସେ ଗଣନା କରି କହିଲେ- ଆଚାର୍ଯ୍ୟଙ୍କ ଏଠାରେ ରହିବା ଶ୍ରେୟସ୍କର । ପଞ୍ଚ ଭାରତରେ ସନ୍ନ୍ୟାସୀ, ଗୃହସ୍ଥ- ସମସ୍ତେ ତାଙ୍କୁ ସମ୍ମାନ କରନ୍ତି । ତେବେ ସ୍ୱଦେଶ ପ୍ରତ୍ୟାଗମନ ସମୟ ମଧ୍ୟ ଭାଗ୍ୟାନୁକୂଳ । ହୁଏନ୍ ସାଂ ପଚାରିଲେ ମୋ ପାଖରେ ଥିବା ବହୁ ସଂଖ୍ୟକ ମୂର୍ତ୍ତି ଓ ଧର୍ମ ପୁସ୍ତକ କିପରି ନେବି ? ନିର୍ଗ୍ରନ୍ଥ କହିଲେ ଶୀଳାଦିତ୍ୟ ରାଜ ଓ କୁମାରରାଜ ଆପଣଙ୍କ ରକ୍ଷକ ରୂପେ ଲୋକ ପ୍ରେରଣ କରିବେ ଏବଂ ଆପଣ ନିର୍ବିଘ୍ନରେ ପହଞ୍ଚିବେ । ତାଙ୍କର ଯିବା ପ୍ରସ୍ତୁତ ଜାଣି ସନ୍ନ୍ୟାସିମାନଙ୍କ ଠାରୁ ଆରମ୍ଭ କରି ଶୀଳଭଦ୍ର ପର୍ଯ୍ୟନ୍ତ ସମସ୍ତେ ସେ କାହିଁକି ଯିବାକୁ ତତ୍ପର ବୋଲି ପଚାରନ୍ତେ ସେ କହିଲେ- ମୁଁ ବୁଦ୍ଧଙ୍କ ଜନ୍ମ ସ୍ଥାନରୁ ଯାହା ଶିକ୍ଷା କରିଛି ତାହା ଦେଶବାସୀଙ୍କୁ ଦାନ କରିବାକୁ ଚାହେଁ । ଶେଷରେ ଶୀଳଭଦ୍ର ରାଜିହେଲେ । ଦୁଇ ଦିନ ପରେ କୁମାର ରାଜଙ୍କ ଦୂତ ପତ୍ର ଆଣିଲା । ସେଥିରେ ଲେଖାଥିଲା- ଆପଣଙ୍କ ଶିଷ୍ୟ ଚୀନ ଦେଶବାସୀ ଆଚାର୍ଯ୍ୟଙ୍କୁ ଦେଖିବାକୁ ଇଚ୍ଛୁକ ଅଛୁ । ଅନୁରୋଧ, ତାଙ୍କୁ ପ୍ରେରଣ କରି ଇଚ୍ଛା ପୂର୍ଣ୍ଣ କରିବେ ।" ପ୍ରଥମେ ଶୀଳଭଦ୍ର ରାଜି ନ ହେବାରୁ ରାଜା ଅନୁରୋଧ କରି ପତ୍ରଟିଏ ଦେଲେ ଅଳ୍ପ ସମୟ ପାଇଁ ସାକ୍ଷାତ କରିବାକୁ । ପୁନଃ ସେ ରାଜି ନ ହେବାରୁ ରାଜା କ୍ରୋଧରେ ଚିଠି ଲେଖିଲେ- "ଯଦି ସେ ନ ଆସନ୍ତି ତେବେ ଏହି ଶିଷ୍ୟଙ୍କୁ ଦୁସ୍ତବୃତ୍ତି ଜୟ କରିବ । ଅଳ୍ପ ଦିନ ପୂର୍ବେ ଶଶାଙ୍କ ରାଜ ଧର୍ମଶାସ୍ତ୍ର-

ସମୂହ ଧ୍ୱଂସ ଓ ବୋଧିଦ୍ରୁମ ଉତ୍ପାଟନ କରିଥିଲେ । ଆପଣ କ'ଣ ମନେ କରନ୍ତି ଏହି ଶିଷ୍ୟର ସେପରି ଶକ୍ତି ନାହିଁ ? ଆବଶ୍ୟକ ହେଲେ ସୈନ୍ୟ ଓ ହସ୍ତୀଙ୍କୁ ସଜ୍ଜିତ କରି ନାଳନ୍ଦ ମଠ ଆକ୍ରମଣ କରି ମୁହୂର୍ତ୍ତକରେ ସମସ୍ତ ଧୂଳିସାତ୍ କରିବ ।" ଏ ଚିଠି ପାଇବା ପରେ ଶୀଳଭଦ୍ର ହୁଏନ୍ ସାଂଙ୍କୁ କହିଲେ କୁମାର ଧର୍ମ ପରାୟଣ ବ୍ୟକ୍ତି । ତାଙ୍କ ରାଜ୍ୟରେ ଅଦ୍ୟାପି ବୌଦ୍ଧ ଧର୍ମତତ୍ତ୍ୱ ପ୍ରଚାର ହୋଇନାହିଁ । ଆପଣଙ୍କ ପ୍ରତି ସେ ଅନୁରକ୍ତ । ଆପଣ ତାଙ୍କ ନିକଟକୁ ଗମନ କରନ୍ତୁ । ହୁଏନ୍ ସାଂ ଶୀଳଭଦ୍ରଙ୍କ କଥାନୁଯାୟୀ କୁମାର ରାଜଙ୍କ ନିକଟକୁ ଗଲେ । ରାଜା ତାଙ୍କୁ ଧୂପଦାନ ଓ ପୁଷ୍ପହାର ଦ୍ୱାରା ଅର୍ଚ୍ଚନା କଲେ ଓ ସାଧାରଣ ପର୍ବ ଦିବସର ନିୟମ ପାଳନ ପାଇଁ ଅନୁରୋଧ କଲେ । ଏପରି ମାସାଧିକ କାଳ ଅତିବାହିତ ହେଲା । ରାଜା ଶୀଳାଦିତ୍ୟ କଙ୍ଗୋଧ ଅଭିଯାନରୁ ପ୍ରତ୍ୟାବୃତ୍ତ ହୋଇ ଶୁଣିଲେ ହୁଏନ୍ ସାଂ ସେ ଯାବତ୍ କୁମାରଙ୍କ ସହ ଅବସ୍ଥାନ କରୁଛନ୍ତି । ସେ ବିସ୍ମୟରେ କହିଲେ- "ମୁଁ ତାଙ୍କୁ ଏଠାକୁ ଆସିବାକୁ ବାରମ୍ବାର ଅନୁରୋଧ କରିଥିଲି ଏଠାକୁ ନ ଆସି ସେଠାରେ କିପରି ଅବସ୍ଥାନ କରିଛନ୍ତି । ସେ ହୁଏନ୍ ସାଂଙ୍କୁ ଶୀଘ୍ର ପ୍ରେରଣ କରିବାକୁ କୁମାର ରାଜଙ୍କ ନିକଟକୁ ଦୂତ ପ୍ରେରଣ କରିବାରୁ ରାଜା କହିଲେ 'ମୋ ମୁଣ୍ଡ ନେଇ ପାରନ୍ତି, ହୁଏନ୍ ସାଂଙ୍କୁ ନେଇପାରିବେ ନାହିଁ । ଶୀଳାଦିତ୍ୟ ଏହା ଶୁଣି କ୍ରୋଧାନ୍ୱିତ ହୋଇ ଆଉ ଏକ ପତ୍ର ପଠାଇଲେ । ଦୂତ ତାଙ୍କ ଆଦେଶାନୁସାରେ କୁମାର ରାଜଙ୍କୁ କହିଲା- "ଶୀଳାଦିତ୍ୟଙ୍କ ଆଦେଶ ଯେ ଆପଣ ଏହି ଦୂତ ହସ୍ତରେ ଆପଣଙ୍କ ମୁଣ୍ଡ ପ୍ରେରଣ କରନ୍ତୁ ।"

ଏହାପରେ କୁମାର ରାଜ ଭୟଭୀତ ହୋଇ ବିଂଶ ସହସ୍ର ହାତୀ ଓ ତ୍ରିଂଶତ୍ ସହସ୍ର ତରୀ ସଜ୍ଜିତ କରି ହୁଏନ୍ ସାଂଙ୍କ ସହିତ ଯାଇଥିଲେ । ହୁଏନ୍ ସାଂଙ୍କୁ ଗଙ୍ଗା ନଦୀ କୂଳରେ ସ୍ଥାପିତ ଶିବିରରେ ରଖାଇ ଶୀଳଦିତ୍ୟଙ୍କୁ ସାକ୍ଷାତ କରିବାକୁ ଯିବାରୁ ସେ ହୁଏନ୍ ସାଂ କାହିଁକି ଆସି ନାହାନ୍ତି ପଚାରିବାରୁ କୁମାର ରାଜ କହିଲେ ଆପଣ କଥୋପକଥନ ପାଇଁ ତାଙ୍କୁ ଡକାଇ ଆଣନ୍ତୁ । ଶୀଳାଦିତ୍ୟ ରାତିର ପ୍ରଥମ ପ୍ରହରରେ ସେଠାରେ ପହଞ୍ଚି ହୁଏନ୍ ସାଂଙ୍କୁ ପ୍ରଣିପାତ ପୂର୍ବକ ପଚାରିଲେ ଆପଣଙ୍କର ଏହି ଶିଷ୍ୟ ଆପଣଙ୍କୁ ବହୁଦିନ ହେବ ନିମନ୍ତ୍ରଣ କରିଥିଲା । ଆପଣ ଅନୁରୋଧ ରକ୍ଷାକଲେ ନାହିଁ କାହିଁକି ? ହୁଏନ୍ ସାଂ କହିଲେ ବୁଦ୍ଧଙ୍କ ଧର୍ମତତ୍ତ୍ୱାନ୍ୱେଷଣ ଓ ଯୋଗଭୂମି ଶାସ୍ତ୍ର ଶ୍ରବଣ ପାଇଁ ଆଗମନ କରିଛି । ଆପଣଙ୍କ ଆଦେଶ ପ୍ରାପ୍ତି ସମୟରେ ତା'ର ସମସ୍ତ କାର୍ଯ୍ୟ ସମାପ୍ତ ହୋଇନଥିଲା ।" କିଛି କଥୋପକଥନ ପରେ ପରଦିନ ପ୍ରାତଃ କାଳରେ ଶୀଳାଦିତ୍ୟ ତାଙ୍କୁ ପ୍ରାସାଦକୁ ନିମନ୍ତ୍ରଣ କରି ନେଲେ । ଆହାରାନ୍ତେ ରାଜା ପଚାରିଲେ- ଶୁଣିଛି, ଆଚାର୍ଯ୍ୟ ଦୁଷ୍ଟମତ ଖଣ୍ଡନ ପାଇଁ ଆପଣ ଯେଉଁ ଶାସ୍ତ୍ର ପ୍ରଣୟନ କରିଛନ୍ତି, ତାହା କାହିଁ ? ହୁଏନ୍ ସାଂ ତାହା ତାଙ୍କୁ ଦେଲେ ଓ ସେ ତାହା ପାଠକରି ବେଶ୍ ଆହ୍ଲାଦିତ ହେଲେ ।

ଶୀଳାଦିତ୍ୟଙ୍କ ଏକ ଭଗ୍ନୀ ଥିଲେ । ସେ ବୁଦ୍ଧିମତୀ ଓ ସମ୍ମତୀୟ ମତାବଲମ୍ବୀ ଶାସ୍ତ୍ର ଅଧ୍ୟୟନ କରିଥିଲେ । ହୁଏନ୍ ସାଂଙ୍କ ମୁଖରୁ ମହାଯାନ ତତ୍ତ୍ୱର ମହତ୍ତ୍ୱ ଓ ହୀନଯାନ ତତ୍ତ୍ୱର ହୀନତ୍ୱ ଶ୍ରବଣ କରି ବେଶ୍ ଆନନ୍ଦିତ ହେଲେ । ରାଜା ଏକ ସମ୍ମିଳନୀ ଡକାଇ ତାଙ୍କ ମତ ପ୍ରତିଷ୍ଠା କରିବାକୁ ଅନୁରୋଧ କଲେ । ହୁଏନ୍ ସାଂଙ୍କ ସହିତ ଶାସ୍ତ୍ରାଲୋଚନା କରିବାକୁ ଭିନ୍ନଭିନ୍ନ ଦେଶର ଭିନ୍ନ ମତାବଳମ୍ବୀମାନଙ୍କୁ ନିମନ୍ତ୍ରଣ କରାଗଲା । ଏଥିରେ ଭାରତର ଅଠର ଦେଶର ରାଜା, ମହାଯାନ ଓ ହୀନଯାନରେ ପୂର୍ଣ୍ଣଜ୍ଞାନସଂପନ୍ନ ତିନି ସହସ୍ର ଆଚାର୍ଯ୍ୟ, ତିନି ସହସ୍ର ବ୍ରାହ୍ମଣ ଓ ନିର୍ଗ୍ରନ୍ଥ ଏବଂ ନାଳନ୍ଦ ମଠର ଏକ ସହସ୍ର ଆଚାର୍ଯ୍ୟ ସତବେତ ହୋଇଥିଲେ । ସଭାସ୍ଥଳରେ ପୂଜା ବିଧି ପରେ, ବୁଦ୍ଧୋପାସନ ପରେ ସେ ଶାସ୍ତ୍ରାଲୋଚନା କଲେ । କେହି ତାଙ୍କ ମତ ଖଣ୍ଡନ କରିପାରିଲେ ନାହିଁ । ଏହିପରି ଆଲୋଚନା ପାଞ୍ଚଦିନ ଚାଲିଲା । ମହାଯାନ ମହତ୍ତ୍ୱ ବିଷୟ ଆଲୋଚନା ହେଲା । ହୀନଯାନୀଙ୍କ ମତ ସମର୍ଥିତ ନ ହେବାରୁ ସେମାନେ ରାଗି ହୁଏନ୍ ସାଂଙ୍କୁ ହତ୍ୟା କରିବାକୁ ଷଡ଼ଯନ୍ତ୍ର କଲେ । ଶୀଳାଦିତ୍ୟ ଏହା ଅବଗତ ହୋଇ ହୁଏନ୍ ସାଂଙ୍କ ମତ ସମର୍ଥନ କରିବାରୁ ବିରୁଦ୍ଧମତାବଲମ୍ବୀଗଣ ସଭା ତ୍ୟାଗ କଲେ । ଏହାଦ୍ୱାରା ବହୁଲୋକ ହୀନଯାନର ଭ୍ରମାତ୍ମକ ପଥ ତ୍ୟାଗକରି ମହାଯାନ ମତ ଗ୍ରହଣ କଲେ । ରାଜା ଶୀଳାଦିତ୍ୟ ତାଙ୍କୁ ବହୁ ସ୍ୱର୍ଣ୍ଣ- ରୌପ୍ୟ ମୁଦ୍ରା, ପରିଚ୍ଛଦ ତଥା ଉପସ୍ଥିତ ଅଷ୍ଟାଦଶ ନରପତି ବହୁ ମୂଲ୍ୟ ରତ୍ନ ଉପହାର ଦେଲେ ବି ସେ ତାହା ଗ୍ରହଣ କଲେ ନାହିଁ । ତାଙ୍କୁ ପଟ୍ଟଆରରେ ସମ୍ମାନର ସହ ନିଆଯିବାକୁ ସେ ବାରଣ କରିବାରୁ, ରାଜା ଏହା ପ୍ରଥା ବୋଲି କହି ପଟ୍ଟ-ଆରରେ ନେଲେ ।

ହୁଏନ୍ ସାଂଙ୍କ କୃତିତ୍ୱରେ ସମସ୍ତେ ପ୍ରୀତ ହୋଇ ତାଙ୍କ ପ୍ରତିପାଦିତ ମତାନୁରୂପ ତାଙ୍କ ନାମକରଣ କରିବାର ପ୍ରସ୍ତାବ ଦେଲେ । ସମସ୍ତଙ୍କ ମତାନୁସାରେ ମହାଯାନାବଲମ୍ବୀଗଣ ତାଙ୍କୁ ମହାଯାନ ଦେବ ଓ ହୀନଯାନବଲମ୍ବୀଗଣ ମୋକ୍ଷ ଦେବ ନାମରେ ଅଭିହିତ କଲେ । ଏହାପରେ ତାଙ୍କ କୀର୍ତ୍ତି ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା । ରାଜପ୍ରାସାଦର ପଶ୍ଚିମ ପାର୍ଶ୍ୱରେ ଏକ ସଂଘାରାମ ଥିଲା, ଯାହାର ପୃଷ୍ଠପୋଷକ ଥିଲେ ଶୀଳାଦିତ୍ୟ । ଏଠାରେ ଦେଢ଼ ଇଞ୍ଚ ଲମ୍ବର ଏକ ଦଣ୍ଡ ରଖାଯାଇଥିଲା । ତାହା ଈଷତ୍ ହରିତାଭ ଓ ସେଥିରୁ ସର୍ବଦା ଉଜ୍ଜ୍ୱଳ ଆଲୋକ ନିର୍ବାପିତ ହେଉଥିଲା । କାଶ୍ମୀରରେ ବୁଦ୍ଧଙ୍କର ଗୋଟିଏ ଦନ୍ତ ରଖାଯାଇଥିବା ଶୁଣି ରାଜା ଶୀଳାଦିତ୍ୟ ସୀମାନ୍ତକୁ ଯାଇ ତା'ର ପୂଜା ନିମିତ୍ତ ସନ୍ନ୍ୟାସିଗଣଙ୍କ ଅନୁମତି ମାଗିବାରୁ ଲୋଭାସକ୍ତ ସନ୍ନ୍ୟାସିମାନେ ପ୍ରଥମେ ଅନିଚ୍ଛୁକ ହୋଇଥିଲେ । ମାତ୍ର ତାଙ୍କ ମହନୀୟ ଗୁଣାବଳୀରେ ଭୀତହୋଇ ଇତସ୍ତତଃ ଖୋଳିବାରୁ ତାହା ପାଇ ଶୀଳାଦିତ୍ୟଙ୍କୁ ଦେଲେ ଓ ସେ ଭକ୍ତିରେ ତାକୁ ପୂଜାକଲେ । ଏହାପରେ ସଭା ଭଙ୍ଗ ହେଲା । ରାଜା ବୁଦ୍ଧଙ୍କ ମୂର୍ତ୍ତି, ଅର୍ଥ ଓ

ପରିଚ୍ଛଦାଦି ସବୁ ସଂଘାରାମକୁ ପ୍ରଦାନ କଲେ ଏବଂ ତାକୁ ସମ୍ମାନର ସହ ରଖିବାକୁ କହିଲେ । ଊନବିଂଶ ଦିବସରେ ସଭାକାର୍ଯ୍ୟ ସମାପ୍ତ ହେବାପରେ ହୁଏନ୍ ସାଂ ନାଳନ୍ଦ ମଠାଧିବାସୀ ଆଚାର୍ଯ୍ୟଙ୍କ ଠାରୁ ବିଦାୟ ଗ୍ରହଣ କରି ଗୃହାଭିମୁଖେ ଯିବାକୁ ରାଜାଙ୍କୁ ସାକ୍ଷାତ କଲେ । ଶୀଳାଦିତ୍ୟ ପ୍ରୟାଗର ଗଙ୍ଗା ଓ ଯମୁନା ସଙ୍ଗମ ସ୍ଥଳରେ ଅଳ୍ପଦିନ ପରେ ଯେଉଁ ଷଷ୍ଠ ଧର୍ମସଭା ଅନୁଷ୍ଠିତ ହେବ, ସେ ପର୍ଯ୍ୟନ୍ତ ରହିବାକୁ ଅନୁରୋଧ କଲେ । ହୁଏନ୍ ସାଂ ତାଙ୍କ ଅନୁରୋଧ ରକ୍ଷା କରିବା ସହିତ ପ୍ରୟାଗ ଅଭିମୁଖେ ଯାତ୍ରା କରିବାକୁ ପ୍ରସ୍ତୁତ ହେଲେ ।

ନଦୀଦ୍ୱୟ ସଙ୍ଗମ ସ୍ଥଳରେ ଥିବା ଚତୁର୍ଦ୍ଦଶ ବା ପଞ୍ଚଦଶ ଲି ଆୟତନ ବିଶିଷ୍ଟ ଭୂମି ଖଣ୍ଡରେ ପୂର୍ବରୁ ଦାନ ବିତରଣ ହୋଇ ଆସୁଥିବାରୁ ତା'ର ନାମ ଦାନଭୂମି ଥିଲା । ଏଠାରେ ଯାହା ଦାନ କରାଯାଏ, ତାର ଫଳ ମିଳିଥାଏ । ମହାସଭା ପାଇଁ ଗୃହ ନିର୍ମାଣ ହେଲା । ବିତରଣ ପାଇଁ ସ୍ୱର୍ଣ୍ଣ, ରୌପ୍ୟ, ମୁକ୍ତାଦି ଗୃହ ମଧ୍ୟରେ ସଂରକ୍ଷିତ ରହିଲା । ଭାରତର ବିଭିନ୍ନ ସ୍ଥାନରୁ ଶ୍ରମଣ, ଧର୍ମ ବିରୋଧୀ, ନିର୍ଗ୍ରନ୍ଥ, ଦରିଦ୍ର, ଅନାଥ ଓ ଅସଙ୍ଗ ବ୍ୟକ୍ତି ଏହି ସ୍ଥାନରେ ସମବେତ ହୋଇ ଭିକ୍ଷା ଗ୍ରହଣ କରିବାକୁ ଆଦେଶ ପ୍ରଚାରିତ ହୋଇଥିଲା । ହୁଏନ୍ ସାଂ କାନ୍ୟକୁବ୍ଜ ସଭାରୁ ପ୍ରୟାଗର ଭିକ୍ଷା ବିତରଣ ସଭାକୁ ଗଲେ । ଶୀଳାଦିତ୍ୟ ମଧ୍ୟ ଗଙ୍ଗାନଦୀର ଉତ୍ତର କୂଳରେ ତାଙ୍କର ଶିବିର ସ୍ଥାପନ କରିଥିଲେ । ପ୍ରଥମ ଦିନ ଦାନ ସ୍ଥଳରେ ଗୋଟିଏ ତୃଣ ଆଚ୍ଛାଦିତ ଗୃହରେ ବୁଦ୍ଧଙ୍କ ମୂର୍ତ୍ତି ସ୍ଥାପନ କରାଗଲା । ତତ୍ପରେ ବହୁ ମୂଲ୍ୟ ଦ୍ରବ୍ୟ, ବସ୍ତ୍ର ଓ ଖାଦ୍ୟ ବିତରଣ ହେଲା । ଦ୍ୱିତୀୟ ଦିବସରେ ଆଦିତ୍ୟ ଦେବଙ୍କ ମୂର୍ତ୍ତି ସ୍ଥାପିତ ହୋଇ ବହୁମୂଲ୍ୟ ଦ୍ରବ୍ୟ ଓ ବସ୍ତ୍ର ବିତରଣ କରାଗଲା । ତୃତୀୟ ଦିନରେ ଈଶ୍ୱର ଦେବଙ୍କ ମୂର୍ତ୍ତି ସ୍ଥାପନ କରାଯାଇ ପୂର୍ବଦିନ ପରି ସମସ୍ତ ଜିନିଷ ବିତରଣ କରାଗଲା । ଚତୁର୍ଥ ଦିନରେ ଏକଶତ ଶ୍ରେଣୀଭୁକ୍ତ ଦଶ ସହସ୍ର ସନ୍ନ୍ୟାସୀଙ୍କ ମଧ୍ୟରେ ଦାନ ବିତରିତ ହେଲା । ପଞ୍ଚମ ଦିବସରେ ବ୍ରାହ୍ମଣମାନଙ୍କ ମଧ୍ୟରେ, ଷଷ୍ଠ ଦିବସରେ ଧର୍ମ ବିରୋଧୀଙ୍କ ମଧ୍ୟରେ, ସପ୍ତମ ଦିବସରେ ଭିକ୍ଷୁକଙ୍କ ମଧ୍ୟରେ, ଅଷ୍ଟମ ଦିବସରେ ଦରିଦ୍ର-ଅନାଥଙ୍କ ମଧ୍ୟରେ ସମ୍ମିଳନୀ କାର୍ଯ୍ୟ ସମାପ୍ତିପରେ ଆଗନ୍ତୁକ ନରପତିଗଣ ଅର୍ଥ ଓ ଅନ୍ୟାନ୍ୟ ପଦାର୍ଥ ବିତରଣ କଲେ । ଶୀଳାଦିତ୍ୟ କଣ୍ଠହାର, ମସ୍ତକ ମଣି, ରାଜ ପରିଚ୍ଛଦ ଇତ୍ୟାଦି ମଧ୍ୟ ବିତରଣ କରି ଦେଇଥିଲେ ।

ଏହାପରେ ହୁଏନ୍ ସାଂ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପାଇଁ ଅନୁମତି ମାଗନ୍ତେ ରାଜା କହିଲେ- "ଆପଣଙ୍କ ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୋଇ ଆପଣଙ୍କର ଏହି ଶିଷ୍ୟ ମଧ୍ୟ ଚତୁର୍ଦ୍ଦିଗରେ ବୁଦ୍ଧଙ୍କ ପ୍ରଦତ୍ତ ଧର୍ମତତ୍ତ୍ୱ ପ୍ରଚାର କରିବାର ଅଭିଳାଷ କରିଅଛି । ଆପଣ କାହିଁକି ଏତେଶୀଘ୍ର ଚାଲିଯିବେ ?" (ପୃ-୨୪୯) ଏହାପରେ ହୁଏନ୍ ସାଂ ପୁଣି ଦଶ ଦିନ ଅପେକ୍ଷା କଲେ । ବାସ୍ତବରେ ରାଜା ହୁଏନ୍ ସାଂଙ୍କୁ ଛାଡ଼ିବାକୁ ଚାହୁଁନଥିଲେ । ହୁଏନ୍ ସାଂ କହିଲେ ଚୀନ୍ ଦେଶରେ ଏବେ ବୁଦ୍ଧଙ୍କ ଧର୍ମତତ୍ତ୍ୱ ଅଳ୍ପ ଦିବସ ହେବ ଶ୍ରୁତିଗୋଚର ହୋଇଛି । ଧର୍ମ

ଭିତରେ ରହିଥିବା ବିଭେଦ ଲୋପ ମୋର ଉଦ୍ଦେଶ୍ୟ । ମୁଁ ଯେଉଁ ଧର୍ମତତ୍ତ୍ୱ ଶିଖିଛି ତାହା ବିତରଣ କରିବାର ଆବଶ୍ୟକତା ରହିଛି । ଯେଉଁ ବ୍ୟକ୍ତି ଅପର ଲୋକଙ୍କ ଧର୍ମଜ୍ଞାନ ଲାଭରେ ବିଘ୍ନ ଉତ୍ପାଦନ କରେ, ସେ ଜନ୍ମ ଜନ୍ମାନ୍ତରେ ଅନ୍ଧ ହୁଏ ।” ଏହାପରେ ରାଜା ତାଙ୍କୁ ବାଧ୍ୟ କରିନଥିଲେ । ତାଙ୍କୁ ରାଜା ଶୀଳାଦିତ୍ୟ ଓ କୁମାର ରାଜ ଅନେକ ସ୍ୱର୍ଣ୍ଣମୁଦ୍ରା ଏବଂ ମୂଲ୍ୟବାନ ଦ୍ରବ୍ୟ ପ୍ରଦାନ କଲେ ହେଁ ସେ ତାହା ଗ୍ରହଣ କରିନଥିଲେ । କେବଳ କୁମାରରାଜଙ୍କ ଠାରୁ ସୁକୋମଳ ଲୋମଗର୍ଭକ ସ୍ଥୂଳ-ଚର୍ମ-ନିର୍ମିତ ଜଳର ଅଭେଦ୍ୟ ଅଙ୍ଗାବରଣଟିଏ ଗ୍ରହଣ କରିଥିଲେ ।

ହୁଏନ୍ ସାଂ ବିଦାୟ ନେବା ସମୟରେ ବହୁ ସଂଖ୍ୟକ ଅନୁଚର ତାଙ୍କ ସହିତ ଅନେକ ଦୂର ପର୍ଯ୍ୟନ୍ତ ଯାଇଥିଲେ । ତାଙ୍କୁ ବିଦାୟ ଦେବା ବେଳେ ସମସ୍ତଙ୍କ ଚକ୍ଷୁ ଲୋତକାପ୍ଳୁତ ହୋଇଯାଇଥିଲା । ସେ ସଂଗ୍ରହ କରିଥିବା ପୁସ୍ତକ ଓ ମୂର୍ତ୍ତି ଅଶ୍ୱ ପୃଷ୍ଠରେ ପ୍ରେରଣ ପାଇଁ ଉତ୍ତର-ଭାରତବର୍ଷସ୍ଥ ଉଧିତ ନାମକ ରାଜାଙ୍କ ସୈନିକ-ରକ୍ଷିବର୍ଗଙ୍କ ହସ୍ତରେ ସମର୍ପଣ କଲେ । ସେମାନଙ୍କ ଧୀର ଗତି ଯୋଗୁଁ ଶୀଳାଦିତ୍ୟ ଏକ ହସ୍ତୀ ପ୍ରେରଣ କଲେ । ବାଟ ଖର୍ଚ୍ଚ ପାଇଁ ତିନି ସହସ୍ର ସ୍ୱର୍ଣ୍ଣ ମୁଦ୍ରା ଓ ଦଶ ସହସ୍ର ରୌପ୍ୟ ମୁଦ୍ରା ପ୍ରଦାନ କଲେ । ମହାତାର ନାମକ ଚାରିଜଣ ବିଶିଷ୍ଟ କର୍ମଚାରୀଙ୍କୁ ତାହାଙ୍କ ଶରୀର ରକ୍ଷୀ ରୂପେ ପ୍ରେରଣ କଲେ । ପତ୍ର ଲେଖି କେତେକ ଦେଶର ନରପତିଙ୍କୁ ହୁଏନ୍ ସାଂଙ୍କ ଗମନ ସମୟରେ ଯାନବାହନ ପ୍ରଦାନ କରିବାକୁ ଓ ଆବଶ୍ୟକ ହେଲେ ଚୀନ ଦେଶ ସୀମାନ୍ତରେ ପହଞ୍ଚାଇ ଦେବା ସକାଶେ ଅନୁରୋଧ କରିଥିଲେ ।

ହୁଏନ୍ ସାଂ ପ୍ରୟାଗରୁ ଦକ୍ଷିଣ ପଶ୍ଚିମ ଦେଇ ସପ୍ତମ ଦିନରେ ଏକ ବିସ୍ତୀର୍ଣ୍ଣ ମରୁଭୂମି ଅତିକ୍ରମ ପୂର୍ବକ କୋଶାମ୍ବି ରାଜ୍ୟରେ ପହଞ୍ଚିଲେ । ଏଠାରେ ପବିତ୍ର ସ୍ଥାନମାନ ଦର୍ଶନ କରି ଉଧିତ ରାଜାଙ୍କ ସହ ବିଭିନ୍ନ ଦେଶ ମଧ୍ୟରେ ମାସାଧିକ କାଳ ଉତ୍ତର-ପଶ୍ଚିମ ଦିଗରେ ଭ୍ରମଣ କଲେ । ତତ୍ପରେ ଉତ୍ତର-ପଶ୍ଚିମ ଦିଗରେ ତିନି ଯୋଜନା ଅତିକ୍ରମ କରି ବୀରାସନଙ୍କ ରାଜଧାନୀରେ ପହଞ୍ଚିଲେ । ଏଠାରେ ସେ ଦୁଇମାସ ରହିଲେ । ସେଠାରେ ସିଂହପ୍ରଭ ଓ ସିଂହଚନ୍ଦ୍ର ନାମକ ସହାଧ୍ୟାୟୀଙ୍କ ସହ ସାକ୍ଷାତ୍ ହେବାରୁ ତାଙ୍କ ସହ କୋଷ ସମ୍ପରିଗ୍ରହ ଶାସ୍ତ୍ର, ବିଦ୍ୟାମାତ୍ର ସିଦ୍ଧିଶାସ୍ତ୍ର ଓ ଅନ୍ୟାନ୍ୟ ଶାସ୍ତ୍ର ଆଲୋଚନା କଲେ । ତତ୍ପରେ ଉତ୍ତର-ପଶ୍ଚିମ ଦିଗରେ ମାସାଧିକ କାଳ ଗମନ କରି ଉତ୍ତର-ଭାରତ ଜଳନ୍ଧର ରାଜ୍ୟରେ ପହଞ୍ଚିଲେ । ଏଠାରେ ଏକ ମାସ କାଳ ରହିଲେ । ପରେ ଉଧିତ ରାଜ ପ୍ରେରିତ ପଥ ପ୍ରଦର୍ଶକଙ୍କ ସହିତ ସେ ପଶ୍ଚିମ ଦିଗରେ କୋଡ଼ିଏ ଦିନ ଚାଲି ସିଂହପୁର ଦେଶରେ ପହଞ୍ଚିଲେ । ପ୍ରାୟ ଏକଶତ ସନ୍ନ୍ୟାସୀ ତାଙ୍କ ସାଙ୍ଗରେ ଯାଉଥିଲେ । ଏହି ସ୍ଥାନ ଦସ୍ୟୁସଂକୁଳ ହୋଇଥିବାରୁ ସେମାନଙ୍କ

ସହିତ ସଂଘର୍ଷରେ ପୁସ୍ତକ ଓ ମୂର୍ତ୍ତି ଅପହୃତ ହେବା ଆଶଙ୍କାରେ ସେ ଏକ ସନ୍ନ୍ୟାସୀ ଭ୍ରାତାଙ୍କୁ ଆଗରେ ପଠାଇଥିଲେ ଓ ସେ ଦସ୍ୟୁମାନଙ୍କୁ କହୁଥିଲେ- "ଆମ୍ଭେମାନେ ଧର୍ମତତ୍ତ୍ୱାନ୍ୱେଷଣରେ ବହୁଦୂରରୁ ଆସିଅଛୁ ଏବଂ କେବଳ ଧର୍ମପୁସ୍ତକ, ମୂର୍ତ୍ତି ଓ ପବିତ୍ର ସଙ୍କେତସମୂହ ଘେନି ଯାଉଅଛୁ । ପ୍ରାର୍ଥନା ଯେ, ଆମ୍ଭମାନଙ୍କ ପ୍ରତି ପ୍ରତିକୂଳଭାବ ପୋଷଣ ନ କରି ଆପଣମାନେ ଆମ୍ଭମାନଙ୍କ ଦାନପତି ହୁଅନ୍ତୁ ।" ଏହି ଉପାୟରେ ସେମାନେ ଦସ୍ୟୁମାନଙ୍କ ଅତ୍ୟାଚାରରୁ ନିଜକୁ ରକ୍ଷା କରୁଥିଲେ ।

କୋଡ଼ିଏ ଦିନ ଚାଲିବା ପରେ ସେମାନେ ତକ୍ଷଶିଳାରେ ପହଞ୍ଚିଲେ । କାଶ୍ମୀର ରାଜା ହୁଏନ୍ ସାଂଙ୍କୁ ତକ୍ଷଶିଳାରୁ ନିଜ ରାଜ୍ୟକୁ ନେବା ପାଇଁ ଦୂତ ପ୍ରେରଣ କରିଥିଲେ ହେଁ ସାଙ୍ଗରେ ଅନେକ ଜିନିଷ ଥିବାରୁ ସେ ଯାଇ ପାରିଲେ ନାହିଁ । ଏହାପରେ ସିନ୍ଧୁନଦୀ ନିକଟରେ ପହଞ୍ଚି ପୁସ୍ତକ ଓ ମୂର୍ତ୍ତି ସବୁ ଘେନି ନୌକାରେ ଅନ୍ୟମାନେ ଏବଂ ହୁଏନ୍ ସାଂ ହାତୀ ପୃଷ୍ଠରେ ନଦୀପାର ହେଲେ । କିନ୍ତୁ ଜଣେ ପୁସ୍ତକ ରକ୍ଷକ ନଦୀ ସ୍ରୋତରେ ପଡ଼ିଯିବାରୁ ପ୍ରାୟ ୫୦ ଖଣ୍ଡ ସୂତ୍ରଗ୍ରନ୍ଥ ଓ ପୁଷ୍ପବୀଜ ସବୁ ନଦୀ ସ୍ରୋତରେ ଜଳମଗ୍ନ ହୋଇଗଲା । ଏହି ସମୟରେ କପିଶା ନରପତି ଉଟଖଣ୍ଡରେ ଅବସ୍ଥାନ କରୁଥିଲେ । ହୁଏନ୍ ସାଂଙ୍କ ବିଷୟ ଶୁଣି ତାଙ୍କୁ ରାଜଧାନୀକୁ ଯିବାକୁ ଅନୁରୋଧ କଲେ । ତାଙ୍କ ଅନୁରୋଧ ରକ୍ଷା କରି ସେ ରାଜଧାନୀର ଏକ ମଠରେ ୫୦ ଦିନ ରହିଥିଲେ । କାଶ୍ମୀର ରାଜା ଏହି ଅବସରରେ ତାଙ୍କ ସହିତ ସାକ୍ଷାତ କରିଥିଲେ । ଏହାପରେ ଉତ୍ତର-ପଶ୍ଚିମ ଦିଗରେ ଏକମାସ ଚାଲି ରାଜ୍ୟ ସୀମାନ୍ତରେ ପହଞ୍ଚିଥିଲେ । କପିଶା ନରପତି, ଯୁବରାଜ ଏବଂ ଅନେକ ଲୋକ ତାଙ୍କୁ ସମ୍ମାନର ସହିତ ପାଛୋଟି ନେଇଥିଲେ । ସେଠାରେ ସେ ଉପସ୍ଥିତ ହୋଇ ମହାଯାନ ମନ୍ଦିରରେ ଅବସ୍ଥାନ କଲେ । ରାଜା ଏକ ସଭାର ଆୟୋଜନ କରି ପଞ୍ଚ ସପ୍ତତିତମ ଦିବସ ପର୍ଯ୍ୟନ୍ତ ମୋକ୍ଷ ମହାଦାନ ନାମକ ଭିକ୍ଷା ଦାନ କରିଥିଲେ । ତତ୍ପରେ ସେଠାରୁ ଦକ୍ଷିଣ ଦିଗରେ ଯାଇ ପନ୍ଦର ଦିନ ପରେ 'ବାରଣ'ରେ ପହଞ୍ଚି ପବିତ୍ର ସ୍ଥାନମାନ ଦର୍ଶନ କଲେ । ସେଠାରୁ ଉତ୍ତର-ପଶ୍ଚିମ ଦିଗରେ ଯାଇ ସୌକୂଟ ରାଜ୍ୟ ଓ ସେଠାରୁ ଫୋ-ଲି-ଶି ଏବଂ ବର୍ଜସ୍ଥାନ ରାଜ୍ୟରେ ପହଞ୍ଚିଲେ । ସେଠାକାର ରାଜା ସାତଦିନ କାଳ ଭିକ୍ଷାଦାନ ସକାଶେ ସଭା ଆହ୍ୱାନ କଲେ । ହୁଏନ୍ ସାଂ ଏଠାରୁ ତାଙ୍କଠାରୁ ବିଦାୟ ନେଇ କୋଶପମ ରାଜ୍ୟ ଓ ସେଠାରୁ ଉତ୍ତରାଭିମୁଖେ ଯାତ୍ରାକଲେ । ସାତଦିନ ଯାତ୍ରାପରେ ପର୍ବତ ଶିଖରରେ ପହଞ୍ଚିଲେ । ଅଶ୍ୱ ପୃଷ୍ଠରେ ଆରୋହଣ ସମ୍ଭବ ନ ହେବାରୁ ସେ ହାତରେ ଥିବା ଦଣ୍ଡ ସାହାଯ୍ୟରେ ପଥ ଅତିକ୍ରମ କଲେ । ପରେ ଭୀଷଣ ଗିରି ସଙ୍କଟ ଦେଇ ଅନ୍ତରବ ନାମକ ଦେଶରେ ପହଞ୍ଚିଲେ । ଏଠାରେ ତିନୋଟି ସଂଘାରାମ ଥିଲା ଓ ତହିଁରେ କେତେକ ସନ୍ନ୍ୟାସୀ ରହୁଥିଲେ । ସେମାନେ ସମସ୍ତେ ଥିଲେ ମହାସଂଘିତ

ମତାବଲମ୍ବୀ । ଅଶୋକଙ୍କ ଦ୍ୱାରା ନିର୍ମିତ ସ୍ତୂପଟିଏ ମଧ୍ୟ ଏଠାରେ ରହିଥିଲା । ଏହାପରେ ସେମାନେ ହିମତଲ ଦେଶରେ ଉପନୀତ ହେଲେ । ଏହି ଦେଶର ଅଧିବାସୀଙ୍କ ରୀତିନୀତି ତୁର୍କୀମାନଙ୍କ ତୁଲ୍ୟ ।

ହୁଏନ୍ ସାଂ ତତ୍ପରେ ଦୁଇଶହ ଲି ପୂର୍ବ ଦିଗରେ ଯାତ୍ରା କରି ବଡ଼ ଖଶାନ ଦେଶରେ ପହଞ୍ଚିଲେ । ଏହା ପୂର୍ବତନ ତୁଖାରା ଦେଶର ଏକାଂଶ । ପାଗ ଅନୁକୂଳ ନଥିବାରୁ ସେଠାରେ ମାସାଧିକ କାଳ ରହିବାପରେ ଦକ୍ଷିଣ ଦିଗକୁ ଗତିକରି ଯମଗାଁ ଓ ତତ୍ପରେ କୁରାନ୍ ଦେଶରେ ପହଞ୍ଚିଲେ । ପରେ ତମସ୍ଥିତ ଦେଶ ଯାହା ଅକ୍ସସ୍ ନଦୀକୂଳର ଦୁଇ ପର୍ବତ ମଧ୍ୟରେ ଅବସ୍ଥିତ, ସେଠାରେ ପହଞ୍ଚିଥିଲେ । ଦେଶବାସୀ ଶିଷ୍ଟାଚାର ବିହୀନ, କ୍ରୋଧୀ ଓ କୁତ୍ସିତ । ପରେ ଶିଗ୍‌ନାନ୍, ଶାମ୍ବୀଦେଶ ଦେଇ କୁମାରଜୀବରେ ପହଞ୍ଚିଲେ । ଏ ଦେଶର ରାଜା ଅତ୍ୟନ୍ତ ଜ୍ଞାନୀ । ଶୁଣାଯାଏ ସେ ଚୀନ୍ ଦେବଗୋତ୍ର ସମ୍ଭୂତ । ଏଠାରେ କିଛିଦିନ ଅବସ୍ଥାନ ପରେ ଉତ୍ତର-ପୂର୍ବ ଦିଗରେ ଯାତ୍ରା ସମୟରେ ଏକ ଦସ୍ୟୁଦଳର ଆକ୍ରମଣର ଶିକାର ହେଲେ । ତାଙ୍କ ସହଚର ବଣିକଗଣ ପର୍ବତ ଉପରକୁ ପଳାଇଲେ । ଦସ୍ୟୁ ପଳାଇବା ପରେ ସେମାନେ ପୂର୍ବ ଦିଗକୁ ଗତି କଲେ । ଏହାପରେ ସେମାନେ ଯର୍କିୟାଂ ଦେଶରେ ଉପସ୍ଥିତ ହେଲେ । ଏହାର ଦକ୍ଷିଣରେ ଉଚ୍ଚ ପର୍ବତମାନ ରହିଛି । ପର୍ବତ ଗାତ୍ରରେ କକ୍ଷପରି ଅନେକ ଗର୍ତ୍ତଥିଲା । ଭାରତର ବୋଧିପ୍ରାପ୍ତ ଅନେକ ଲୋକ ନିଜର ଆଧ୍ୟାତ୍ମିକ ଶକ୍ତି ପ୍ରଭାବରେ ଶାନ୍ତିରେ ବିଶ୍ରାମ ନେବାପାଇଁ ଏଠାରେ ଆଶ୍ରୟ ଗ୍ରହଣ କରୁଥିଲେ । ଯେଉଁମାନେ ଏଠାରେ ଇହଲୀଳା ସାଙ୍ଗ କରୁଥିଲେ, ସେମାନେ ନିର୍ବାଣପ୍ରାପ୍ତ ହେଉଥିଲେ । ଏହି ଦେଶରେ ମହାଯାନଭୁକ୍ତ ଅନେକ ସୂତ୍ର ଥିଲା ଓ ଏକଲକ୍ଷ ଶ୍ଳୋକ ସମ୍ବଳିତ ବହୁଗ୍ରନ୍ଥ ପ୍ରଣୀତ ହୋଇଥିଲା । ଏହାର ଆଠଶତ ଲି ଦକ୍ଷିଣରେ କୁଷ୍ଟାନ୍ (ଖୋଟାନ୍) ଦେଶ । ଅଧିବାସୀଗଣ ପଶୁଲୋମରେ ଗାଲିଚା, ଉତ୍କୃଷ୍ଟ ବସ୍ତ୍ର ଓ ରେଶମ ତାଫତା ପ୍ରସ୍ତୁତ କରନ୍ତି । ଏଠାରେ ବହୁ ସଂଖ୍ୟକ ଶ୍ୱେତ ଓ କୃଷ୍ଣ ଅଶ୍ୱ ଉତ୍ପନ୍ନ ହୁଅନ୍ତି । ଲୋକମାନେ ବୌଦ୍ଧ ଧର୍ମତତ୍ତ୍ୱକୁ ସମ୍ମାନ ଦିଅନ୍ତି । ଏଠାରେ ଏକଶତ ମଠରେ ପାଞ୍ଚ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରି ମହାଯାନ ଅଧ୍ୟୟନ କରୁଥିଲେ । ରାଜା ଭଦ୍ର, ବିଦ୍ୱାନ, ଶୌର୍ଯ୍ୟସଂପନ୍ନ ଓ ଯୁଦ୍ଧ ବିଦ୍ୟା ବିଶାରଦ । ଏଠାର ରାଜାଙ୍କର ପୂର୍ବପୁରୁଷ ଅଶୋକଙ୍କ ଜ୍ୟେଷ୍ଠ ପୁତ୍ର ଥିଲେ । ସେ ତକ୍ଷଶିଳାରେ ବାସ କରୁଥିଲେ । ରାଜା ଅପୁତ୍ରିକ ଥିବାରୁ ବୈଶ୍ରବଣ ମନ୍ଦିରକୁ ପୂଜା ପାଇଁ ଯାଉଥିଲେ । ଏକଦା ପୂଜାପରେ ଦେବତାଙ୍କ ଲଲାଟ ଦେଶ ବିଦୀର୍ଣ୍ଣ ହୋଇ ସେଥିରୁ ଏକ ବାଳକ ଶିଶୁ ବାହାରିଲା ଏବଂ ମନ୍ଦିର ସମ୍ମୁଖ ପ୍ରାଙ୍ଗଣରୁ ସ୍ତନ ଦୁଗ୍ଧ ତୁଲ୍ୟ ଅତିଶୟ ସୌରଭମୟ ପଦାର୍ଥ ନିର୍ଗତ ହେଲା । ଏହା ପାନ କରି ଶିଶୁ ପୁଷ୍ଟ ହେଲା । ରାଜାଙ୍କ ମୃତ୍ୟୁପରେ ସେ ନ୍ୟାୟ ଓ ଧର୍ମରେ ପ୍ରଜାପାଳନ କଲେ । ବର୍ତ୍ତମାନ ରାଜା ତାଙ୍କର ବଂଶଧର । ପୂର୍ବପୁରୁଷ

ଭୂ-ସ୍ତନ ପାନ କରି ପୁଷ୍ଟ ହୋଇଥିବାରୁ ତାହାଙ୍କ ରାଜ୍ୟ କୁଷ୍ଟାନ୍ ବା ଭୂ-ସ୍ତନ ନାମରେ ଅଭିହିତ । ହୁଏନ୍ ସାଂ ଏହି ରାଜ୍ୟ ସୀମାନ୍ତରେ ପହଞ୍ଚି ଭାଗପା ନଗରୀରେ ଉପନୀତ ହେଲେ । ଏଠାରେ ବୁଦ୍ଧଙ୍କର ସାତଫୁଟ ଉଚ୍ଚତା ବିଶିଷ୍ଟ ସମାସୀନାବସ୍ଥାର ମୂର୍ତ୍ତି ଥିଲା । ହୁଏନ୍ ସାଂ ପ୍ରାୟ ସାତଦିନ ରହିଥିଲେ । ଖୋଟାନ୍ ରାଜା ତାଙ୍କ ରାଜ୍ୟରେ ହୁଏନ୍ ସାଂ ଆସୁଥିବା ଜାଣି ସାକ୍ଷାତ କରି ରାଜଧାନୀକୁ ନିମନ୍ତ୍ରଣ କଲେ । ହୁଏନ୍ ସାଂ ସେଠାରେ ସର୍ବାସ୍ତିବାଦୀ ସଂପ୍ରଦାୟ ଅଧିକୃତ ହୀନଯାନ ମନ୍ଦିରରେ ଅବସ୍ଥାନ କଲେ । ରାଜଧାନୀର ଦଶ ଲି ଦକ୍ଷିଣରେ ଗୋଟିଏ ବଡ଼ ସଂଘାରାମ ଥିଲା । ତାହା ବୈରୋଚନ ଅର୍ହତଙ୍କ ଉପଲକ୍ଷେ ଜଣେ ପୂର୍ବତନ ରାଜା ନିର୍ମାଣ କରିଥିଲେ । ଜନଶ୍ରୁତି ରହିଛି, ଯେତେବେଳେ ବୌଦ୍ଧଧର୍ମତତ୍ତ୍ୱାଲୋକ ରାଜ୍ୟରେ ପ୍ରବେଶ କରି ନଥିଲା, ସେତେବେଳେ ଜଣେ ଅର୍ହତ ଧ୍ୟାନମଗ୍ନ ହୋଇ ଉପବିଷ୍ଟ ହେଲେ । ରାଜା ତାଙ୍କୁ ବିଭିନ୍ନ ପ୍ରଶ୍ନ ପଚାରିଲେ । ସେ ତଥାଗତଙ୍କ ଶିଷ୍ୟ କହିବାରୁ ତାଙ୍କ ସମ୍ପର୍କରେ ଜାଣିବାକୁ ଚାହିଁବାରୁ ସେ ନିଜ ଉତ୍ତର ମାଧ୍ୟମରେ ରାଜାଙ୍କର ସନ୍ଦେହ ମୋଚନ କରିଥିଲେ । ରାଜା ତଥାଗତଙ୍କ ମୂର୍ତ୍ତିପୂଜା ଓ ତାଙ୍କ ନୀତି ପାଳନ ସକାଶେ ଅନୁମତି ଚାହିଁବାରୁ ଅର୍ହତ କହିଲେ ପ୍ରତିଜ୍ଞା ପାଳନର ଆନନ୍ଦ ଅନ୍ୱେଷଣ କରନ୍ତୁ । ପ୍ରଥମେ ସଂଘାରାମ ସ୍ଥାପନ କରନ୍ତୁ । ତତ୍ପରେ ସେ ସଂଘାରାମ ନିର୍ମାଣ କଲେ ଏବଂ ଅର୍ହତଙ୍କ ଉପଦେଶ କ୍ରମେ ଧ୍ୟାନରେ ସେ ବୁଦ୍ଧଙ୍କର ମୂର୍ତ୍ତି ଦେଖିବାକୁ ପାଇଲେ ।

ଏହାପରେ ହୁଏନ୍ ସାଂ ପୂର୍ବରୁ ନଦୀ ପାର ହେବାବେଳେ ଅନେକ ଗ୍ରନ୍ଥ ନଦୀ ସ୍ରୋତରେ ନଷ୍ଟ ହୋଇଥିବା ଯୋଗୁଁ ଅନ୍ୟ ପୁସ୍ତକ ସଂଗ୍ରହ ପାଇଁ କୁଚି ଓ କାଶଗଡ଼କୁ ଲୋକ ପଠାଇଥିଲେ । ସେମାନେ ବିଫଳ ହୋଇ ଫେରିବାପରେ ଖୋଟାନ୍ ନରପତିଙ୍କ ନିକଟକୁ କୋ-ଚାଂର ଏକ ଯୁବକ ହସ୍ତରେ ପତ୍ର ପ୍ରଦାନ କରି ତାଙ୍କୁ ସାକ୍ଷାତ୍ ନିମିତ୍ତ ଅନୁମତି ଚାହିଁଲେ । ସେ ଖୋଟାନ୍ ଅଧିବାସୀ ଆଚାର୍ଯ୍ୟମାନଙ୍କ ସମ୍ମୁଖରେ ଯୋଗ, ଅଭିଧର୍ମ୍ମ, କୋଷ ଓ ମହାଯାନ ସଂପରିଗ୍ରହ ଶାସ୍ତ୍ର ବ୍ୟାଖ୍ୟା କରିବାରୁ ରାଜ୍ୟ, ସନ୍ନ୍ୟାସୀ ଓ ପ୍ରଜାଗଣ ସହସ୍ର ସହସ୍ର ସଂଖ୍ୟାରେ ତାଙ୍କର ଧର୍ମ ଗ୍ରହଣ କଲେ । ୭/୮ ମାସ ପରେ ଦୂତ ରାଜାଙ୍କଠାରୁ ସମ୍ବାଦ ଆଣିଲା ଯେ, ରାଜା ତାଙ୍କୁ ନିମନ୍ତ୍ରଣ କରିଛନ୍ତି ଓ ଯିବାକୁ ଅନୁରୋଧ ସହ ତାଙ୍କ ପାଇଁ ପଥ ପ୍ରଦର୍ଶକ ଏବଂ ବାହନ ଯୋଗାଇବା ସକାଶେ ମଧ୍ୟ ଆଦେଶ ପ୍ରଦାନ କରିଛନ୍ତି । ହୁଏନ୍ ସାଂ ଖୋଟାନ୍ ରାଜାଙ୍କୁ ଭେଟିଲେ ଓ ସେ ତାଙ୍କୁ ବହୁ ଖାଦ୍ୟ ସାମଗ୍ରୀ ପ୍ରଦାନ କରିଥିଲେ । ରାଜଧାନୀର ତିନି ଶତ ଲି ପୂର୍ବ ଦିଗରେ ଗତିକରି ସେ ପି-ମୋ ନଗରୀରେ ପହଞ୍ଚିଲେ । ଏଠାରେ ଚନ୍ଦନ କାଷ୍ଠ ନିର୍ମିତ ବୁଦ୍ଧଙ୍କର ଏକ ଦଣ୍ଡାୟମାନ ମୂର୍ତ୍ତି ରହିଥିଲା । ପି-ମୋ ନଗର ପରିତ୍ୟାଗ ପରେ ହୁଏନ୍ ସାଂ ପୂର୍ବ ଦିଗରେ ଯାତ୍ରା କରି ବାଲୁକା ଓ ପ୍ରସ୍ତରମୟ ମରୁଭୂମିରେ

ପ୍ରବିଷ୍ଟ ହେଲେ ଏବଂ ସେଠାରୁ ଦୁଇଶହ ଲି ପଥ ଅତିକ୍ରମି ନି-ଙ୍ଗ ନଗରରେ ପହଞ୍ଚିଲେ । ଏହାର ପୂର୍ବ ପାର୍ଶ୍ୱରେ ଏକ ବିଷାକ୍ତ ଜୀବପୂର୍ଣ୍ଣ ମରୁଭୂମି ରହିଛି । ଏହାପରେ ଏକଶତ ଲି ପଥ ଅତିକ୍ରମ କରି ହୁଏନ୍ ସାଂ ପ୍ରାଚୀନ ତୁଖାର ରାଜ୍ୟରେ ପହଞ୍ଚିଲେ । ପୁଣି ସେଠାରୁ ଛଅଶତ ଲି ପଥ ଅତିକ୍ରମ କରି ଚେ-ମୋ-ତୋ-ନା.ବା ନି- ମୋ ରାଜ୍ୟରେ ଓ ସେଠାରୁ ପୁଣି ଏକ ସହସ୍ର ଲି ଉତ୍ତର-ପୂର୍ବକୁ ଗମନ କରି ନା-ଫୋ-ପେ-ବା ଲୁ -ଲାନ୍ ଦେଶରେ ପହଞ୍ଚିଲେ । ସେଠାରୁ ଅନେକ କୁଟିଳ ପଥ ଅତିକ୍ରମି ଚୀନ୍ ଦେଶର ସୀମାନ୍ତରେ ପହଞ୍ଚିଲେ । ଏଠାରୁ ବାହନ ସଂଗ୍ରହ କରି ଖୋଟାନ୍‌ରୁ ଆନୀତ ଭୃତ୍ୟ, ଅଶ୍ୱ ଓ ଓଟକୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପାଇଁ କହିଲେ ।

ସାଂଚୋରେ ପହଞ୍ଚି ହୁଏନ୍ ସାଂ ସମ୍ରାଟଙ୍କ ନିକଟକୁ ପତ୍ର ପ୍ରେରଣ କଲେ । ସେତେବେଳେ ସମ୍ରାଟ ଲୋ-ୟାଂ ପ୍ରାସାଦରେ ଥିଲେ । ସେ ସଙ୍ଗେ ସଙ୍ଗେ ଲ୍ୟାଂ ପ୍ରଦେଶର ଶାସନକର୍ତ୍ତା ଫୋଂ-ହ୍ୱାନ-ଲିଂଙ୍କ ନିକଟକୁ କେତେକ ରାଜ କର୍ମଚାରୀ ପ୍ରେରଣ କରି ହୁଏନ୍ ସାଂଙ୍କୁ ଆଣିବା ପାଇଁ ଆଦେଶଦେଲେ । ହୁଏନ୍ ସାଂ ଜାଣିଥିଲେ ସମ୍ରାଟଙ୍କ ବିନାନୁମତିରେ ଦେଶତ୍ୟାଗ କରିଥିବାରୁ ସେ ତାଙ୍କୁ ତିରସ୍କାର କରିବେ । ସେ ଶୀଘ୍ର ପହଞ୍ଚିବା ପାଇଁ ନାଳ ପଥରେ ଯାତ୍ରା କଲେ । ରାଜ କର୍ମଚାରୀ ତାଙ୍କ ଅଭ୍ୟର୍ଥନା ସକାଶେ କୌଣସି ପ୍ରକାର ଆୟୋଜନ କରିପାରିନଥିଲେ । ତଥାପି ତାଙ୍କ ଆସିବା ବାର୍ତ୍ତା ପାଇ ସ୍ୱତଃ ବହୁଲୋକ ଅଭ୍ୟର୍ଥନା ନିମିତ୍ତ ସମବେତ ହୋଇଥିଲେ ।

**ଉପସଂହାର: ରାଜଧାନୀରେ ପ୍ରବେଶ-** ହୁଏନ୍ ସାଂ ନୌକାରୁ ଓହ୍ଲାଇ ପଶ୍ଚିମ ପ୍ରଦେଶର ରାଜଧାନୀକୁ ଗଲେ ଓ ସେଠାରେ ୬୪୫ ଖ୍ରୀ:ରେ ବସନ୍ତ ଋତୁରେ ପ୍ରବେଶ ହେଲେ । ପରଦିନ ମଠାଧିବାସୀ ପତାକା ହାତରେ ତାଙ୍କୁ ହୋଂ-ଫୁ ମଠକୁ ନେଲେ । ଏହି ମଠକୁ ସେ ତଥାଗତଙ୍କ ଶରୀରର ଏକଶତ ମାଂସ ଖଣ୍ଡ, ବୁଦ୍ଧଙ୍କ ଏକ ସ୍ୱର୍ଣ୍ଣମୂର୍ତ୍ତି, ୩ଫୁଟ ୩ ଇଞ୍ଚ ଏକ ଦୀପ୍ତିମୟ ବେଦିକା, ୩ ଫୁଟ ୫ ଇଞ୍ଚ ଉଚ୍ଚ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ଚନ୍ଦନକାଠ ମୂର୍ତ୍ତି, ୨ ଫୁଟ ୯ ଇଞ୍ଚ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ମୂର୍ତ୍ତି, ୪ ଫୁଟ ଉଚ୍ଚ ସ୍ୱଚ୍ଛ କାଚ ତୁଲ୍ୟ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ରୌପ୍ୟ ମୂର୍ତ୍ତି, ବିଷାକ୍ତ ଡ୍ରାଗନ (ସର୍ପ) ଦଳନକାଳୀନ ନଗରହାର ରାଜ୍ୟରେ ପତିତ ଛାୟା ମୂର୍ତ୍ତି ଅବଲମ୍ବନରେ ନିର୍ମିତ ୩ ଫୁଟ ୫ଇଞ୍ଚ ଉଚ୍ଚ ସ୍ୱଚ୍ଛ କାଚତୁଲ୍ୟ ବେଦିକା ଉପରେ ସ୍ଥାପିତ ବୁଦ୍ଧ ମୂର୍ତ୍ତି ଓ ବୈଶାଳୀ ନଗରରେ ଦୀକ୍ଷା ଦାନରତ ବୁଦ୍ଧଙ୍କ ପ୍ରତିକୃତି ଅନୁକରଣରେ ନିର୍ମିତ ୧ ଫୁଟ ୩ ଇଞ୍ଚ ସ୍ୱଚ୍ଛକାଚ ତୁଲ୍ୟ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ଚନ୍ଦନ କାଠ ମୂର୍ତ୍ତି ଦାନ କରିଥିଲେ ।

ହୁଏନ୍ ସାଂ ଭାରତବର୍ଷରୁ ମହାଯାନ ବିଷୟକ ବହୁ ସଂଖ୍ୟାକ ଗ୍ରନ୍ଥ, ୨୨୪ ଖଣ୍ଡ ସୂତ୍ର, ୧୯୨ ଖଣ୍ଡ ଶାସ୍ତ୍ର, ସୂତ୍ର, ବିନୟ ଓ ଶାସ୍ତ୍ର ସମ୍ବଳିତ ସ୍ଥବିର ମତ ବିଷୟକ ୧୫ ଖଣ୍ଡ

ଗ୍ରନ୍ଥ, ସମ୍ମତୀୟ ବିଷୟକ ୧୫ ଖଣ୍ଡ, ମହୀଶାସକ ବିଷୟକ ୨୨ ଖଣ୍ଡ, ସର୍ବାସ୍ତିବାଦୀ ମତ ବିଷୟକ ୬୭ ଖଣ୍ଡ, କାଶ୍ୟପୀୟ ମତ ବିଷୟକ ୧୭ ଖଣ୍ଡ, ଧର୍ମଗୁପ୍ତ ମତ ବିଷୟକ ୪୨ ଖଣ୍ଡ, ହେତୁ ବିଦ୍ୟାଶାସ୍ତ୍ର ୩୬ ଖଣ୍ଡ, ଶବ୍ଦ ବିଦ୍ୟାଶାସ୍ତ୍ର ୧୩ ଖଣ୍ଡ- ଏପରି ସର୍ବମୋଟ ୬୫୭ ଖଣ୍ଡ ଗ୍ରନ୍ଥ ୨୦ଟି ଅଶ୍ୱ ପୃଷ୍ଠରେ ଆଣିଥିଲେ । ସେ ସମ୍ରାଟଙ୍କୁ ସାକ୍ଷାତ କରିବାକୁ ଚୀନ୍ ସମ୍ରାଟ ତାଙ୍କୁ ଯଥାବିଧି ସ୍ୱାଗତ ଜଣାଇ ତାଙ୍କୁ ବିନାନୁମତିରେ ଗୃହତ୍ୟାଗ କାରଣ ପଚାରିଲେ । ସେ କହିଲେ ଯାତ୍ରା ପୂର୍ବରୁ ୩ ଥର ଅନୁମତି ପ୍ରାର୍ଥନା କରିଥିଲେ । ଉତ୍ତର ନ ପାଇବାରୁ ପ୍ରବଳ ଇଚ୍ଛା ଦମନ କରି ନପାରି ଦେଶ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲି । ସମ୍ରାଟ ତାଙ୍କୁ ଗୃହସ୍ଥାଶ୍ରମ ଗ୍ରହଣ କରିବାକୁ ଉପଦେଶ ଦେଇଥିଲେ ହେଁ ସେଥିରେ ଅସମ୍ମତ ହୋଇ ସି-ଗାନ-ଫୁ ପ୍ରଦେଶର ହଂ-ଫୁ ମଠରେ ରହି ଭାରତବର୍ଷରୁ ଆନୀତ ଗ୍ରନ୍ଥଗୁଡ଼ିକୁ ଅନୁବାଦ କରିଥିଲେ । ୬୪୭ ଖ୍ରୀ: ଶେଷରେ ସେ ବୋଧିସତ୍ତ୍ୱ ପାଟକ ସୂତ୍ର, ବୁଦ୍ଧଭୂମି ସୂତ୍ର, ଷଟ୍ ମୁଖୀ ଧାରଣୀ ଓ ଅନ୍ୟାନ୍ୟ ଗ୍ରନ୍ଥ ଅନୁବାଦ ଶେଷ କରିଥିଲେ । ୬୪୮ ଖ୍ରୀ: ଶେଷରେ ସେ ୫୮ ଖଣ୍ଡ ଗ୍ରନ୍ଥର ଅନୁବାଦ ସମାପ୍ତ କରିଥିଲେ । ତନ୍ମଧ୍ୟରୁ ସି-ୟୁ-କ୍ୟ ଗ୍ରନ୍ଥ ସମ୍ରାଟଙ୍କ ବିଶେଷ ଆଜ୍ଞାନୁଯାୟୀ ଅନୁଦିତ ହୋଇଥିଲା । ୬୪୯ଖ୍ରୀ:ରେ ସମ୍ରାଟ ହୁଏନ୍ ସାଂକୁ ସୀ-ଇନ୍ ମଠରେ ଅବସ୍ଥାନ କରାଇଥିଲେ ଓ ସେ ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଏଠାରେ ରହି ଗ୍ରନ୍ଥ ଅନୁବାଦ କାର୍ଯ୍ୟ କରିଥିଲେ ।

୬୫୦ ଖ୍ରୀ:ରେ ସମ୍ରାଟ୍ ତେି-ସୁଂ ଇହଲୀଳା ସାଙ୍ଗକଲେ ଓ କାଓ-ସୁଂ ଚୀନ ସିଂହାସନରେ ବସିଲେ । ମଠ ଦାୟିତ୍ୱରେ ଥିବାରୁ ସନ୍ନ୍ୟାସିଗଣଙ୍କ ଆଚରଣ ଓ କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ, ଅନୁବାଦ, ତଥା ଅନ୍ୟ ସନ୍ନ୍ୟାସିମାନେ ତାଙ୍କଠାରୁ ଶାସ୍ତ୍ର ବ୍ୟାଖ୍ୟାନ ଶୁଣୁଥିଲେ । ରାଜପୁରୁଷ ଓ ଅମାତ୍ୟଗଣ ତାଙ୍କ ଧର୍ମଶାସ୍ତ୍ର ବ୍ୟାଖ୍ୟାନରେ ବିଶେଷ ପ୍ରୀତ ହୋଇ ତାଙ୍କ ଧୀଶକ୍ତି, ପାଣ୍ଡିତ୍ୟର ସମ୍ମାନ ତଥା ପ୍ରଶଂସା କରୁଥିଲେ । ୬୫୨ ଖ୍ରୀ:ରେ ହୁଏନ୍ ସାଂ ହଂ-ଫୁ ମଠର ଦକ୍ଷିଣ ଦ୍ୱାରରେ ଏକ ମନ୍ଦିର ନିର୍ମାଣ କରି ସେଥିରେ ଗ୍ରନ୍ଥ ଓ ମୂର୍ତ୍ତିସମୂହ ରଖିଥିଲେ । ଏହି ମନ୍ଦିରର ଉଚ୍ଚତା ଥିଲା ୧୮୦ ଫୁଟ୍ । ଏହା ଭାରତବର୍ଷର ମନ୍ଦିର ଆଦର୍ଶରେ ନିର୍ମିତ ହୋଇଥିଲା । ୬୫୫ ଓ ୬୫୬ ଖ୍ରୀ: ମଧ୍ୟରେ ହୁଏନ୍ ସାଂ ଗ୍ରନ୍ଥସମୂହ ଅନୁବାଦ କାର୍ଯ୍ୟରେ ବ୍ୟସ୍ତ ରହିଲେ । ଦେହ ମଝିରେ ଅସୁସ୍ଥ ହେଉଥିଲା । ଦରବାର ଚିକିତ୍ସକଙ୍କ ଚିକିତ୍ସାରେ କିଞ୍ଚିତ ଆରୋଗ୍ୟ ହୋଇଥିଲେ । ୬୫୮ ଖ୍ରୀ:ରେ ସେ ସମ୍ରାଟଙ୍କ ପାରଷଦବର୍ଗ ସହିତ ଲୋ-ୟାଂରୁ ପଶ୍ଚିମ ପ୍ରଦେଶର ରାଜଧାନୀକୁ ପ୍ରତ୍ୟାବୃତ୍ତ ହେଲେ ଓ ନବ ନିର୍ମିତ ସି-ମିଂ ନାମକ ମନ୍ଦିରରେ ଅବସ୍ଥାନ କଲେ । ସେ ପ୍ରଜ୍ଞାପାରିମିତ ଶାସ୍ତ୍ରସମୂହ ଅନୁବାଦ ପାଇଁ ବ୍ୟସ୍ତ ରହିଥିଲେ । ସେଥିପାଇଁ ୟୁ-ଫା (ରତ୍ନପୁଷ୍ପ) ପ୍ରାସାଦକୁ ୬୫୯ ଖ୍ରୀ:ରେ ଗମନ କରି ୬୬୦

ଖ୍ରୀ:ରେ ନୂତନ ଅନୁବାଦ କାର୍ଯ୍ୟ ଆରମ୍ଭ କରିଥିଲେ । ମହାପ୍ରଜ୍ଞାପାରମିତ ସୂତ୍ରର ଭାରତୀୟ ପ୍ରତିଲିପିରେ ଦୁଇ ଲକ୍ଷ ଶ୍ଳୋକ ସନ୍ନିବେଶିତ ହୋଇଥିଲା । ସେ ଏହି ଗ୍ରନ୍ଥର ଦୁଇଟି ପାଣ୍ଡୁଲିପି ଆଣିଥିଲେ । ଉଭୟ ପ୍ରତିଲିପି ତୁଳନା କରି ସେ ଏକ ସଂଶୋଧିତ ପାଣ୍ଡୁଲିପି ପ୍ରସ୍ତୁତ କରିବା ସହିତ ତା'ର ଅନୁବାଦ କରିଥିଲେ । ଏହି ସମୟକୁ ତାଙ୍କର ବୟସ ୬୫ ବର୍ଷ । ତାଙ୍କର ସମସ୍ତ କାର୍ଯ୍ୟ ଲୁଂ-ସୋ ବର୍ଷର ଦଶମ ମାସରେ (୬୬୧ ଖ୍ରୀ:) ସମାପ୍ତ ହେଲା । ସେ ୭୪ ଖଣ୍ଡ ଗ୍ରନ୍ଥର ଅନୁବାଦ ୧୩୩୫ ଅଧ୍ୟାୟରେ ସମାପ୍ତ କରିଥିଲେ । ସ୍ୱହସ୍ତରେ ଅନେକ ଚିତ୍ର ମଧ୍ୟ ଅଙ୍କନ କରିଥିଲେ ଓ ବହୁ ସଂଖ୍ୟକ ସୂତ୍ରର ପ୍ରତିଲିପି ପ୍ରସ୍ତୁତ କରିଥିଲେ । ୬୬୪ ଖ୍ରୀ: ଦଶମ ମାସର ତ୍ରୟୋଦଶ ଦିବସରେ ତାଙ୍କର ଅମର ଆତ୍ମା ଧରାପୃଷ୍ଠତ୍ୟାଗ କରିଥିଲା । "ପଶ୍ଚିମ ପ୍ରଦେଶର ରାଜଧାନୀରେ ହୁଏନ୍ ସାଂଙ୍କ ନଶ୍ୱର ଦେହ ରକ୍ଷିତ ହେଲା; କିନ୍ତୁ ୬୬୯ ଖ୍ରୀ:ରେ ସମ୍ରାଟଙ୍କ ଆଦେଶରେ ଫାନ୍- ଚୁନ୍ ଉପତ୍ୟକାର ଉତ୍ତର ପାର୍ଶ୍ୱରେ ଅବସ୍ଥିତ ଏକ ସ୍ଥାନକୁ ତାହା ସ୍ଥାନାନ୍ତରିତ ହେଲା ଓ ତଦୁପରି ଏକ ସ୍ମାରକସ୍ତମ୍ଭ ନିର୍ମିତ ହେଲା ।" (ପୃ-୨୮୪) ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ତଥା ତା'ର ବ୍ୟାଖ୍ୟା ଏବଂ ଅନୁଶୀଳନରେ ହୁଏନ୍ ସାଂଙ୍କର ଅବଦାନ ଅତୁଳନୀୟ ।

**ଅନୁବାଦର ବୈଶିଷ୍ଟ୍ୟ:-** ଭାରତଚନ୍ଦ୍ରଙ୍କ 'ହୁଏନ୍ ସାଂ ଓ ତାହାଙ୍କ ଭାରତ-ଭ୍ରମଣ' ଏକ ମୌଳିକ ଗ୍ରନ୍ଥ ନୁହେଁ, ଏକ ଅନୁବାଦ ଗ୍ରନ୍ଥ । ମାତ୍ର ଏହାର ଅନୁବାଦର ପ୍ରତ୍ୟେକ କ୍ଷେତ୍ରରେ ଲେଖକ ନିଜର ମୌଳିକତା ପ୍ରଦର୍ଶନ କରିଛନ୍ତି । ଅନେକ ଚୀନ ଭାଷାର ଶବ୍ଦକୁ ଯଥାଯଥ ସଂରକ୍ଷିତ ରଖିବାରେ ତାଙ୍କ ବିଶେଷତ୍ୱ ପ୍ରତିପାଦିତ ହୋଇଛି । ହୁଏନ୍ ସାଂଙ୍କର ଏହି ଗ୍ରନ୍ଥଟି ନିଶ୍ଚିତ ଭାବରେ ଏକ ମୂଲ୍ୟବାନ ଗ୍ରନ୍ଥ । ଏହାର ଓଡ଼ିଆ ଅନୁବାଦ କରି ଲେଖକ ଓଡ଼ିଆ ସାହିତ୍ୟର ଏକ ମହତ୍ କାର୍ଯ୍ୟ ସଂସାଧନ କରିଛନ୍ତି । ଭାରତୀୟ ଧାର୍ମିକ ପରମ୍ପରାରେ ବୌଦ୍ଧଧର୍ମର ବିଶେଷ ମହତ୍ତ୍ୱ ରହିଛି । ଏହି ଧର୍ମ ସମ୍ପର୍କରେ ଅନେକ ମୂଲ୍ୟବାନ ଗ୍ରନ୍ଥ ରଚିତ ହୋଇଛି; ମାତ୍ର ବିଭିନ୍ନ ଆଞ୍ଚଳିକ ଭାଷାରେ ଖୁବ୍ କମ୍ ଗ୍ରନ୍ଥ ଅନୁବାଦ ହୋଇଥିବାର ଦେଖାଯାଇଥାଏ । ହୁଏନ୍ ସାଂ ଥିଲେ ଜଣେ ପ୍ରାଚ୍ୟ ତତ୍ତ୍ୱବିତ୍ ପଣ୍ଡିତ । ସଂସ୍କୃତ ଓ ପାଲି ଭାଷାରେ ତାଙ୍କର ରହିଥିଲା ଅଗାଧ ପ୍ରବେଶ । ସେ ବହୁ ବୌଦ୍ଧଧର୍ମଗ୍ରନ୍ଥର ଶୁଦ୍ଧ ଟୀକା ପ୍ରସ୍ତୁତ କରିବା ସହିତ ତା'ର ଅନୁବାଦ କରିଥିଲେ । ଭାରତକୁ ହୁଏନ୍ ସାଂଙ୍କର ଆଗମନ ଥିଲା ଏକ ନୂତନ ଇତିହାସର କ୍ରାନ୍ତିକାରୀ ସଂରଚନା । ତାଙ୍କ ଭ୍ରମଣ ଗ୍ରନ୍ଥଟି ଏହି ଦୃଷ୍ଟିରୁ ସ୍ୱତନ୍ତ୍ର ମର୍ଯ୍ୟାଦା ରଖିଥାଏ । ଲେଖକ ଯଥାସମ୍ଭବ ମୂଳ ଗ୍ରନ୍ଥର ଭାବ ଓ ଚିନ୍ତାଧାରାକୁ ଅକ୍ଷୁଣ୍ଣ ରଖିପାରିଛନ୍ତି ଓ ଅନୁବାଦର ମୌଳିକ ଲକ୍ଷ୍ୟ ପୂରଣ କରିବାରେ ଯେ ସଂପୂର୍ଣ୍ଣ ସଫଳ ହୋଇଛନ୍ତି, କହିବା ବାହୁଲ୍ୟ ମାତ୍ର ।

ଉପସଂହାର- ଭାରତଚନ୍ଦ୍ରଙ୍କ 'ହୁଏନ୍ ସାଂ ଓ ତାହାଙ୍କ ଭାରତ ଭ୍ରମଣ' ଓଡ଼ିଆ ସାହିତ୍ୟ ଏବଂ ସଂସ୍କୃତିକୁ ଏକ ବିଶିଷ୍ଟ ଅବଦାନ । ଲେଖକ ବହୁ ପରିଶ୍ରମ କରି ଇଂରାଜୀ ଗ୍ରନ୍ଥଟିର ଓଡ଼ିଆ ଅନୁବାଦ କରିଛନ୍ତି । ଅନୁବାଦ ସହିତ ସେ ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧଟିଏ ସଂଯୋଜନା କରିଛନ୍ତି, ସେଥିରୁ ତାଙ୍କର ବହୁପାଠିତା, ଇତିହାସ ଜ୍ଞାନ ତଥା ବିଚାର ବିଶ୍ଳେଷଣରେ ମୌଳିକତା ପରିଲକ୍ଷିତ ହୋଇଥାଏ । ନିଜ ମତକୁ ସାବ୍ୟସ୍ତ କରିବା ପାଇଁ ଅନେକ କ୍ଷେତ୍ରରେ ସେ ଏକାଧିକ ଇତିହାସ ଗ୍ରନ୍ଥର ସହାୟତା ନେଇଛନ୍ତି । ଏତଦ୍‌ବ୍ୟତୀତ ଆବଶ୍ୟକ ସ୍ଥଳେ ସେ କେତେଜଣ ବିଶିଷ୍ଟ ବୌଦ୍ଧଧର୍ମାଚାର୍ଯ୍ୟଙ୍କ ସମ୍ପର୍କରେ ସୂଚନା ଦେଇଛନ୍ତି । ଏହାଦ୍ୱାରା ଓଡ଼ିଶାରେ ବୌଦ୍ଧ ଧର୍ମ ପ୍ରଚାରର ଏକ ସଂକ୍ଷିପ୍ତ ଇତିହାସ ସଂପର୍କରେ ଜାଣି ହୋଇଥାଏ । ପୁନରାୟ ବୌଦ୍ଧଧର୍ମର ବିଭିନ୍ନ ଶାଖା ଓ ତତ୍ତ୍ୱ ସମ୍ବନ୍ଧରେ ସେ ଯେପରି ବିଶ୍ଳେଷଣ କରିଛନ୍ତି, ସେଥିରୁ ଏହି ଧର୍ମର ସାରମର୍ମ, ବିଶେଷତ୍ୱ ଏବଂ ଆମର ଧାର୍ମିକ ଜୀବନରେ ତା'ର ରହିଥିବା ସୁଦୂରପ୍ରସାରୀ ପ୍ରଭାବ ସମ୍ପର୍କରେ ମଧ୍ୟ ଜାଣି ହୋଇଥାଏ ।



# ଉପସଂହାର

ଭାରତଚନ୍ଦ୍ର ନାୟକ ଜଣେ ମୌଳିକ ସ୍ରଷ୍ଟା ନହେଲେହେଁ ଓଡ଼ିଆ ସମାଜ, ସାହିତ୍ୟ ଓ ସଂସ୍କୃତିର ବିକାଶ ନିମିତ୍ତ ସେ ତାଙ୍କ ଜୀବନକାଳ ମଧ୍ୟରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟକରି ଯାଇଛନ୍ତି । ତାଙ୍କ ସୃଷ୍ଟି ମଧ୍ୟରେ ଆତ୍ମଜୀବନୀ 'ମୋର ପୂର୍ବ ସ୍ମୃତି କଥା' ଏବଂ ଅନୁବାଦ ଗ୍ରନ୍ଥ "ହୁଏନ୍ ସାଂ ଓ ତାହାଙ୍କ ଭାରତ ଭ୍ରମଣ' ବିଶେଷ ତାତ୍ପର୍ଯ୍ୟ ରଖିଥାଏ । ଏତଦ୍‌ବ୍ୟତୀତ ସେ ଅନ୍ୟ କେତେକ ଗ୍ରନ୍ଥ ଯଥା- ଶ୍ରୀମଦ୍ ଭାଗବତର ଦଶମ ଓ ଏକାଦଶ ସ୍କନ୍ଧ, ବେଦସ୍ତୁତି, ରାଜତରଙ୍ଗିଣୀ, ସୌନ୍ଦରାନନ୍ଦ କାବ୍ୟ, କାଦମ୍ବରୀ, କୁମାରସମ୍ଭବମ୍ ଆଦିର ଅନୁବାଦ କରିଥଲେ ହେଁ ଅଧିକାଂଶ ପ୍ରକାଶନର ଆଲୋକ ଦେଖିବାରୁ ବଞ୍ଚିତ ହୋଇଛି । ଅନୁବାଦ କ୍ଷେତ୍ରରେ ତାଙ୍କର ସିଦ୍ଧି ପ୍ରମାଣିତ । ଜଣେ ବହୁପାଠୀ ବ୍ୟକ୍ତିତ୍ୱ ଭାବରେ ତାଙ୍କର ବିଶେଷ ଖ୍ୟାତି ରହିଥିଲା । ପ୍ରାଚୀନ ସାହିତ୍ୟଠାରୁ ଆରମ୍ଭ କରି ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ- ତାଙ୍କର ଅଗାଧ ପ୍ରବେଶ ରହିଥିଲା । 'ହୁଏନ୍ ସାଂ ଓ ତାହାଙ୍କ ଭାରତ ଭ୍ରମଣ' ଗ୍ରନ୍ଥଟି ପାଠକଲେ, ଅନୁବାଦ କ୍ଷେତ୍ରରେ ରହିଥିବା ତାଙ୍କ ଗଭୀରତାକୁ ଆକଳନ କରି ହୋଇଥାଏ ।

ତାଙ୍କ ଆତ୍ମଜୀବନୀ 'ମୋର ପୂର୍ବ ସ୍ମୃତିକଥା' ବାସ୍ତବରେ ସମକାଳୀନ ଭାରତ ବର୍ଷର ବହୁ ଉଲ୍ଲେଖଯୋଗ୍ୟ ଘଟଣାର ନିଚ୍ଛକ ଚିତ୍ର ପ୍ରଦାନ କରିଥାଏ । ସମାଜ ସଂସ୍କାର, ଅନ୍ଧବିଶ୍ୱାସର ଦୂରୀକରଣ ତଥା ସମାଜସେବା ପାଇଁ ସେ ଯେପରି ପଦକ୍ଷେପ ଗ୍ରହଣ କରିଥିଲେ, ତାହା ନିଶ୍ଚିତ ଭାବରେ ପ୍ରଶଂସାଯୋଗ୍ୟ । ଶାରଦା ଆଇନ୍ ପ୍ରଣୟନ ପରେ ସେ ପ୍ରଥମେହିଁ ଏହି ନିୟମାନୁଯାୟୀ ତାଙ୍କ କନ୍ୟାମାନଙ୍କର ବିବାହ କାର୍ଯ୍ୟ ସଂପନ୍ନ କରିଛନ୍ତି । ଏଥିପାଇଁ ସମାଜରେ ସେ ବାସନ୍ଦ ହୋଇଛନ୍ତି; ସମାଲୋଚନାର ଶରବ୍ୟ ହୋଇଛନ୍ତି; ମାତ୍ର ନିଜ ନିଷ୍ପତ୍ତିରୁ ଓହରି ନାହାନ୍ତି; ବରଂ ସମସ୍ତ ପ୍ରତିକୂଳ ପରିବେଶର ସମ୍ମୁଖୀନ ହୋଇ ନିଜ ଦୃଢ଼ବଳର ପରିଚୟ ପ୍ରଦାନ କରିଛନ୍ତି । ନାରୀଶିକ୍ଷାର ସେ ଥିଲେ ଜଣେ ଦୃଢ଼ ସମର୍ଥକ । ନିଜ କନ୍ୟାକୁ ଶିକ୍ଷିତା କରିଥିବାରୁ ତାଙ୍କ କନ୍ୟାର ବିବାହ ଭାଙ୍ଗିଯାଇଛି; ଏହା ସତ୍ତ୍ୱେ କନ୍ୟାମାନଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନରେ ସେ କେବେ ଅବହେଳା ପ୍ରଦର୍ଶନ କରିନାହାନ୍ତି । ସେ ଜଣେ ବହୁ ସନ୍ତାନର ଜନକ ହୋଇଥିଲେହେଁ ପ୍ରତି ସନ୍ତାନ ପାଇଁ ତାଙ୍କ ହୃଦୟରେ ଭରି ରହିଥିଲା ଅଗାଧ ସ୍ନେହ । କନ୍ୟାମାନଙ୍କର ସ୍ୱାସ୍ଥ୍ୟଗତ କାରଣ ପାଇଁ ପାଟଣାରୁ କଲିକତା ଓ ସେଠାରୁ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ପୁରୀ- ଏମିତି ଅନେକ ସହର ବୁଲି ବୁଲିଛନ୍ତି । ପ୍ରତ୍ୟେକ ସନ୍ତାନରେ ଶାରୀରିକ ଓ ମାନସିକ ବିକାଶ ପାଇଁ ତୀକ୍ଷ୍ଣ ଦୃଷ୍ଟି ପ୍ରଦାନ କରିଛନ୍ତି ।

ଜଣେ ପ୍ରଶାସକ ଭାବରେ ମଧ୍ୟ ତାଙ୍କର ରହିଥିଲା ଯଥେଷ୍ଟ ସୁନାମ । ଦୁର୍ଭିକ୍ଷ ବା ବନ୍ୟା ସମୟରେ ଜଣେ ପ୍ରଶାସନିକ ଅଧିକାରୀ ଭାବରେ ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ ଅଣ୍ଟାଭିଡ଼ି ବାହାରିଛନ୍ତି । ଏଥିପାଇଁ ବେଳେବେଳେ ଉପରିସ୍ଥ ହାକିମମାନଙ୍କର ଆକ୍ରୋଶର ଶିକାର ହୋଇଥିଲେ ହେଁ ଜନସେବା କାର୍ଯ୍ୟରୁ କେବେ ବିଚ୍ୟୁତ ହୋଇନାହାନ୍ତି । ଚାକିରି ଜୀବନରେ ଅନେକଥର ପ୍ରତିକୂଳ ପରିସ୍ଥିତିର ଶିକାର ହୋଇଛନ୍ତି । ଚାକିରି ଛାଡ଼ିଦେବାର ନିଷ୍ପତ୍ତି ନେଇଛନ୍ତି । ଏହା ସତ୍ତ୍ୱେ ସାଲିସ୍ ଚାକିରି ଜୀବନ ବିତାଇବାକୁ ପସନ୍ଦ କରିନାହାନ୍ତି । ସେ ତାଙ୍କ ଚାକିରି ଜୀବନରେ ଘଟିଥିବା ବହୁ ଉଲ୍ଲେଖଯୋଗ୍ୟ ଘଟଣାକୁ ଆତ୍ମଜୀବନୀରେ ଲିପିବଦ୍ଧ କରିଛନ୍ତି । ତାଙ୍କ ଆତ୍ମଜୀବନୀରେ ଗ୍ରାମୀଣ ଜୀବନର ପର୍ବପର୍ବାଣି, ଲୋକ ବିଶ୍ୱାସ, ସାଂସ୍କୃତିକ ଆଚାର ଠାରୁ ଆରମ୍ଭ କରି ବହୁ ଘଟଣାର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ରହିଛି । ସମାଜରେ ଥିବା ଜାତିପ୍ରଥା କିପରି ଉତ୍କଟ ଥିଲା ତାହାକୁ ସେ ଚମତ୍କାର ଭାବରେ ତାଙ୍କ ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି । ଓଡ଼ିଆ ସମାଜର ଅତିଥିଚର୍ଚ୍ଚାକୁ ସେ ବିଶେଷ ଭାବରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ସେତେବେଳେ ପ୍ରତି ଗ୍ରାମରେ କିପରି ଭାବରେ 'ଡେରାଘର' ବା ପାନ୍ଥଶାଳା ରହିଥିଲା ଓ ସରକାରୀ କର୍ମଚାରୀଙ୍କ ଠାରୁ ଆରମ୍ଭ କରି ବିଦେଶୀ ଲୋକ ଆସିଲେ କିପରି ଭାବରେ ସେହି ଘରେ ତାଙ୍କୁ ସତ୍କାର କରାଯାଉଥିଲା ଏବଂ ଅତିଥି ଚର୍ଚ୍ଚାକୁ କିପରି ପୁଣ୍ୟକାର୍ଯ୍ୟ ଭାବରେ ବିବେଚନା କରାଯାଉଥିଲା, ତା'ର ସୂଚନା ତାଙ୍କ ଆତ୍ମ ଜୀବନୀରେ ମିଳିଥାଏ । ଏପରିକି ଭିକ୍ଷୁକଙ୍କୁ ମଧ୍ୟ ତତ୍କାଳୀନ ସମାଜରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଥିବା ବିଷୟରେ ସେ ଉଲ୍ଲେଖ କରିଛନ୍ତି । ଗ୍ରାମୀଣ ବ୍ୟବସ୍ଥାର ବିଚାର-ପ୍ରକ୍ରିୟାକୁ ସେ ପ୍ରଶଂସା କରିଛନ୍ତି । ଗ୍ରାମ ପ୍ରଧାନମାନେ ବହୁ ସାଂଘାତିକ କଳହର ଆଶୁ ସମାଧାନ କରିପାରୁଥିବାରୁ ଲୋକମାନଙ୍କୁ ଅଯଥା ବିଚାରାଳୟର ଦ୍ୱାରସ୍ଥ ହୋଇ ହଇରାଣ ହେବାକୁ ପଡୁନଥିଲା । ଏପରି ବ୍ୟବସ୍ଥାକୁ ସେ ପ୍ରଶଂସା କରିବା ସହିତ ସେହି ବ୍ୟବସ୍ଥାର ପୁନଃ ପ୍ରତିଷ୍ଠା ନିମିତ୍ତ ମତ ପୋଷଣ କରିଛନ୍ତି ।

ସାମସମୟିକ ସମାଜରେ ଘଟିଥିବା ବହୁ ଦୁଃଖଦ ଘଟଣାକୁ ସେ ତାଙ୍କ ଆତ୍ମଜୀବନୀରେ ସ୍ଥାନ ଦେଇଛନ୍ତି । ୧୮୯୯ ମସିହା ସମ୍ବତ୍, ୧୯୫୬ ସାଲରେ ଯେଉଁ କରାଳ ଦୁର୍ଭିକ୍ଷ ପଡ଼ିଥିଲା, ତା'ର ଏକ କରୁଣ ଓ ମର୍ମସ୍ପର୍ଶୀ ଚିତ୍ର ସେ ତାଙ୍କ ଆତ୍ମଜୀବନୀରେ ପ୍ରଦାନ କରିଛନ୍ତି । ବିଶେଷ ଭାବରେ ଏହି ଦୁର୍ଭିକ୍ଷ ପଶ୍ଚିମ ଓଡ଼ିଶାବାସୀଙ୍କ ମେରୁଦଣ୍ଡ କିପରି ଭାଙ୍ଗି ଦେଇଥିଲା, ତା'ର ସଜଳ ଚିତ୍ରଟି ଯେକୌଣସି ପାଠକକୁ ଅଭିଭୂତ କରିପାରେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟର କେତେକ ବାସ୍ତବ ଚିତ୍ର ତାଙ୍କ ଆତ୍ମଜୀବନୀରେ ଦେଖିବାକୁ ମିଳେ । ୬.୪.୧୯୪୨ ମସିହାରେ ଓଡ଼ିଶା ଉପକୂଳର କୁଜଙ୍ଗଠାରୁ ୪୦ ମାଇଲ ଦୂରରେ ଜାପାନ କିପରି କିଛି ଇଂରେଜ ଜାହାଜକୁ ବୁଡ଼ାଇ ଦେଇଥିଲା, ଶତ୍ରୁପକ୍ଷ ବୋମା ଭୟଯୋଗୁଁ

ବଡ଼ ସହରମାନଙ୍କର ରାତ୍ରକାଳେ ଆଲୋକ ନିୟନ୍ତ୍ରଣ, ଜିନିଷପତ୍ରର ଦରଦାମ୍ ବୃଦ୍ଧି, ସାଧାରଣ ଲୋକଙ୍କର ଅସହାୟ ଅବସ୍ଥା, ବ୍ୟବସାୟୀମାନଙ୍କର ମୁନାଫାଖୋର ମନୋବୃତ୍ତି, ବିଭିନ୍ନ କଟକଣା ଆଦି ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା କରାଯାଇଛି ତାଙ୍କ ଆତ୍ମଜୀବନୀରେ ।

ବିହାରରେ ଚାକିରି କରୁଥିବା ସମୟରେ ସେଠାରେ ହେଉଥିବା ନୀଳ ଚାଷର ଅପକାରିତା ସମ୍ପର୍କରେ ସୂଚନା ଦେଇଛନ୍ତି । ସେତେବେଳେ ଜମିଦାରୀର ସ୍ଥାନେ ସ୍ଥାନେ ନୀଳକୋଠି ଥିଲା । ଏହାର ମାଲିକ ଥିଲେ ଗୋରାମାନେ । ଗୋରାମାନେ ଗୋରା ମ୍ୟାନେଜରଙ୍କ ଠାରୁ ନୀଳ ଚାଷ ପାଇଁ ସମସ୍ତ ପ୍ରକାର ସୁବିଧା ପାଉଥିଲେ । ଅଥଚ ପ୍ରଜାମାନଙ୍କ ପାଇଁ ଏହାଥିଲା ପୀଡ଼ା ଦାୟକ । ନୀଳ ବ୍ୟବସାୟୀ ଗୋରାମାନେ ଜମିଦାରୀର ମ୍ୟାନେଜର ଠାରୁ ପାଟ୍ଟାଦ୍ୱାରା ଗୋଟିଏ କରି ଇଲାକା ନେଇ ତା'ର ରାଜସ୍ୱ ଆଦାୟ ଓ ପରିଚାଳନା ଭାର ଗ୍ରହଣ କରି ସ୍ୱତ୍ୱାଧିକାରୀର ଅଧିକାର ହାସଲ କରୁଥିଲେ । ସେମାନେ ସେଠାରେ ଏକ ପ୍ରଥା ଜାରି କରିଥିଲେ ଯେ, ପ୍ରତ୍ୟେକ ପ୍ରଜାକୁ ବିଘାପ୍ରତି ୩/୪ କଠା ଭୂମିରେ କୋଠିର ମାଲିକ ପାଇଁ ନୀଳ ଚାଷ କରିଦେବେ । ପ୍ରଜାମାନେ ବାଧହୋଇ ଏହି ଚାଷ କରୁଥିଲେ ଓ ନକଲେ ଅଦାଲତ ଦ୍ୱାରା ଦଣ୍ଡିତ ହେଉଥିଲେ । ତେଣୁ ନୀଳ କୋଠିର ମାଲିକ ଓ ପ୍ରଜାଙ୍କ ମଧ୍ୟରେ ସର୍ବଦା କଳହ ଏବଂ ଅଶାନ୍ତି ଲାଗି ରହିଥିଲା । ମହାତ୍ମାଗାନ୍ଧୀଙ୍କ ଆନ୍ଦୋଳନ ପରେ ୧୯୧୭ ସାଲରେ ଏହାର ଲୋପ ହୋଇଥିଲା । ଏହି ଚାଷ ସମ୍ପର୍କୀୟ ପ୍ରତ୍ୟକ୍ଷ ବିବରଣୀ ସମକାଳୀନ ଭାରତବର୍ଷରେ ଗୋରାମାନଙ୍କର ଅତ୍ୟାଚାରକୁ ସୂଚାଇ ଦେଇଥାଏ ।

ସେତେବେଳର ତ୍ରୁଟିପୂର୍ଣ୍ଣ ଶିକ୍ଷାପଦ୍ଧତି ସମ୍ପର୍କରେ ମଧ୍ୟ ସେ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଯେଉଁମାନେ ବି.ଏ. ପାସ୍ କରୁଥିଲେ ସେମାନଙ୍କର ଏକମାତ୍ର ଲକ୍ଷ୍ୟଥିଲା ସରକାରୀ ଚାକିରି । ପକ୍କା ଘରେ ହଷ୍ଟେଲରେ ରହି ପାଠ ପଢ଼ିଥିବା ପିଲାଙ୍କର ଚାଷ କରିବାର ମାନସିକତା ନଥାଏ । ଧନ୍ଦାମୂଳକ ଶିକ୍ଷା ପ୍ରଚଳନ ନଥିବାରୁ ଏବଂ ଶିକ୍ଷିତ ବ୍ୟକ୍ତିମାନେ ବାଣିଜ୍ୟ କରୁନଥିବାରୁ ଚାକିରି ପ୍ରତି ଅଧିକ ମନୋନିବେଶ କରିଥାନ୍ତି । ସେଥିପାଇଁ ଏପରି ଶିକ୍ଷାପଦ୍ଧତିରେ ଆମୂଳ ଚୂଳ ପରିବର୍ତ୍ତନ ହେବା ଆବଶ୍ୟକ ଓ କିପରି ଶିକ୍ଷା ଆମକୁ ସ୍ୱାବଲମ୍ବନଶୀଳ କରିପାରିବ, ଏ ସମ୍ପର୍କରେ ସେ ବେଶ୍ ସୁଚିନ୍ତିତ ମତାମତ ପ୍ରଦାନ କରିଛନ୍ତି ।

ଏତଦ୍‌ବ୍ୟତୀତ ତତ୍‌କାଳୀନ ସାହିତ୍ୟିକ ପରିବେଶ ସମ୍ପର୍କରେ ମଧ୍ୟ ସେ ସୂଚନା ପ୍ରଦାନ କରିଛନ୍ତି । ସେତେବେଳେ ଗୌରୀଶଙ୍କର ରାୟଙ୍କ ସମ୍ପାଦିତ 'ଉତ୍କଳ ଦୀପିକା', ବାଲେଶ୍ୱରର 'ଓଡ଼ିଆ ଓ ନବ ସମ୍ବାଦ', 'ସମ୍ବାଦ ବାହିକା', ବାମଣ୍ଡାର ଦେବଗଡ଼ରୁ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ', ଗଞ୍ଜାମର 'ପ୍ରଜାବନ୍ଧୁ', ସମ୍ବଲପୁର ଶ୍ରୀପତି ମିଶ୍ରଙ୍କ ସମ୍ପାଦିତ 'ଉତ୍କଳ ଦର୍ପଣ', ବାରିପଦାରୁ ବୈଦ୍ୟନାଥ ଦାସଙ୍କ ସମ୍ପାଦିତ 'ମନୋରମା', ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ', ବ୍ରଜସୁନ୍ଦର ଦାସଙ୍କ ସମ୍ପାଦିତ 'ମୁକୁର' ଆଦି ପତ୍ରିକା ଓଡ଼ିଆ

ସାହିତ୍ୟ ଓ ସମ୍ବାଦର ବିକାଶରେ କିପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ, ତା'ର ସଂକ୍ଷିପ୍ତ ସୂଚନା ଆତ୍ମଜୀବନୀରେ ପ୍ରଦତ୍ତ ହୋଇଛି । ଏହା ବ୍ୟତୀତ 'ଇନ୍ଦ୍ରଧନୁ' ଓ 'ବିଜୁଳି' ପତ୍ରିକାର କଳଙ୍କକୁ ମଧ୍ୟ ସେ ପ୍ରସଙ୍ଗ କ୍ରମେ ସୂଚିତ କରିଛନ୍ତି । ତାଙ୍କ ଆତ୍ମଜୀବନୀର କଳାପକ୍ଷ ମଧ୍ୟ ଉଚ୍ଚକୋଟିର । ବେଳେବେଳେ ବର୍ଣ୍ଣନାରେ ତାଙ୍କ ସାହିତ୍ୟ ପ୍ରତିଭାର ଉପଯୁକ୍ତ ପରିପ୍ରକାଶ ଘଟିଛି । ସେ ତାଙ୍କ ଜୀବନରେ ବିବିଧ ଚରିତ୍ରମାନଙ୍କ ସମ୍ପର୍କରେ ଆସିଥିଲେ ଏବଂ ଆବଶ୍ୟକ ସ୍ଥଳେ ସେହି ଚରିତ୍ରମାନଙ୍କ ଚାରତ୍ରିକ ବିଶେଷତ୍ୱ ସମ୍ପର୍କରେ ଚଟୁଳ ବର୍ଣ୍ଣନା ପ୍ରଦାନ କରିଛନ୍ତି । ବରଗଡ଼ରେ ଅବସ୍ଥାପିତ ସବ୍‌ଡିଭିଜନାଲ ଅଫିସର ଶ୍ରୀ ବୈଦ୍ୟନାଥଙ୍କ ସରଳତା, ନିର୍ମଳ ହୃଦୟ ଓ ମହାନୁଭବତାର ପରିଚୟ ଦେବାକୁ ଯାଇ ଆତ୍ମଜୀବନୀର ୧୧୧ ପୃଷ୍ଠାରେ ଲେଖିଛନ୍ତି- "ଅତ୍ୟଧିକ ସରଳତା ଅନେକ କ୍ଷେତ୍ରରେ ବିପଦର କାରଣ ହୋଇଥାଏ । ଚନ୍ଦ୍ରର ବଙ୍କିମ ରୂପ ଥିବାଯାଏ ରାହୁ ତାକୁ ସ୍ପର୍ଶ କରିବାକୁ ସୁଦ୍ଧା ସାହସ କରେ ନାହିଁ । ସରଳ, ସୁଗୋଲ, ମନୋମୁଗ୍ଧକର ପୂର୍ଣ୍ଣଚନ୍ଦ୍ରକୁ ଦେଖି ଅନାୟାସରେ ଗ୍ରାସ କରେ ।" ଏତେଦ୍‌ବ୍ୟତୀତ ସେ ଯେଉଁ ଯେଉଁ ସ୍ଥାନରେ ଚାକିରି କରିଛନ୍ତି, ସେହି ସ୍ଥାନର ଭୌଗୋଳିକ ବିବରଣୀ, ପର୍ଯ୍ୟଟନ ଓ ତୀର୍ଥସ୍ଥଳୀ, ଲୋକ ଚରିତ୍ର ଆଦି ସମ୍ପର୍କରେ ମଧ୍ୟ ଆଲୋଚନା କରିଛନ୍ତି ।

ଭାରତଚନ୍ଦ୍ର ନାୟକ ଯେପରି ଥିଲେ ସାହିତ୍ୟ ପ୍ରିୟ; ସେହିପରି ଥିଲେ ସଂସ୍କାରକ, ସମାଜସେବୀ ଓ ପରିବର୍ତ୍ତନର ସ୍ୱର ଶୁଣି ପାରୁଥିବା ଜଣେ ସଚେତନ ବ୍ୟକ୍ତିତ୍ୱ । ତାଙ୍କର ଜୀବନ ବାସ୍ତବରେ ପରାଧୀନ ଓ ସ୍ୱାଧୀନ ଭାରତର ସନ୍ଧିକାଳରେ ଗତି କରୁଥିବା ସମସ୍ତ ଭାରତୀୟଙ୍କ ଜୀବନବାଣୀ । ସେ ଯେପରି ସମକାଳୀନ ଓଡ଼ିଶା ଏବଂ ଭାରତକୁ ଚିହ୍ନି ଥିଲେ, କ୍ୱଚିତ ବ୍ୟକ୍ତି ତାହା କରିବାକୁ ସମର୍ଥ ହୋଇଛନ୍ତି । ଏହି ଦୃଷ୍ଟିରୁ ଭାରତଚନ୍ଦ୍ରଙ୍କୁ ଜାଣିବା ଏବଂ ତାଙ୍କ ସଂକଳ୍ପକୁ ଉପଲବ୍ଧି କରିବା, ସର୍ବୋପରି ତାଙ୍କ କାର୍ଯ୍ୟଦକ୍ଷତାକୁ ଅନୁସରଣ କରିବା ପ୍ରତ୍ୟେକ ଓଡ଼ିଆଙ୍କର କର୍ତ୍ତବ୍ୟ ହେବା ଉଚିତ୍ ।



# ପରିଶିଷ୍ଟ

## ହୁଏନ୍ ସାଂଙ୍କ ବିବରଣୀରେ ଥିବା ସ୍ଥାନସମୂହ

ହୁଏନ୍ ସାଂ ଭାରତ ଭ୍ରମଣ ସମୟରେ ଚୀନ୍‌ଠାରୁ ତାଙ୍କର ଯାତ୍ରା ଆରମ୍ଭ କରିଥିଲେ । ଚୀନ୍ ସମ୍ରାଟଙ୍କ ଅନୁମତି ନପାଇ ମଧ୍ୟ ନିଜ ସଂକଳ୍ପକୁ ସାକାର କରିବା ପାଇଁ ବିଭିନ୍ନ ବିପଦ ସଙ୍କୁଳ ତଥା ପ୍ରତିକୂଳ ପରିବେଶ ମଧ୍ୟଦେଇ ସେ ଭାରତବର୍ଷକୁ ଆସିଛନ୍ତି ବୌଦ୍ଧତତ୍ତ୍ୱ ସମ୍ପର୍କରେ ଜାଣିବା ପାଇଁ । ଚୀନ୍- ଆଫଗାନ ସ୍ଥାନ- ଭାରତ : ଏପରି ଏକ ବିରାଟ ଅଞ୍ଚଳ ମଧ୍ୟରେ ତାଙ୍କର ଯାତ୍ରାପଥ ନିର୍ଣ୍ଣିତ । ଯାତ୍ରା ସମୟରେ ସେ ଯେଉଁ ଓ ସ୍ଥାନ ଦେଇ ଆସିଛନ୍ତି ତା'ର ଗତିପଥ ସହିତ ସେହି ସେହି ସ୍ଥାନର ବିବରଣୀ ସେ ଚମତ୍କାର ଭାବରେ ପ୍ରଦାନ କରିଛନ୍ତି ତାଙ୍କ ଗ୍ରନ୍ଥରେ । ଲେଖକ ଏହି ଗ୍ରନ୍ଥଟି (ଇଂରାଜୀ ଗ୍ରନ୍ଥ)ର ଅନୁବାଦ ବେଳେ ପରିଶିଷ୍ଟ ପର୍ଯ୍ୟାୟରେ ଆଫଗାନସ୍ଥାନରୁ ଭାରତବର୍ଷ ମଧ୍ୟରେ ପ୍ରଦତ୍ତ କରାଯାଇଥିବା ସ୍ଥାନଗୁଡ଼ିକୁ ମଧ୍ୟ ସେ ଉଲ୍ଲେଖ କରିଛନ୍ତି । ହୁଏନ୍ ସାଂ ଏହି ସ୍ଥାନଗୁଡ଼ିକର ନାମ ଚୀନ୍ ଭାଷାରେ ପ୍ରଦତ୍ତ କରିଛନ୍ତି । ପାଠକ ଏହି ଭାରତ ବିବରଣୀ ପାଠ ସମୟରେ ହୁଏନ୍ ସାଂ ପ୍ରଦତ୍ତ ସ୍ଥାନଗୁଡ଼ିକର ଭୌଗୋଳିକତା ଓ ପ୍ରକୃତ ନାମ ସମ୍ବନ୍ଧରେ ସନ୍ଦିହାନ ହେବାର ସମ୍ଭାବନା ଥିବାରୁ ଅନୁବାଦକ ମୂଳଗ୍ରନ୍ଥ ଅନୁଯାୟୀ, ଅନ୍ୟ ଭାବରେ କହିଲେ ଯେଉଁ ଗ୍ରନ୍ଥରୁ ସେ ଅନୁବାଦ କରିଛନ୍ତି, ସେହି ଗ୍ରନ୍ଥାନୁଯାୟୀ ବିଭିନ୍ନ ସ୍ଥାନର ନାମ ପ୍ରଦତ୍ତ କରିଛନ୍ତି । ଏହାଦ୍ୱାରା ପାଠକ ଚୀନ୍ ଭାଷାରେ ପ୍ରଦତ୍ତ ନାମାନୁସାରେ ଭାରତବର୍ଷର ପ୍ରକୃତ ନାମ ଜାଣିପାରିବେ ଓ ତାଙ୍କର ସନ୍ଦେହ ଦୂର ହୋଇପାରିବ ।

ପ୍ରଦତ୍ତ ନାମ ସୂଚୀ:- ଏଥିରେ ପ୍ରଦତ୍ତ ନାମଗୁଡ଼ିକ ପୁସ୍ତକର ପରିଶିଷ୍ଟରୁ ସଂଗ୍ରହ କରାଯାଇଛି ।

୧. ଲାନ୍- ପୋ (ଲଘାନ)- ସଂସ୍କୃତ ନାମ ଲମ୍ପକ । କାବୁଲ ନଦୀର ଉତ୍ତର ତୀରରେ ଅବସ୍ଥିତ କ୍ଷୁଦ୍ର ରାଜ୍ୟ ।

୨. ନ-କୀ-ଲୋ-(ନଗର ହାର) ଆଧୁନିକ ଜଲାଲବାଦ ନିକଟବର୍ତ୍ତୀ ସ୍ଥାନ ।

୩. କ୍ୟେନ୍-ତୋ-ଲୋ(ଗାନ୍ଧାର) । ପୋ-ଲୁ-ଶ-ପୋ-ଲୋ (ପୁରୁଷପୁର- ପେଶା ଓ ଆର) ଗାନ୍ଧାର ଦେଶ ସିନ୍ଧୁ ନଦୀର ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ । ପୂର୍ବେ ଏହାର ରାଜଧାନୀ ପୁରୁଷପୁର ବା ଆଧୁନିକ ପେଶା ଓ ଆରରେ ଥିଲା ।

୪. ସିଂ-ତୁ (ସିନ୍ଧୁ ନଦୀ)

୫. ପୋ-ଷି-କି-ଲୋ-ଫା-ତୀ (ପୁଷ୍କଳାବତୀ) ଦଶରଥଙ୍କ ପୁତ୍ର ଭରତଙ୍କ ପୁତ୍ର ଅର୍ଥାତ୍ ଦଶରଥଙ୍କ ନାତି ପୁଷ୍କରଙ୍କ ନାମାନୁସାରେ ହୋଇଛି । ଅତୀତରେ ଏହା ଗାନ୍ଧାରର ରାଜଧାନୀ ଥିଲା ।

୬. ଉ-ଟ-କ୍ୟା-ହାଂ-ଚା (ଉଟଖଣ୍ଡ ବା ଉଦଖଣ୍ଡ) ଏହାର ଆଧୁନିକ ନାମ ଓହିନ୍ଦ୍ । ଏହା ଏକ ସମୟରେ ଗାନ୍ଧାରର ରାଜଧାନୀ ଥିଲା । ସିନ୍ଧୁ ନଦୀର ଉତ୍ତର କୂଳରେ ଆଟକଠାରୁ ୧୫ ମାଇଲ୍ ଦୂରରେ ଅବସ୍ଥିତ ।

୭. ଉ-ଚାଂ-ନଂ (ଉଦ୍ୟାନ)- କାଶ୍ମୀର ଉପତ୍ୟକା ମଧ୍ୟବର୍ତ୍ତୀ ଭୂଖଣ୍ଡ ।

୮. ସୁ-ପୋ-ଫ-ସୁ-ତୁ (ସୁବାସ୍ତୁ ବା ଶୁଭବାସ୍ତୁ ନଦୀ) ଆଫଗାନସ୍ଥାନ ମଧ୍ୟସ୍ଥ ସ୍ୱାତନଦୀ ।

୯. ମୁଂ-କି-ଲି (ମୁଙ୍ଗଲୀ ବା ମୁଙ୍ଗୋଲୀ) ଆଧୁନିକ ମଙ୍ଗୋର ।

୧୦. ହି-ଲୋ ଜଲାଲବାଦର ଏକ ଗ୍ରାମ, ଏଠାରେ ଅନେକ ବୌଦ୍ଧସ୍ତୂପ ରହିଥିଲା ।

୧୧. ତା-ଲି-ଲୋ (ଦାରିଲ) ସିନ୍ଧୁନଦୀ ଉପରକୁ ୧୨୫ ମାଇଲ ଦୂରରେ ଥିବା ପର୍ବତର ଅପରପାର୍ଶ୍ୱର ଏକ ନଗର ।

୧୨. ତ-ଚା-ଶି-ଲୋ (ତକ୍ଷଶିଳା) ରାଓଲପିଣ୍ଡିଠାରୁ ୧୨ ମାଇଲ୍ ଦୂରରେ ଅବସ୍ଥିତ ।

୧୩. ସା-ହୋ-ପୋ-ଲୋ (ସିଂହପୁର) କାଶ୍ମୀର ଅନ୍ତର୍ଗତ ଆଧୁନିକ କଟାସ ।

୧୪. ଉ-ଲା-ଶି (ଉରସ) ଧଉାଓଅର ଅନ୍ତଃପାତୀ ଆଧୁନିକ ରଶ୍ ଜିଲ୍ଲା । ମୁଜାଫରାବାଦର ପଶ୍ଚିମରେ ଅବସ୍ଥିତ ।

୧୫. ହୁ-ଷେ-କ୍ୟା-ଲୋ (ହୁଷ୍କର ମନ୍ଦିର) କାଶ୍ମୀର ଅନ୍ତର୍ଗତ ବେହାତ ନଦୀର ପୂର୍ବ କୂଳବର୍ତ୍ତୀ ଆଧୁନିକ ଉସ୍କର ଗ୍ରାମ ।

୧୬. ଚେ-ୟେ-ନି-ଟୋ-ଲୋ (ଜୟେନ୍ଦ ମଠ) କାଶ୍ମୀର ରାଜା ପ୍ରବରସେନଙ୍କ ମାମୁ ଜୟେନ୍ଦ୍ରଙ୍କ ଦ୍ୱାରା ନିର୍ମିତ ।

୧୭. ପୁନ୍-କୁ-ସୋ (ପୁନାକ) କାଶ୍ମୀରର ୧୧୭ ମାଇଲ ଦକ୍ଷିଣ ପଶ୍ଚିମରେ ଅବସ୍ଥିତ ପୁନାତ୍ ।

୧୮. ହୋ-ଲୋ-ଶି-ପୁ-ଲୋ (ରାଜପୁରୀ) କାଶ୍ମୀର ଅନ୍ତର୍ଗତ ଆଧୁନିକ ରାଜାଓରୀ ରାଜ୍ୟ ।

୧୯. ଶେ-କ୍ୟ(ଟକ୍କ ବା ଟାକୀ) ସିନ୍ଧୁ ଓ ବ୍ୟାସ ଅନ୍ତର୍ବର୍ତ୍ତୀ ପଞ୍ଜାବର ରାଜ୍ୟ ।

୨୦. ଚେ-ୟେ-ପୁ-ଲୋ (ଜୟପୁର)- କାଶ୍ମୀର ରାଜା ଲଳିତାଦିତ୍ୟଙ୍କ ପୌତ୍ର ଜୟପୀଡ଼ା ହ୍ରଦ ମଧ୍ୟରେ ସ୍ଥିତ ଜୟପୁର ନଗର ।

୨୧. କ୍ୟା-ଶି-ମି-ଲୋ । (କାଶ୍ମୀର)

୨୨. ଚେ-କୀ-ଲୋ (ସାକଳ) ଆଧୁନିକ ସିୟାଲକୋଟ ।

୨୩. ନ-ଲୋ-ସାଂ-ହୋ (ନରସିଂହ ନଗର) ଲାହୋରରୁ ପ୍ରାୟ ୨୫ ମାଇଲ ପଶ୍ଚିମରେ ଅବସ୍ଥିତ ।

୨୪. ପୋ-ଲୋ-ଚେ (ପଳାଶ ବନ) ପିଲୁ ଗଛକୁ ହୁଏନ୍ ସାଂ ପଳାଶ ଗଛ କହିଛନ୍ତି ।

୨୫. ଚି-ନା-ପୋ-ତାଇ (ଚିନାପତି) ବିପାଶା ନଦୀ ପଶ୍ଚିମର ଦଶ ମାଇଲ ଦୂରରେ ଅବସ୍ଥିତ ପଟ୍ଟୀ ନଗର ।

୨୬. ଶେ-ଲନ୍-ତୋ-ଲୋ (ଜଲନ୍ଧର) ଆଧୁନିକ ପଞ୍ଜାବର କାଙ୍ଗଡ଼ା ଜିଲ୍ଲା ।

୨୭. କ୍ୟୁ-ଲୁ-ତୋ (କୁଲୁତ) ଆଧୁନିକ କୁଲୁ ଜିଲ୍ଲା । ଜଳନ୍ଧରର ଉତ୍ତର-ପୂର୍ବରେ ଅବସ୍ଥିତ ।

୨୮. ଶେ-ତୋ-ତୁ-ଲୁ (ଶତଦ୍ରୁ) ସତ୍‌ଲେଜ ନଦୀର ପୂର୍ବବର୍ତ୍ତୀ ଭୂଖଣ୍ଡ ।

୨୯. ପୋ-ଲି-ୟେ-ତୋ-ଲୋ (ପାର୍ଯ୍ୟତ୍ର ରାଜା) ଆଧୁନିକ ବୈରାଟ୍ ନଗର ଏହାର ରାଜଧାନୀ ଥିଲା । ଦିଲ୍ଲୀଠାରୁ ୧୦୫ ମାଇଲ ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ ।

୩୦. ମୋ-ତୁ-ଲୋ (ମଥୁରା) ।

୩୧. ସ-ତ-ନି-ଶି-ଫ-ଲୋ । (ଥାନେଶ୍ୱର)

୩୨. ସୁ-ଲୋ-କିନ୍-ନ (ଶ୍ରୁଘ୍ନ) ଆଧୁନିକ ସୁଘ୍ । ଥାନେଶ୍ୱରଠାରୁ ୪୦ ମାଇଲ ଉତ୍ତର-ପୂର୍ବରେ ଅବସ୍ଥିତ ।

୩୨. ମ-ତି-ପୁ ଲୋ (ମତିପୁର)= ଆଧୁନିକ ମଡ଼ାୱରା ରୋହିଲଖଣ୍ଡର ବିଜ୍‌ନୋର ନିକଟରେ ଅବସ୍ଥିତ ।

୩୩. ପୋ-ଲୋ-ହି-ମୋ-ପୁ-ଲୋ (ବ୍ରହ୍ମପୁର) ହରିଦ୍ୱାର ଉତ୍ତର ପୂର୍ବରେ ଅବସ୍ଥିତ ଆଧୁନିକ ବୈରାଟପତ୍ତନ ।

୩୪. ଅ-ହି-ଚି-ତ-ଲୋ (ଅହିକ୍ଷେତ୍ର) ଆଧୁନିକ ଅହିଛତର ।

୩୫. ପି-ଲୋ-ଶନ୍-ନ (ବୀରାସନ) ଯୁକ୍ତପ୍ରଦେଶାନ୍ତର୍ଗତ ରାଜ୍ୟ ।

୩୬. କୀ-ପି-ଥ (କପିଥ) ଯୁକ୍ତପ୍ରଦେଶାନ୍ତର୍ଗତ ଇଟାଜିଲ୍ଲା ମଧ୍ୟସ୍ଥିତ ।

୩୭. କୀ-ଜୋ-କିଓ-ଶି-କ୍ୱୋ (କାନ୍ୟକୁବ୍ଜ) ଆଧୁନିକ କନୌଜ ।

୩୮. କୀ-ଲୋ-ନ-ସୁ-ଫ-ଲ-ନ (କର୍ଣ୍ଣ ସୁବର୍ଣ୍ଣ) ଆଧୁନିକ ସିଂହଭୂମି ଅଞ୍ଚଳ ।

୩୯. ଅ-ୟୁ-ତୋ (ଅଯୋଧ୍ୟା ରାଜ୍ୟ)

୪୦. ଅ-ୟେ-ମୁ-ଖୀ (ହୟମୁଖ) ଦୋଆବ୍ ମଧ୍ୟବର୍ତ୍ତୀ ଆଧୁନିକ ଦୋଳିଆ ଖେଡ଼ା ।

୪୧. ପୋ-ଲୋ-ୟେ-କ୍ୟ (ପ୍ରୟାଗ) ଆଧୁନିକ ଏହ୍ଲାବାଦ ।

୪୨. କୌ-ଶାଂ-ମି (କୌଶାମ୍ବି) ଯମୁନା କୂଳବର୍ତ୍ତୀ ଆଧୁନିକ କୋସମ୍ ।

୪୩. ପି-ସୋ-କିଆ (ବିଶାଖା) ଅଯୋଧ୍ୟାର ନାମାନ୍ତର ।

୪୪. ଶି-ଲୋ-ଫୁ-ଶି-ତି (ଶ୍ରାବସ୍ତୀ) ଆଧୁନିକ ଗୋଣ୍ଡା ଜିଲ୍ଲାରେ ଅବସ୍ଥିତ ।

୪୫. ଶି-ତୋ-ୟୁ-ଏନ୍ (ଜେତବନ) ଶ୍ରାବସ୍ତୀର ଜେତବନ ।

୪୬. କ୍ୟେ-ପି-ଲୋ-ଫ-ସ୍ୱେ-ତି (କପିଳବାସ୍ତୁ) ଆଧୁନିକ ଉତ୍ତର ଆଉଦ୍ ଅନ୍ତର୍ଗତ ନଗର ନାମକ ସହର ।

୪୭. ଲାନ୍-ମୋ (ରାମ ଗ୍ରାମ) ଆଧୁନିକ ଦେଓକାଲି ଗ୍ରାମ ।

୪୮. କ୍ୟୁ-ଶି-ନ-କ୍ୟେ-ଲୋ (କୁଶୀନଗର) ଗୋରଖପୁରର ୩୫ ମାଇଲ୍ ପୂର୍ବବର୍ତ୍ତୀ କଶିଆ ଗ୍ରାମ ।

୪୯. ପୋ-ଲୋ-ନିସ୍ୱେ (ବାରାଣସୀ) ଆଧୁନିକ ବନାରସ ।

୫୦. ଚେଂ-ଚ (ଗର୍ଜ୍ଜପତିପୁର) ଆଧୁନିକ ଗାଜିପୁର । ବନାରସ୍‌ର ୫୦ ମାଇଲ ପୂର୍ବରେ ଗଙ୍ଗା ନଦୀକୂଳରେ ଅବସ୍ଥିତ ।

୫୧. ଫେି-ଶେ-ଲି (ବୈଶାଳୀ) - ମୁଜଫର ଜିଲ୍ଲାରେ ଥିବା ବେସାର ଗ୍ରାମ ନିକଟବର୍ତ୍ତୀ ସ୍ଥାନ ।

୫୨. ଶି-ଫେି-ତୋ-ପୁଲୋ । (ଶ୍ୱେତପୁର)

୫୩. ମୋ-କ୍ୟେ-ତୋ (ମଗଧ); କୁ-ସୁ-ମୋ-ପୁ-ଲୋ (କୁସୁମପୁର) ପୋ-ଚ-ଲି-ସୁ-ଚିଙ୍ଗ (ପାଟଳୀପୁତ୍ର)

୫୪. ତି-ଲୋ-ଶି (ସ୍ତ୍ରୀ)- କ୍ୟ (ତିଲଢ଼କ)- ଆଧୁନିକ ତିଲ୍ଲାରା ।

୫୫. ପୁ-ତି-ତଓ-ଚଙ୍ଗ୍ (ବୋଧିମଣ୍ଡ) ବୁଦ୍ଧଗୟାରେ ଅବସ୍ଥିତ ।

୫୬. ନି-ଲେନ୍-ଶନ୍-ନ (ନିରଞ୍ଜନା ନଦୀ) ଆଧୁନିକ ଫଲଗୁ ।

୫୭. ନ-ଲନ୍-ତୁ (ନାଳନ୍ଦ)- ରାଜଗୀରର ୬ ମାଇଲ ଉତ୍ତରରେ ଥିବା ଆଧୁନିକ ବଡ଼ାଗାଓଁ ।

୫୮. ହୋ-ଲୋ-ଶେ-କି-ଲି-ହି (ରାଜଗୃହ)- ଆଧୁନିକ ରାଜଗୀର ।

୫୯. କ୍ୟୁ-ଶେ-କ୍ୟୋ-ଲୋ-ପୁ-ଲୋ (କୁଶାଗାରପୁର) ପୁରାତନ ରାଜଗୃହ ।

୬୦. କ୍ୟ-ଲନ୍-ତୋ-ଚୁଃ-ଇଉ-ଏନ୍ (କଳନ୍ଦ ବା କରନ୍ଦ ବେଣୁବନ)

୬୧. ସୋ-ଲୋ-ତୁ-ଲୋ (ସାଳାତୁର) ଆଧୁନିକ ଲାହୋର ।

୬୨. ଇ-ଲନ୍-ନ-ପୋ-ଫ-ତୋ (ହିରଣ୍ୟ ପର୍ବତ) ଆଧୁନିକ ମୁଙ୍ଗେର ପାହାଡ଼ ।

୬୩. ଚେନ୍-ପୋ=(ଚମ୍ପା ରାଜ୍ୟ) ଆଧୁନିକ ଭାଗଲପୁର ଓ ମୁଙ୍ଗେର ଜିଲ୍ଲା ।

୬୪. କ୍ୟେ-ଚୁ (ଶୁ)-ହୋ (ଉ)-କି (ଖି) ଲୋ (କଜଘିର ରାଜ୍ୟ । ରାଜମହଲ ଜିଲ୍ଲା ନିକଟବର୍ତ୍ତୀ ।)

୬୫. ପୁନ୍-ନ-ଫ-ତନ୍-ନ (ପୁଣ୍ଡ୍ରବର୍ଦ୍ଧନ) ମାଲ ଦହ, ପୂର୍ଣ୍ଣିଯା, ଦିନାଜପୁର ଓ ରାଜସାହୀ ଜିଲ୍ଲା ।

୬୬. ସନ୍-ମୋ-ତ-ତ (ସମତଟ) ଗଙ୍ଗାନୀର ଡେଲ୍‌ଟା ।

୬୮. ଶି-ଲି-ଚ-ତ-ଲୋ । (ଶ୍ରୀକ୍ଷେତ୍ର) ଆଧୁନିକ ସିଲ୍‌ହଟ ।

୬୯. କ୍ୟ-ମୋ-ଲଙ୍ଗ-କ୍ୟ (କମଳାଙ୍ଗ ବା କାମଲବ୍ୟ) ଆଧୁନିକ କୁମିଲ୍ଲା ।

୭୦. ତୋ-ଲୋ-ପୋ-ତି (ଦ୍ୱାରାପତି ବା ଦ୍ୱାରାବତୀ) ପେଗୁ । କାହା ମତରେ ଶ୍ୟାମଦେଶ ।

୭୧. ଇ-ଶଙ୍ଗ୍-ନ-ପୁ-ଲୋ (ଈଶାନପୁର)

୭୨. ମୋ-ହୋ-ଚେଂ-ପୋ (ମହାଚମ୍ପା) ଶ୍ୟାମଦେଶ । କେହି ଏହାକୁ ପ୍ରାଚୀନ କାମ୍ବୋଜିଆ କୁହନ୍ତି ।

୭୩. ୟେନ୍-ନିଓ-ନ-ଚେଉ (ଯମନ୍‌ରାଜ୍ୟ) ଆଧୁନିକ ଜାଭା ।

୭୪. ତନ୍-ମୋ-ଲି-ତି (ତାମ୍ରଲିପ୍ତି) - ତମଲୁକ୍ ।

୭୫. ଉ-ଚ (ଉତ୍ତ୍ରଦେଶ) - ଓଡ଼ିଶା

୭୬. ଚେ-ଲି-ତ-ଲୋ (ଚାରିତ୍ର) ଆଧୁନିକ ପୁରୀ ବା କୋଣାର୍କ ନିକଟବର୍ତ୍ତୀ ଲୁପ୍ତ ବନ୍ଦର ।

୭୭. କୋଙ୍ଗ୍-ୟୁ-ତୋ (କଙ୍ଗୋଧ) ଗଞ୍ଜାମ ।

୭୮. କୀ-ଲିଙ୍ଗ୍-କ୍ୟ (କଳିଙ୍ଗ) ଗଞ୍ଜାମର ଦକ୍ଷିଣବର୍ତ୍ତୀ ଦେଶ ।

୭୯. କ୍ୟୋ-ସ-ଲୋ (ଦକ୍ଷିଣ କୋଶଳ)- ଉତ୍କଳର ପଶ୍ଚିମବର୍ତ୍ତୀ ରାଜ୍ୟ- ଆଧୁନିକ ବେରାର । ଆଧୁନିକ ସମ୍ବଲପୁର ଜିଲ୍ଲା ଏହାର ଅନ୍ତର୍ଗତ ।

୮୦. ଅନ-ତ-ଲୋ (ଆନ୍ଧ୍ର) ଆଧୁନିକ ତେଲିଙ୍ଗାନ୍)

୮୧. ତୋ-ନ-କୀ-ସେ-କ୍ୟ (ଧନ କକଟ) ଆଧୁନିକ ବେଜୱାଡ଼ା ।

୮୨. ଚୁଲି ଯେ (ଚୋଳ) ବେଜୱାଡ଼ାର ଉତ୍ତର-ପଶ୍ଚିମରେ ଅବସ୍ଥିତ ରାଜ୍ୟ ।

୮୩. ତ-ଲୋ-ପି-ଚ (ଦ୍ରାବିଡ଼ ରାଜ୍ୟ), କ୍ୟେନ୍-ଚି-ପୁ-ଲୋ (କାଞ୍ଚିପୁର)

୮୪. ମୋ-ଲୋ-କ୍ୟୁ-ଚ (ମାଳକୂଟ) ମଦୁରା ଓ ତିନେଭେଲି ଜିଲ୍ଲା ।

୮୫. କୋଙ୍ଗ୍-କିନ୍-ନ-ପୁ-ଲୋ (କଙ୍କଣାପୁର) ତୁଙ୍ଗଭଦ୍ରା ନଦୀର ଉତ୍ତର କୂଳବର୍ତ୍ତୀ ଅନ୍ନଗୁଣ୍ଡି ସହର ।

୮୬. ମୋ-ହୋ-ଲ-ଚ (ମହାରାଷ୍ଟ୍ର)

୮୭. ପୋ-ଲୁ-କୀ-ଚେ-ପୋ (ଉରୁକଚ୍ଛ) ବ୍ରୋଚ୍ ରାଜ୍ୟ ।

୮୮. ମୋ-ଲ-ପ (ମାଳବ)

୮୯. ଅ-ଚ-ଲି (ଅଟାଳି ବା ବଡ଼ରି) ସୁରଟର ୨୦୦ ମାଇଲ୍ ଉତ୍ତର ପୂର୍ବବର୍ତ୍ତୀ ଆଧୁନିକ ଏଡ଼େର ।

୯୦. କୀ-ଟା (ଖେଡ଼ା) ଗୁଜୁରାଟ ଅନ୍ତର୍ଗତ କଇର ଅଞ୍ଚଳ ।

୯୧. ଫା-ଲ-ପି (ବଲ୍ଲଭୀ) ଆଧୁନିକ ଗୁଜୁରାଟ ଓ ମୁରାଷ୍ଟ୍ର ଅଞ୍ଚଳ ।

୯୨. ଅ-ନନ୍-ତୋ-ପୁ-ଲୋ (ଆନନ୍ଦପୁର) ଆଧୁନିକ ବର ନଗର ।

୯୩. ସୁ-ଲ-ଚ (ସୌରାଷ୍ଟ୍ର ବା ସୁରଥ ରାଜ୍ୟ) ଗୁଜୁରାଟ ଉପଦ୍ୱୀପ ।

୯୪. କ୍ୟୁ-ଚେ-ଲୋ (ଗୁର୍ଜର) ରାଜପୁତନାର ପଶ୍ଚିମାଂଶ ।

୯୫. ଉ-ଶେ-ୟେନ୍-ନ (ଉଜ୍ଜୟିନୀ) ଗ୍ୱାଲିୟର ରାଜ୍ୟ ।

୯୬. ଚି-କି-ତୋ (ଚିକିତ) ଆଧୁନକ ବୁନ୍ଦେଲଖଣ୍ଡ ।

୯୭. ମୋ-ହି-ଶି-ଫ-ଲୋ-ପୁଲୋ (ମହେଶ୍ୱର ପୁର) ନର୍ମଦା ତଟବର୍ତ୍ତୀ ମହେଷ୍ମତୀପୁର ।

୯୮. ଅ-ତ୍ୟେ-ନ୍-ପୋ-ଚି-ଲୋ । (ଅତ୍ୟନବକେଳ ବା ଉଦୁମ୍ବର ରାଜ୍ୟ) ଆଧୁନିକ କଚ୍ଛ ଅଞ୍ଚଳ ।

୯୯. (ଲୋ) ଲଙ୍ଗ୍-କା-ଲୋ (ଲାଙ୍ଗଲ) ଆଧୁନିକ କେଲାତ ରାଜ୍ୟ ।

୧୦୦. ପି-ତୋ-ଶି-ଲୋ (ପିତାଶିଳା) ସିନ୍ଧୁ ପ୍ରଦେଶାନ୍ତର୍ଗତ ନିରନ୍ କୋଟ ବା ହାଇଦ୍ରାବାଦ ।

୧୦୧. ଅ-ଫନ୍-ଚ (ଅଭଣ୍ଡ ଦେଶ) ବ୍ରାହ୍ମଣାବାଦ୍ ।

୧୦୨.. ସିନ୍-ତୁ (ସିନ୍ଧୁ ଦେଶ)

୧୦୩. ମ୍ୟୁ-ଲୋ-ସନ୍-ପୁ-ଲୋ (ମୂଳସ୍ଥାନପୁର) ଆଧୁନିକ ମୁଲତାନ ।

୧୦୪. ପୋ-ଫ-ତୋ (ପର୍ବତ ରାଜ୍ୟ) ଆଧୁନିକ ପଞ୍ଜାବ ଅନ୍ତର୍ଗତ ଶର୍କୋଟ ଜିଲ୍ଲା ।

୧୦୫. ୟେ-ସେ-ଚି (ଯଷ୍ଟିବନ) ଆଧୁନିକ ଜଷ୍ଠିବନ ।

୧୦୬. କ୍ୟ-ମୋ-ଲୁ-ପୋ (କାମରୂପ) ଆସାମ ।





ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ

ଓଡ଼ିଆ ସମାଲୋଚନା ସାହିତ୍ୟ କ୍ଷେତ୍ରରେ ପ୍ରଫେସର ପ୍ରଧାନ ଏକ ପରିଚିତ ସ୍ୱର । ଲୋକସାହିତ୍ୟ, ମଧ୍ୟଯୁଗୀୟ ସାହିତ୍ୟଠାରୁ ଆରମ୍ଭ କରି ସଂପ୍ରତିକ ସାହିତ୍ୟ ପର୍ଯ୍ୟନ୍ତ ତାଙ୍କର ଅଧ୍ୟୟନ ପରିସର ସୁବିସ୍ତୃତ । ସାହିତ୍ୟତତ୍ତ୍ୱ ଓ ଓଡ଼ିଆ ସାହିତ୍ୟର ଇତିହାସ ରଚନାରେ ସେ ତାଙ୍କ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ଏଯାବତ୍ ମୌଳିକ ସମାଲୋଚନା ଏବଂ ସଂପାଦନାକୁ ମିଶାଇ ତାଙ୍କର ୩୮ ଖଣ୍ଡ ପୁସ୍ତକ ପ୍ରକାଶିତ । ସମାଲୋଚନା ସାହିତ୍ୟରେ ମୌଳିକ ଦୃଷ୍ଟିଭଙ୍ଗୀ ତାଙ୍କୁ ଦେଇଛି ଏକ ସ୍ୱତନ୍ତ୍ର ପରିଚିତି । ଜଣେ ବାଗ୍ମୀ ଓ ଉଚ୍ଚକୋଟୀର ଶିକ୍ଷକ ଭାବରେ ମଧ୍ୟ ତାଙ୍କର ସୁଖ୍ୟାତି ରହିଛି । 'ଭାରତଚନ୍ଦ୍ର ନାୟକ' ପୁସ୍ତିକାଟି ଭାରତଚନ୍ଦ୍ରଙ୍କ ଜୀବନୀ, ସମାଜସେବା, ସାହିତ୍ୟିକ ରୁଚି ଓ ଅନୁବାଦ ସୃଷ୍ଟି ସଂପର୍କରେ ଏକ ମନନଶୀଳ ସୃଜନ ।



ଓଡ଼ିଶା ସାହିତ୍ୟ ଏକାଡେମୀ

